# ବିଗ୍ରହ ଓ ବିଶ୍ଳେଷଣ



ଶ୍ରୀ ଭୁବନାନନ୍ଦ ତ୍ରିପାଠୀ

# ବିଚାର ଓ ବିଶ୍ଳେଷଣ

ଲେଖକ :
ଭୁବନାନନ୍ଦ ତ୍ରିପାଠୀ
ଗ୍ରାମ/ଡାକ : କନ୍ତିଓକାଟେଣୀ
ଜିଲ୍ଲା : ଢେଙ୍କାନାଳ, ଓଡ଼ିଶା
ପ୍ରକାଶିକା :
ଶ୍ରୀମତୀ ଅନ୍ନପୂର୍ଣ୍ଣା ତ୍ରିପାଠୀ
ପ୍ଲଟ୍ ୨୬୪, ଶ୍ରୀ ଜଗନ୍ନାଥ ବିହାର
ବରମୁଣ୍ଡା, ଭୁବନେଶ୍ୱର - ୧୫
ମୁଦ୍ରାକର :
ଭୋଳାନାଥ ପ୍ରେସ୍
ବମିଖାଲ, ଭୁବନେଶ୍ୱର-୧୦
ପ୍ରଚ୍ଛଦପଟ :
ଅଧ୍ୟାପକ ବଳଦେବ ମହାରଥୀ
ପ୍ରଥମ ପ୍ରକାଶ :
୧୦ ମାର୍ଚ୍ଚ ୨୦୦୧
ମୂଲ୍ୟ : ସତୁରୀ ଟଙ୍କା

# BICHAR O' BISLESHAN

**Written by :**
Bhubananda Tripathy
Vill/PO-Kantiokateni
Dist -Dhenkanal, Orissa
**Published by :**
Smt. Annapurna Tripathy
Plot.264, Sri Jagannath Vihar
Baramunda, Bhubaneswar-15
**Printed at :**
Bholanath Press
Bomikhal, Bhubaneswar-10
**Cover Design :**
Sri Baladev Maharatha
**1st Edition** - 10.3.2001
**Price :** Rupees Seventy only

# ଉତ୍ସର୍ଗ

ମୋତେ ଜଣେ ଲେଖକ ଭାବେ ପରିଚିତ କରାଇଥିବା, ମୋ ଲେଖା ଅଭ୍ୟାସକୁ ବଳବତ୍ତର ରଖିଥିବା ଓଡ଼ିଶାରେ ଦୀର୍ଘ ୩୬ ବର୍ଷ ଧରି ନିୟମିତ ପ୍ରକାଶିତ ହୋଇ ଓଡ଼ିଆ ପାଠକ ମହଲରେ ଦେଶଭକ୍ତିର ଏକ ସୁନ୍ଦର ବାତାବରଣ ସୃଷ୍ଟି କରିଥିବା ଜନପ୍ରିୟ ସାପ୍ତାହିକ ପତ୍ରିକା 'ରାଷ୍ଟ୍ରଦୀପ'ର ପରିଚାଳନା ମଣ୍ଡଳୀ, ସମ୍ପାଦନା ମଣ୍ଡଳୀ, କର୍ମଚାରୀବୃନ୍ଦ ତଥା ଏହାର ଅଗଣିତ ପାଠକଙ୍କୁ ନେଇ ସୃଷ୍ଟି ହୋଇଥିବା 'ରାଷ୍ଟ୍ରଦୀପ ପରିବାର'କୁ ମୋର ଏହି ପ୍ରଥମ ପୁସ୍ତକ 'ବିଚାର ଓ ବିଶ୍ଳେଷଣ' ଉତ୍ସର୍ଗ କଲି ।

ଲେଖକ

# ନିଜକଥା

ଲେଖକ ଓ ପାଠକ ଭିତରେ ଭଲ ପରିଚୟ ରହିବା କଥା । ପାଠକମାନଙ୍କୁ ଭଲଭାବେ ଚିହ୍ନି ପାରିଲେ ଲେଖକର ଲେଖାରେ ଆନ୍ତରିକତା ସୃଷ୍ଟି ହୁଏ । ସେହିପରି ପାଠକଗଣ ଲେଖକଙ୍କୁ ଭଲଭାବେ ଜାଣିପାରିଲେ ଲେଖାର ଭାବଗୁଡ଼ିକ ସ୍ପଷ୍ଟ ଭାବେ ବୁଝି ହୋଇଯାଏ । ଏ ପ୍ରସଙ୍ଗରେ ମୁଁ କେମିତି ଲେଖିଲି, ଏହା ମୋ ଲେଖାର ପାଠକମାନଙ୍କ ପାଇଁ ଏକ ନିହାତି ଜାଣିବା ବିଷୟ । ଏ ବିଷୟରେ ଟଳେ ଦୁଇପଦ ଲେଖୁଛି ।

ପାଠ ପଢ଼ିଲେ ଆମେ ଲେଖିପଢ଼ି ଶିଖିଥାଏ । ସେହି କ୍ରମରେ ମୁଁ ମଧ୍ୟ ଲେଖି ଶିଖିଲି । ମନରୁ ଭାବି ଯେଉଁଦିନ ଗାଈ ବିଷୟରେ କିମ୍ୱା ଘରପୋଡ଼ି, ନଇବଢ଼ି ବିଷୟରେ ରଚନା ଲେଖିଲି ସେତେବେଳଠାରୁ ବୋଧେ ମୁଁ ଶିଶୁ ଲେଖକଟିଏ ହେଲି । ଏପରି ସମସ୍ତେ ହୁଅନ୍ତି । ତେବେ ମନରୁ ଭାବି ଲେଖିବା ଏବଂ ବହି ଦେଖି ଲେଖିବା କିମ୍ବା କାହା ଖାତାରୁ ଉତାରି ଦେବା ଭିତରେ ଫରକ ଅଛି । ଯେଉଁଦିନ ମୋ ସ୍କୁଲର ଓଡ଼ିଆ ଶିକ୍ଷକ ମୋତେ ଲାଇବ୍ରେରୀରୁ ତାଙ୍କ ନାଁରେ ନୂଆ ମାଗାଜିନ୍ ଆଣି ପଢ଼ିବାକୁ ଦେଲେ ଓ କହିଲେ ପଢ଼ିସାରି ମୋତେ କହିବୁ କ'ଣ ବୁଝିଲୁ, ସେଦିନ ସହ ଛାତ୍ରମାନଙ୍କ ଭିତରେ ମୁଁ ଜଣେ ଆଗ୍ରହୀ ପାଠକ ହୋଇ ବଛା ହୋଇଗଲି ଏବଂ ମନରେ ପଢ଼ିବାର ଆଗ୍ରହ ଦ୍ୱିଗୁଣିତ ହୋଇଗଲା ।

ରଚନା ପ୍ରତିଯୋଗିତାରେ ଯେଉଁଦିନ ପୁରସ୍କାର ପାଇଥିଲି ଏବଂ ନେହେରୁ ଯୁବକେନ୍ଦ୍ର ତରଫରୁ ଟାଉନ୍‌ହଲ୍‌ରେ ଏହା ବଣ୍ଟନ ହେଲା, ସେଦିନ ନିଜର ଲେଖନୀ ମୁନ ଆଉ ଟିକିଏ ମଜବୁତ ହୋଇଥିଲା । କଲେଜ ହଷ୍ଟେଲରେ ହାତଲେଖା ପ୍ରାଚୀରପତ୍ରରେ ଲେଖାଟିଏ ଲଗାଯାଇଥିଲା 'ଆମ ଗାଁ' । ତାହା ପଢ଼ି କେତେଜଣ ସହପାଠୀ ଯେଉଁ ଦୁଇପଦ ପ୍ରଶଂସା ଶବ୍ଦ କହିଥିଲେ, ତାହା ମୋ ପାଇଁ ମଳୟର ପରଶ ପରି ମନେ ହୋଇଥିଲା । ମୋ ପାଖରୁ ହାତଲେଖା ଚିଠିଗୁଡ଼ିକ ପାଇଲେ କେତେଜଣ ସାଥି ଗୋଟିଏ ପ୍ରକାର ମତାମତ ଦିଅନ୍ତି "ତୋ ଚିଠି ପଢ଼ିଲେ ତୋ ସହିତ କଥାହେବା ପରି ଲାଗୁଛି ।" ଏ ପ୍ରକାର ମତାମତ ମଧ୍ୟ ମୋ କପାଳରେ ଗୋଟିଏ ଲେଖାଏଁ ଚନ୍ଦନଟିପା ଭଳି ।

ତେବେ ମୋର ପ୍ରଥମ ପ୍ରକାଶିତ ଲେଖାଟି ହେଉଛି ଗୋଟିଏ ଅନୁବାଦ ପ୍ରବନ୍ଧ - 'ବାରବାଟୀ ଦୁର୍ଗ' । ଇତିହାସର ଛାତ୍ର ଭାବେ ବିଭିନ୍ନ ବହି ପଢୁପଢୁ ମନକୁ ଆସିଲା ଇଂରାଜୀରେ ପ୍ରକାଶିତ କ୍ଷୁଦ୍ର ଏବଂ ଉପାଦେୟ ରଚନାଟିକୁ ଓଡ଼ିଆ ଭାଷାରେ ଅନୁବାଦ କରିବା ପାଇଁ । ସେହି ଅନୂଦିତ ପ୍ରବନ୍ଧଟି ପଠାଇ ଦେଲି ସାପ୍ତାହିକ ରାଷ୍ଟ୍ରଦୀପ ପାଖକୁ । ଏହା ୧୯୭୪ ମସିହାର ଡିସେମ୍ବର ମାସର କଥା । ସେତେବେଳେ ବାରବାଟୀ ଦୁର୍ଗ ନିକଟରେ ଥିବା ବାଲିଯାତ୍ରା ପଡ଼ିଆରେ ଗୋଟିଏ ଶିବିର ଚାଲିଥାଏ ଓ ମୁଁ ସେଥିରେ ଭାଗ ନେଇଥାଏ । ଆମ ତମ୍ବୁ ନିକଟକୁ ଆସି ପହଞ୍ଚିଲେ ତତ୍‌କାଳୀନ ରାଷ୍ଟ୍ରଦୀପର ପରିଚାଳକ ଏବଂ ମୋ ହାତକୁ ପତ୍ରିକାଟିଏ ବଢ଼ାଇ ଦେଲେ । ସଙ୍ଗେ ସଙ୍ଗେ କହିଲେ - ଭୁବନ ଭାଇ, ତୁମର ଲେଖାଟିଏ ବାହାରିଛି । ଭଲ ହୋଇଛି ।

ମୋ ମନ ଆନନ୍ଦରେ ନାଚି ଉଠିଲା ।

ଏହା ମୋର ପ୍ରଥମ ପ୍ରକାଶିତ ଲେଖା । ରାଷ୍ଟ୍ରଦୀପ ପ୍ରତି, ତା'ର ପରିଚାଳକ ଏବଂ ସମ୍ପାଦକଙ୍କ ପ୍ରତି କୃତଜ୍ଞତା ପ୍ରକାଶ କରୁ କରୁ ମୋ ଆଖିରୁ ଦୁଇଟୋପା ଆନନ୍ଦାଶ୍ରୁ ବୋହିଗଲା ।

ସେହିଦିନରୁ ଲେଖିବା ଅଭ୍ୟାସ ଚାଲୁ ରହିଲା । ଆଖି ଦେଖା କଥା, ଅଙ୍ଗେ ନିଭା କଥା, ଚତୁଃପାର୍ଶ୍ୱର କଥାଗୁଡ଼ିକ ଲେଖିବାକୁ ଲାଗିଲି । ଏ ଲେଖାଗୁଡ଼ିକ ଗୋଟିଏ ପରେ ଗୋଟିଏ ପ୍ରକାଶିତ ହେଲା । ଏ ଅଭ୍ୟାସ ଚାରି ପାଞ୍ଚ ବର୍ଷ ପର୍ଯ୍ୟନ୍ତ ରହିଲା ।

କିଛିବର୍ଷ ପରେ ଓଡ଼ିଶା ଛାଡ଼ି ବିହାର ପ୍ରଦେଶକୁ ଯିବାକୁ ପଡ଼ିଲା । ସେଠି ପହଞ୍ଚି ଅନୁଭୂତିର ଲେଖାଟିଏ ଲେଖିଲି ଓ ରାଷ୍ଟ୍ରଦୀପକୁ ପଠାଇଲି । ଛାପିବେ ନ ଛାପିବେ ଏ ଚିନ୍ତାରେ ଥିବାବେଳେ ପରସପ୍ତାହ ରାଷ୍ଟ୍ରଦୀପ ପୃଷ୍ଠାରେ ଲେଖାଟି ଦେଖିବା ପରେ ମନରେ ଖୁସିର ଝଲକ ଖେଳିଗଲା । ତା'ପରଠାରୁ ଲେଖାଲେଖିର ଅଭ୍ୟାସ ଏ ଯାଏଁ ଅଛି ।

ବିଚାରଟିଏ ମନକୁ ଆସିଲେ ପ୍ରଥମେ ସେ ବିଷୟରେ ସାଙ୍ଗ ମହଲରେ ଆଲୋଚନା କରିଥାଏ । ବିଷୟର ବିଶ୍ଳେଷଣରେ ମୋର ମତାମତକୁ ଶ୍ରୋତାମାନେ ଗ୍ରହଣ କଲେ, ଏହାକୁ ଗୋଟିଏ ନିବନ୍ଧରେ ରୂପାନ୍ତର କରିଥାଏ । ସ୍ଥାନୀୟ ଭାବେ ପ୍ରକାଶିତ ସାମୟିକ ପତ୍ରିକାମାନେ ମଧ୍ୟ ସମୟେ

ସମୟେ ଲେଖକର ଲେଖାଗୁଡ଼ିକ ପ୍ରକାଶ କରି ପ୍ରୋତ୍ସାହନ ଓ ସ୍ୱୀକୃତି ଦେଇଥାଆନ୍ତି ।

ଗତ ଛ'ମାସ ହେଲା ଭୁବନେଶ୍ୱରରେ ଅବସ୍ଥାନ ପରଠାରୁ, ବିଶେଷଭାବେ ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ରରେ ଯୋଗଦେବା ପରଠାରୁ ମୋର ଭାବିବା, ପଢ଼ିବା ଓ ଲେଖିବାର ପ୍ରକ୍ରିୟା ବଢ଼ିଯାଇଛି । ଫଳସ୍ୱରୂପ ଲେଖା ସଂଖ୍ୟା ବଢ଼ିଛି । ପାଠକ ମହଲରେ ପରିଚିତି ମଧ୍ୟ ବଢ଼ିଛି ।

ଗତ ପ୍ରାୟ ଏକମାସ ତଳେ ରାଷ୍ଟ୍ରଦୀପ ପୃଷ୍ଠା ଓଲଟାଇବା ବେଳେ ଦୃଷ୍ଟିଗୋଚର ହେଲା ଏ ବର୍ଷର ବସନ୍ତ ମିଳନ ଉତ୍ସବର କାର୍ଯ୍ୟସୂଚୀ । ସେଥିରେ 'ଲଳିତ ନିବନ୍ଧ' ବିଭାଗରେ ସାହିତ୍ୟ ସମ୍ମାନ ପାଇଁ ଲେଖକକୁ ନିର୍ବାଚିତ କରିଥିବାରୁ ମନୋବଳ ଆହୁରି ବଢ଼ିଗଲା । ସ୍ଥିର କଲି ପ୍ରକାଶିତ ଲେଖାଗୁଡ଼ିକ ଏକତ୍ର କରି ବହିଟିଏ ଛପାଇବି । ମୋଟ୍ ଚାଳିଶଟି ଲେଖା ଏକାଠି କରିଛି । ଲେଖାଗୁଡ଼ିକ କ୍ରମରେ ସଜାଯାଇଛି । ବହିଟିର ନାଁ 'ବିଚାର ଓ ବିଶ୍ଳେଷଣ' ରଖିଛି । ବହିଟିର ପାଣ୍ଡୁଲିପି ତିନିଜଣ ବରିଷ୍ଠ ଲେଖକଙ୍କୁ ପଢ଼ାଇଛି । ଜଣେ ଶ୍ରୀ ବୈଷ୍ଣବ ଚରଣ ମହାନ୍ତି, ଅନ୍ୟ ଜଣେ ଶ୍ରୀ ନିରଞ୍ଜନ ପାଢ଼ୀ ଏବଂ ତୃତୀୟ ଜଣକ ଡକ୍ଟର ସୂର୍ଯ୍ୟମଣି ବେହେରା । ସେମାନଙ୍କ ସୁଚିନ୍ତିତ ମତାମତଗୁଡ଼ିକ ମୋ ପାଇଁ ଅତି ମୂଲ୍ୟବାନ । ବିଶେଷ ଭାବେ ଶ୍ରୀଯୁକ୍ତ ବୈଷ୍ଣବ ମହାନ୍ତିଙ୍କର ଅଯାଚିତ ସହଯୋଗକୁ ମୁଁ ଭୁଲିପାରିବି ନାହିଁ । ଏହାର ପ୍ରକାଶ ପାଇଁ ସମସ୍ତ ଆବଶ୍ୟକ ପଦକ୍ଷେପ, ସେ ହିଁ ମୋତେ କହି ଦେଇଛନ୍ତି ।

ବହିଟିର ପ୍ରକାଶନରେ ଅନ୍ୟ ଅନେକ ସହୃଦୟ ବନ୍ଧୁଙ୍କର ସଦୟ ଆଗ୍ରହ ଏବଂ ପ୍ରେରଣା ମୋ ପାଇଁ ଅଭୁଲା ସ୍ମୃତି ହୋଇ ରହିବ । ବହିଟି ପାଠକମାନଙ୍କୁ ଆନନ୍ଦ ଦେଇପାରିଲେ ମୋର ଉଦ୍ୟମ ସାର୍ଥକ ହେବ ।

। ଇତି ।

ଭୁବନେଶ୍ୱର — ବିନୀତ

୧୧.୨.୨୦୦୧ — ଭୁବନାନନ୍ଦ

## ସୂଚୀପତ୍ର

''ଦେବାୟତ କୁଳେ ଜନ୍ମ
ମଦାୟତ ଚ ପୌରୁଷମ୍ ।''

– ବେଣୀ ସଂହାରମ୍

# ଆମ ପଡ଼ିଶା ରାଜ୍ୟ ବିହାର

ଓଡ଼ିଶାର ପଡ଼ିଶା ପ୍ରଦେଶ ବିହାର । ବହୁଦିନରୁ ଦୁଇ ଅଞ୍ଚଳ ମଧ୍ୟରେ ସାଂସ୍କୃତିକ ସମ୍ବନ୍ଧ ରହି ଆସିଛି । ମାତ୍ର ସୀମାବର୍ତ୍ତୀ ଅଞ୍ଚଳର ବାସିନ୍ଦାମାନେ ଦୁଇ ପ୍ରଦେଶର ଭିତିରି କଥା ଜାଣିବାର ସୁଯୋଗ ନାହିଁ । ଓଡ଼ିଶାର ଜଳବାୟୁରେ ଦୀର୍ଘ ପଇଁତିରିଶି ବର୍ଷ ବିତାଇବା ପରେ ଜଣେ ବିହାର ପ୍ରଦେଶରେ ଆସି ବସବାସ କଲେ ସ୍ୱାଭାବିକ ରୂପରେ କିଛି ବିଶେଷ କଥା ଆଖି ଆଗକୁ ଆସିଥାଏ । ସେହିସବୁର ବିବରଣୀ ଏଠାରେ ଦିଆଯାଇଛି ।

### ଶନିବାର ଖିଚୁଡ଼ି

ଭାତ, ରୁଟି ମୁଖ୍ୟ ଖାଦ୍ୟ ହେଲେ ସୁଦ୍ଧା ଶନିବାର ଦିନ ପ୍ରତ୍ୟେକ ବିହାରୀ ପରିବାରରେ ଖିଚୁଡ଼ି ଖାଇବା ଏକ ପୁରାତନ ପରମ୍ପରା । ଏହା ମିଠା ବା ଲୁଣି ହେଇପାରେ । ଏଥିରେ ଚାଉଳ, ଡାଲି ସହିତ ପରିବା ମଧ୍ୟ ପଡ଼ିଥାଏ । ଶନି ଗ୍ରହଙ୍କ ପ୍ରସାଦ ଭାବେ ଗ୍ରହଣୀୟ ଖିଚୁଡ଼ି ଅନ୍ୟ ବାରରେ ତିଆରି କରି ପରଷିଲେ ବିହାରୀଭାଇମାନେ ନାପସନ୍ଦ କରନ୍ତି । ଛୋଟ ବଡ଼ ସମସ୍ତଙ୍କ ଘରେ ଏହି ଶନିବାରିଆ ଖିଚୁଡ଼ି ଦେଖିବାକୁ ମିଳେ ।

### ହନୁମାନ ଝଣ୍ଡା

ଶ୍ରୀରାମ ଭକ୍ତ ହନୁମାନଙ୍କ ନାମରେ ନାମିତ ଏକ ଗେରୁଆ ଝଣ୍ଡା ଘରର ଅଗଣାରେ ଏକ ଉଚ୍ଚ ବାଉଁଶରେ ଉଡୁଥିବା ଦୃଶ୍ୟ ଏଠାରେ ଅନେକ ଘର ଆଗରେ ଦେଖିବାକୁ ମିଳିବ । ତୁଳସୀ ଚଉରା ପରି ଏହି ଝଣ୍ଡାକୁ ପବିତ୍ର ସ୍ଥାନ ରୂପେ ମନେ କରାଯାଏ । ବର୍ଷକୁ ଥରେ ରାମନବମୀ ଦିନ ପୂଜା ଅର୍ଚ୍ଚନା କରି ନୂଆ ଝଣ୍ଡା ଲଗାଇ ପୁରୁଣା ଝଣ୍ଡା ବଦଳାଇବା ମଧ୍ୟ ଏକ ବିଧି । ଏହି ଝଣ୍ଡା ଘରର ସୁରକ୍ଷା ପାଇଁ ଆବଶ୍ୟକ ବୋଲି ଏଠି ସମସ୍ତଙ୍କର ବିଶ୍ୱାସ ।

## ବାବା, ବାବୁସାହେବ, ଲାଲାଜୀ

ବର୍ଣ୍ଣ ବ୍ୟବସ୍ଥା ବିହାର ପ୍ରଦେଶରେ ଅଧିକ ପ୍ରାଞ୍ଜଳ । ବ୍ରାହ୍ମଣମାନଙ୍କୁ ବାବା, କ୍ଷତ୍ରୀୟ ବା ରାଜପୁତମାନଙ୍କୁ ବାବୁସାହେବ ଏବଂ କାୟସ୍ଥ ଶ୍ରେଣୀର ବ୍ୟକ୍ତିଙ୍କୁ ଲାଲାଜୀ କହି ସମ୍ବୋଧନ କରିବା ଏଠାରେ ସମସ୍ତଙ୍କର ଅଭ୍ୟାସ । ପ୍ରତ୍ୟେକ ଗୋଷ୍ଠୀ ଭିତରେ ପାରସ୍ପରିକ ସମ୍ବନ୍ଧ ମଧ୍ୟ ନିବିଡ଼ । ଏମାନଙ୍କ ବ୍ୟତୀତ ଭୂମିହାର ଶ୍ରେଣୀର କୃଷିଜୀବୀ ଗୋଷ୍ଠୀ ଏଠିକା ସମାଜର ଏକ ପ୍ରଭାବଶାଳୀ ଅଙ୍ଗ ।

## ସେଲୁନ ବହୁଳ ବଜାର

ବଜାରରେ ବହୁ ସଂଖ୍ୟକ ସେଲୁନ୍ ଓ ପ୍ରତ୍ୟେକ ସେଲୁନ୍‌ରେ ଚକାଚକ୍ ସାଜସଜ୍ଜା ଦେଖିବାକୁ ମିଳେ । ହଜାମ, ଠାକୁର, ନାପିତ ଇତ୍ୟାଦି ସମ୍ବୋଧିତ ହେଉଥିବା ଏହି ବ୍ୟକ୍ତିମାନେ ନିଜ ବ୍ୟବସାୟରେ ବେଶ୍ ସମୃଦ୍ଧ ମନେ ହୁଅନ୍ତି । ବିଶେଷ କରି ଏଠାରେ କୌଣସି ଏକ ସାଧାରଣ ଘଟଣାରେ ପ୍ରତ୍ୟେକ ବ୍ୟକ୍ତି ମୁଣ୍ଡନ ହେବା ପାଇଁ ବାଧ୍ୟ ଥିବାରୁ ସେଲୁନ୍ ଉପରେ ବହୁତ ଭିଡ଼ । ପ୍ରକୃତରେ ପୂର୍ବକାଳର ଜାତିଗତ ବୃତ୍ତି ମଧ୍ୟରେ କ୍ଷୌର କ୍ରିୟା ହିଁ ସକ୍ରିୟଭାବେ ତିଷ୍ଠି ରହି ପାରିଛି ।

## ନଡ଼ିଆ ସ୍ୱଭାବ

ଭୋଜପୁରୀ, ମୈଥିଳୀ, ଅଙ୍ଗିକା, ଖୋଠା ବୋଲିରେ କଥା କହୁଥିବା ଲୋକମାନେ ମୁହଁରେ କର୍କଷ ମନେ ହୁଅନ୍ତି ।କଥା କଥାରେ ରାଗିଯିବା, ଅଣ୍ଟାରେ ଗାମୁଛା ବାନ୍ଧିବା, ସାର୍ଟର ହାତକୁ ଉପରକୁ ମୋଡ଼ିବା ଦୃଶ୍ୟ ଅନେକ ଥିଲେ ମଧ୍ୟ ଧର୍ମ ଭୀରୁତା, ଆଦର୍ଶର ଅନୁକରଣ ସହିତ ଭାରତୀୟ ସଂସ୍କୃତି ପ୍ରତି ଶ୍ରଦ୍ଧା କାରଣରୁ ମହାରାଜ, ସରକାର, ବସ୍ (ଉପରିସ୍ଥ କର୍ମଚାରୀ), ଭାଇସାହେବ, ଆଦି ଶବ୍ଦରେ ସମ୍ବୋଧନ କରି କଥୋପକଥନ ଆରମ୍ଭ କରିବାରେ ଲୋକମାନେ ବେଶ୍ ଅଭ୍ୟସ୍ତ ।

## ସତୁ ଭୋଜନ

ବୁଟକୁ ଭାଜି ଗୁଣ୍ଡ କରି ଖାଦ୍ୟ ଭାବେ ଗ୍ରହଣ କରିବା ଏଠାକାର ଏକ ପୁରୁଣା ଅଭ୍ୟାସ । ଦିନ ଦିନ ଧରି କେବଳ ସତୁ ଖାଇ ରହିଯିବା ଘଟଣା ଦେଖିବାକୁ ମିଳେ । ଏହା ସହଜରେ ହଜମ ହୁଏ, ପେଟ ଥଣ୍ଡା ରଖେ । ରୋଷେଇ ଝିନ୍‌ଝଟ ନାହିଁ । ତା ସାଙ୍ଗକୁ ପୁଣି ଅନେକ ଗୁଣରେ ଏହା ଭରପୂର । ସତୁକୁ ଚିନି ସହିତ ବା ଲୁଣ ସହିତ ଖିଆଯାଏ । ଏହା ସର୍ବତ କରି ଖିଆଯାଏ ମଧ୍ୟ ।

*ବୋକାରୋ (ବିହାର)*
*ଅଗଷ୍ଟ, ୧୯୮୯*

◆◆◆

# ଜୀବନ ମୂଲ୍ୟର ଅବକ୍ଷୟ

ଆଜିକାଲିର ଜନଜୀବନକୁ ନିକଟରୁ ଅନୁଧ୍ୟାନ କଲେ ଏମିତି କେତେ ଘଟଣା ନଜରକୁ ଆସୁଛି ଯାହା ଆମ ସମାଜରେ ପ୍ରତିଷ୍ଠିତ ଜୀବନ ମୂଲ୍ୟର ବିରୁଦ୍ଧାଚରଣ କରୁଛି । ଏ ପ୍ରକାର ଘଟଣା ନା ସହି ହେଉଛି ନା କହିହେଉଛି । ରାଷ୍ଟ୍ରଦୀପ ପରି ଚେତନଶୀଳ ପତ୍ରିକାର ଜାଗରୁକ ପାଠକମାନଙ୍କ ସମ୍ମୁଖରେ ଏପରି କେତୋଟି ଘଟଣା ତଳେ ଦିଆଗଲା । ସୁଧୀ ପାଠକେ ଏହାର ବିଚାର କରିବେ ।

ଏକ :

ସେଦିନ ଜଣେ ବନ୍ଧୁଙ୍କ ଘରେ ସୁଖଦୁଃଖ କଥା ଛଳରେ ଏ ଘଟଣା କାନକୁ ଆସିଲା । ବନ୍ଧୁ ନିକଟରେ ବରଗଡ଼ ଓ ପଦ୍ମପୁର ଯାଇଥିଲେ । ସେଠାରେ ଚାଲିଥିବା ମାଟ୍ରିକ୍ ପରୀକ୍ଷା ଖାତା ମୂଲ୍ୟାଙ୍କନ କେନ୍ଦ୍ରକୁ ଯାଇ କେନ୍ଦ୍ରର ଶିକ୍ଷକମାନଙ୍କୁ ହାତ କରିଆସିଥିଲେ । ଯାଇଥିଲେ ହାଇସ୍କୁଲ ତରଫରୁ, ପ୍ରତି ପିଲା ପିଛା ୨୦୦ ଟଙ୍କା ପ୍ରତ୍ୟେକ ବିଷୟ ପାଇଁ ଅସୁଲ ହୋଇଥିଲା । ମୋଟ ୧୮୦୦ ଟଙ୍କା ନେଇ ଯାଇଥିଲେ ଓ ଯାହା ଖର୍ଚ୍ଚ ହେଲା ସେ ସବୁର ହିସାବ ଆଣି ହେଡ୍‌ମାଷ୍ଟରଙ୍କୁ ବୁଝାଇଥିଲେ । ହେଡ୍‌ମାଷ୍ଟର ଚିନ୍ତିତ ଥିଲେ କାରଣ ପ୍ରଥମ ବ୍ୟାଚ୍ ପିଲା ପରୀକ୍ଷା ଦେଇଛନ୍ତି । ପ୍ରାଇଭେଟ୍ ହାଇସ୍କୁଲର ପରୀକ୍ଷା ଫଳ ଭଲ ନହେଲେ ସ୍କୁଲ ବଦ୍‌ନାମ ହୋଇଯିବ ।

ତା ଛଡ଼ା ଅଭିଭାବକମାନେ ଯେକୌଣସି ଉପାୟରେ ପିଲାଙ୍କୁ ପାଶ୍ କରାଇବା ପାଇଁ ବିଶେଷ ବ୍ୟଗ୍ର । ଏମିତି ଅନ୍ୟ ଆଠଟି କେନ୍ଦ୍ରକୁ ମଧ୍ୟ ଶିକ୍ଷକ ଓ ଅଭିଭାବକମାନେ ଯାଇ ପିଲାମାନଙ୍କ ପାଶ୍‌ର ବ୍ୟବସ୍ଥା କରି ଆସିଛନ୍ତି । ମୁଁ ପଚାରିଲି ବନ୍ଧୁଙ୍କୁ ଯଦି

ମୂଲ୍ୟାୟନ କେନ୍ଦ୍ରର ଶିକ୍ଷକ ଟଙ୍କା ନେଇଯାଇ ପାଶ୍ ନକରାନ୍ତି ? ବନ୍ଧୁ କହିଲେ ଏ ଅନ୍ୟାୟ ସେ କରିବେ ନାହିଁ । ଏ କଣ ନୂଆ ? ପ୍ରତିବର୍ଷ, ଅନେକ ସ୍ଥାନରୁ ଶିକ୍ଷକ ଅଭିଭାବକମାନେ ଆସି ଏମିତି କରିଆସୁଛନ୍ତି । ତେବେ ସେଥିରେ ଗୋଟିଏ ସର୍ତ୍ତ ଯେ ଖାତାରେ ଅନ୍ତତଃ ୧୫% ମାର୍କ ଆସିଥିବା କଥା । ବାକି ୭.୫%ରୁ ୧୫% ପର୍ଯ୍ୟନ୍ତ ନମ୍ବର ଶିକ୍ଷକ ସାହାଯ୍ୟ କରିବେ ।

ପୁଣି ପଚାରିଲି ଏପରି ପାଶ୍‌କରି ଲାଭ କଣ ? ବନ୍ଧୁ କହିଲେ, ପିଲାର ଭବିଷ୍ୟତ ନଷ୍ଟ ହୋଇଯାଇଥାନ୍ତା । ଯେକୌଣସି ଉପାୟରେ ମାଟ୍ରିକ୍‌ଟା ଖସିଗଲେ, ତା ପରେ କଲେଜରେ ଦେଖାଯିବ । ଘଟଣାଟି ଆମୁଳଚୂଳ ଶୁଣିବା ପରେ ନିଜକୁ ନିଜେ କହିଲି :- କଣ କରିବା, କପାଳରେ ସିନା କର ମାରିବା ।

ଦୁଇ :

ଆଉ ଦିନକର କଥା । ଜଣେ ଆତ୍ମୀୟଙ୍କର କୋଠାଘର ତିଆରି ଚାଲିଛି । ଲକ୍ଷାଧିକ ଟଙ୍କା ଖର୍ଚ୍ଚ ବରାଦ । ଘର ତିଆରି ଦାୟିତ୍ୱ ନେଇଛନ୍ତି ଜଣେ ପୁରୁଣା ପ୍ରତିଷ୍ଠିତ ବ୍ୟକ୍ତି । ତାଙ୍କରି ଘରେ ଆମେ ଅତିଥି । ଚା ପିଆ ସହିତ ଦୁଃଖସୁଖ କଥା ପଡିଛି । ବହୁତ ଆନନ୍ଦର ସହ ମୁରବୀ ଆତ୍ମୀୟ ଜଣକ କହୁଥିଲେ । ଯାହାହେଉ, ସିମେଣ୍ଟର ଯୋଗାଡ଼ ସୁବିଧାରେ ହୋଇଗଲା । ଆମ ପାଖଘର ପୁଅ କଣ୍ଟ୍ରାକ୍ଟର ହୋଇଛି । ଆମକୁ ୮୦ ବସ୍ତା ସିମେଣ୍ଟ ଦେଇଦେଲା । ବଜାରରେ ୧୩୫ ଟଙ୍କା ଦର ହେଲାଣି, ଆମକୁ ଦେଲା ୯୦ ଟଙ୍କା ଦରରେ । ଆଉ ଯାହା ଦରକାର ପରେ ଦେଇଦେବ କହିଛି । କଣ୍ଟ୍ରାକ୍ଟରଙ୍କ ପ୍ରତି କୃତଜ୍ଞତାର ଝଲକ । କଣ୍ଟ୍ରାକ୍ଟର ମଧ ପରିଚିତ ।

କଥା ହେବା ବେଳେ ସଫଳତାର ଗୌରବରେ ଫୁଲି ଉଠୁଥାନ୍ତି । ଓଭରସିଅର ଭଲଲୋକ । ଏସ୍.ଡି.ଓ. ସାଇଟ୍‌କୁ ଯାଆନ୍ତି ନାହିଁ । ହାତରେ ଭଲ କାମଟେ ଯୁଟିଛି । ପ୍ରଥମ ବିଲ୍ ୭୫,୦୦୦ ଟଙ୍କା ଉଠାଇଛୁ । ବାକି ୧,୦୦୦୦୦ ଟଙ୍କା ଫାଇନାଲ୍ ବିଲ୍ ହେବ । ଏମିତି ନିଜ ଲୋକଙ୍କୁ ସାହାଯ୍ୟ ନକରି ପାରିଲେ ଆଉ ଲାଭ କଣ, ତାଛଡ଼ା କଣ୍ଟ୍ରାକ୍ଟରୀ ପାଇଁ ପୁଞ୍ଜି ଆସିବ କୁଆଡୁ ? ସିମେଣ୍ଟ ଆଉ ଛଡ଼ କିଛି ବିକିଦେଇ ହାତରେ ପାଣ୍ଠି କରିଦେଇଛୁ ।

ଆତ୍ମୀୟ ଜଣକ ପୁଣି କହୁଥିଲେ, ବଜାର ଦରରେ ଜିନିଷ କିଣି ଘର କରିହେବନି । କାଠପାଇଁ ମଧ ଜଣକୁ କହିଛି । ସ ମିଲ୍‌ରେ ଯାହା ୨୫,୦୦୦ ଟଙ୍କା ପଡିଥାନ୍ତା ଚୋରାରେ କାଠ ଆଣି କବାଟ, ଝରକା କରିଦେବି, ୭,୦୦୦ ଟଙ୍କା ଖର୍ଚ୍ଚ ପଡ଼ିବ । ଆତ୍ମୀୟ ଜଣକ ମୋତେ ଶୁଣାଇ ପୁଣି କହିଲେ, ପୁଅ ଅତିଶୀଘ୍ର ଜାଗାଖଣ୍ଡେ କିଣି ଘରଖଣ୍ଡେ କରି ପକାଅ । ସବୁ ଜିନିଷର ଦର ବଢିଚାଲିଛି । ସବୁ ଶୁଣିଲି । ଆଉ ଦୀର୍ଘଶ୍ୱାସ ପକାଇ କହିଲି, ଶୀଘ୍ର କିଛି କରିବାକୁ ପଡ଼ିବ ।

ଗାଁରେ ଖୁବ୍ ଉତ୍ସାହ, ନୂଆ କଲେଜ ହୋଇଛି । ଗାଁ ମୁଣ୍ଡ ଆମ୍ବଗଛ ମୂଳେ ସ୍କୁଲଘର ବାରଣ୍ଡାରେ ପାଠ ପଢୁଆ ପିଲାଙ୍କର ଭିଡ଼, ତାସ୍‌ଖେଳ ଚାଲିଛି । ଏ ବର୍ଷ ପାଲା ଡେରି ହୋଇଗଲା । ପଞ୍ଚାୟତ କଲେକ୍‌ସନ୍‌ରେ କଂଗ୍ରେସ ବାଲା ଚିତ୍ ହୋଇଗଲା । ଟୋକାମାନେ ଜନତା ଦଳ, ତାଙ୍କ ଦଳରୁ ସରପଞ୍ଚ ହେଲେ । ତା'ରି ଭିତରେ ଶୁଣିବାକୁ ମିଳିଲା, କଲେଜ ପିଅନ ଚାକିରି ପାଇଁ ଗାଁ ପଞ୍ଚୁ ପଧାନଙ୍କ ପୁଅ ସତୁରା ୩୬,୫୦୦ ଟଙ୍କା ଜମା କରିଛି । ତାଙ୍କର ୨୬ ଗୁଣ୍ଠ ଚାଷଜମି ବିକ୍ରୀ କରିଦେଲେ । ସେହି ବିକ୍ରୀଧନ କଲେଜରେ ଜମାଦେଇ ପୁଅ ପାଇଁ ପିଅନ ଚାକିରିଟି ସ୍ଥିର କରିଦେଲେ ।

ଅନ୍ୟ ପୋଷ୍ଟ ପାଇଁ ଏତେ ଭିଡ଼ ନଥିଲା । ପିଅନ ଚାକିରିଟି ପାଇଁ ବହୁତ କ୍ୟାଣ୍ଡିଡେଟ୍ । ଅଷ୍ଟମ, ନବମ ପଢି ଘରେ ବସିଥିବା ଯେତେକ ପିଲା ସମସ୍ତେ ଆଶାୟୀ । ଘରକାମ, ଚାଷକାମ କରିବାକୁ ଲାଜ ଲାଗୁଛି । ସଫା ଲୁଗା ପିନ୍ଧି, ମୁଣ୍ଡକୁ କୁଣ୍ଡାଇ, ଚପଲ ପିନ୍ଧି ଛାଇରେ ବସିବା ଅଭ୍ୟାସ ହୋଇଗଲା ପରେ ବିଲବାଡ଼ି କାଦୁଅ, ପାଣି, ଗାଈ ବଳଦ ସାଙ୍ଗରେ କାମ କରିବା ଭାରି କଷ୍ଟସାଧ । ଏତେବାଟ ପାଠପଢି ଯଦି ପୁରୁଣା ପେଷା ସେହି ଚାଷ କଲା ତେବେ ପାଠ ପଢାରୁ ମିଳିଲା କଣ ? ଏସବୁ କଥାକୁ ଭାବି ବାପା ମଧ ରାଜି ହୋଇଗଲେ । ଯାହା ପଛେ ଖର୍ଚ୍ଚ ହେଉ ପୁଅକୁ ଚାକିରି ମିଳୁ ।

ନଦୀ ଘାଟ ନିଲାମ ହେଲା ଭଳି କଲେଜର କିରାଣି ପୋଷ୍ଟ ଓ ପିଅନ ପୋଷ୍ଟର ନିଲାମ ହେଲା । କିରାଣି ଲାଗି ୨୫,୦୦୦ ଟଙ୍କା ପର୍ଯ୍ୟନ୍ତ ଡାକ ହେଲା । ମୁଁ ପଚାରିଲି ଏବେ ତ ନୂଆ କଲେଜ, ଦରମା କେତେ ମିଳିବ ଯେ ଏତେ ଗୁଡ଼ାଏ ଟଙ୍କା ଦେଇ ଚାକିରି ପାଇଁ ଆଗ୍ରହ ? ଉତ୍ତର ମିଳିଲା - ଏବେ କିଛି ମିଳିବନି । ଦିନେ ନା ଦିନେ ତ କଲେଜଟି ସରକାର ହାତକୁ ନେବେ । ସେତେବେଳେ ତ ଚାକିରିଟା ଥୁଆ । ଏବେ ତ ଘରେ ଖାଇ ଚଳିଯିବ ।

ନିଜ ମନକୁ ବୁଝାଇ ପାରିଲିନି । ତେବେ ଅପର ପକ୍ଷରୁ ଆଗ୍ରହ ଉତ୍ସାହ ଦେଖି ନିଜର ଅବୁଝା ମନକୁ ସଂଯତ କରି ନେଲି । ଯାହା ହେଉଛି ହେଉ । ଆମେ ହେଲୁ ଗାଁର ଦି ଦିନିଆ କୁଣିଆ । ବର୍ଷକୁ ଥରେ ଦୁଇ ଦିନ ପାଇଁ ଆସି ଏତେ ଦୂର ମୁଣ୍ଡ ଖେଳାଇବାରେ କି ଲାଭ ? ନିଜେ ଚାକିରିଟିଏ କରି ସୁବିଧାରେ ରହିଛୁ । କାହାପାଇଁ ତ ଚାକିରି ଖଣ୍ଡିଏ ଦେଇପାରିଲୁ ନାହିଁ । ସିଏ ଯେମିତି ଉପାୟରେ ନିଜ ପାଇଁ ଚାକିରି ଯୋଗାଡ଼ କଲା । ସେଥିରେ ଆମେ କହିବାକୁ କିଏ ?

ଚାରି :

ଖରା ଛୁଟି । ସ୍କୁଲ କଲେଜ ସବୁ ବନ୍ଦ । କୋଳାହଳମୟ ସ୍କୁଲ ପରିସର ଶୂନ୍‌ସାନ ଲାଗୁଛି । ପିଲା ଦିନର ସ୍ମୃତିଜଡ଼ିତ ଘର ଆଉ ପଢ଼ିଆକୁ ବୁଲିଯାଇ ଦେଖିଲି ତିନି ବଖରା ପୁରୁଣା ଘର ସାଙ୍ଗରେ ୨ ବଖରା ନୂଆଘର ତିଆରି ହୋଇଛି । ସ୍କୁଲ ହତା

ବାଡ଼ି ସବୁ ଭାଙ୍ଗିଯାଇଛି । ଚାରିଆଡ଼େ ଧୂ ଧୂ ପଡ଼ିଆ । ବାରଣ୍ଡାରୁ ସିମେଣ୍ଟ ଖଣ୍ଡମାନ ଛାଡ଼ିଯାଇଛି । ଝରକାର ରେଲିଂ ଖଣ୍ଡେ ଖଣ୍ଡେ ଭାଙ୍ଗିଲାଣି । ଦୁଇଜଣ ସ୍କୁଲ ପିଲା ପାଖରେ ବୁଲୁଥିଲେ । ପରିସ୍ଥିତି ବିଷୟ ପଚାରି ବୁଝିଲି ।

ନୂଆଘର ବଖରାରୁ ଗୋଟିଏ କଲେଜ ଅଧ୍ୟାପକଙ୍କର ବାସ ଗୃହ ହୋଇଛି । ତେଣୁ ଗୋଟିଏ କ୍ଲାସ୍, ପାଖରେ ଥିବା ମେଲା ଚାଳ ଘରେ ହେଉଛି । ଉପ୍ରା ସ୍କୁଲ ପାଇଁ ନିର୍ମିତ ଘରେ କଲେଜ ଷ୍ଟାଫ୍ ରହୁଛନ୍ତି । ବଖରାକୁ ରାତ୍ରି ଶୟନ ପାଇଁ ଉପଯୋଗ କରୁଥିଲେ ଅସୁବିଧା ନଥିଲା । ସେମାନେ ଶିକ୍ଷିତ ଲୋକ । ଗାଁକୁ ଅଧ୍ୟାପକ ହୋଇ ଆସିଛନ୍ତି । ତେଣୁ ତାଙ୍କ ପାଇଁ ବିଶେଷ ଧରଣର ବାସଗୃହ ଦେବାକୁ ପଡ଼ିବ । ଏଥିପାଇଁ ପୂରା ବଖରାଟି ଚାରି ଜଣ ଅଧ୍ୟାପକଙ୍କର କ୍ୱାର୍ଟର ହୋଇଛି । ଗାଁ ସଭାର ନିଷ୍ପତ୍ତିକୁ ବିଚରା ପ୍ରାଇମେରୀ ସ୍କୁଲ ଛାତ୍ରମାନେ ବା କଣ କରନ୍ତେ ? ସ୍କୁଲ ଶିକ୍ଷକମାନଙ୍କ ମତାମତ ପଚାରୁଛି କିଏ ?

ଗାଁରେ କଲେଜ କରିଛୁ । ଗାଁ ଜଙ୍ଗଲ ଗାଁ ଖଦାନ ଗାଁ ପୋଖରୀ, ଗାଁ ବିଲ ଏ ସବୁର ଆମଦାନି ଏବେ କଲେଜରେ ଲାଗିଛି । ପାଖ ଗାଁବାଲାଙ୍କଠାରୁ ଆମେ ଆଗରେ ଅଛୁ ଓ ରହିବୁ । ତେଣୁ କଲେଜ କରିବୁ । ଗୋଟିଏ ହାଇସ୍କୁଲରୁ ପିଲା କଲେଜରୁ ଆସିବେ । +୨ର ଦୁଇ କ୍ଲାସ୍‌ରେ ୨୮+୩୬=୬୪ ଜଣ ଛାତ୍ରଛାତ୍ରୀ ନାଁ ଲେଖାଇଛନ୍ତି । କ୍ଲାସ୍‌କୁ ଆସୁଛନ୍ତି ୧୫, ୨୦ ଜଣ ଲେଖାଏଁ ।

କିଛି ଦୂରରେ ଥିବା ପାହାଡ଼ ତଳେ ଘର ତିଆରି ହୋଇଛି, ସେଠାକୁ କଲେଜ ଉଠିଯିବ । ଏବେ କଲେଜ ଚଳାଉଥିବା ସମିତି ସଭ୍ୟମାନେ ମଧ୍ୟ କଲେଜ ପାଠ ପଢିବାର ସୁଯୋଗ ପାଇ ନଥିଲେ । ତାଙ୍କ ପିଲାମାନେ ଏଥିରୁ ବଞ୍ଚିତ ନ ହୁଅନ୍ତୁ । ଏହା ହେଉଛି ସେମାନଙ୍କର ଅନ୍ତରର କାମନା ।

କିନ୍ତୁ କାହିଁକି ? ମାକ୍‌ଲେ ଶିକ୍ଷାର ବିସ୍ତାର କରି ସାର୍ଟିଫିକେଟ୍‌ଗୁଡ଼ିଏ ବାଣ୍ଟି ଚାଲିଲେ କାହାର କି ଲାଭ ହେବ ? ଏହି ସାର୍ଟିଫିକେଟ୍‌ଧାରୀ ଯୁବକ ଯୁବତୀଗଣ କେବଳ ଚାକିରିକୁ ଲକ୍ଷ୍ୟ କରିଛନ୍ତି । କୁଆଡୁ ଏତେ ଚାକିରି ଆସିବ ? ଏତେସବୁ କିଏ ଶୁଣିବ ? କିଏ ଶୁଣାଇବ । ସମସ୍ତେ ତ ସୁଅରେ ଭାସି ଚାଲିଛନ୍ତି । ଆମ ଗାଁ ଆଗେଇଛି ।

*କନ୍ତିଓ କାଟେଣୀ, ଢେଙ୍କାନାଳ*
*ଅଗଷ୍ଟ, ୧୯୯୨*

◆◆◆

# ଆଜିର ପରିଭାଷା

ସମୟ ବଦଳୁଛି । ସମୟର ପରିବର୍ତ୍ତନ ସଙ୍ଗେ ସଙ୍ଗେ ଆମ ସମାଜରେ ମଧ୍ୟ ଅନେକ ପରିବର୍ତ୍ତନ ଘଟୁଛି ।ପରିବର୍ତ୍ତନ ମଧ୍ୟରେ ଏକ ବିଶେଷ ଦିଗ ହେଉଛି, ଚିନ୍ତା କ୍ଷେତ୍ର, ବିଚାର କ୍ଷେତ୍ର ଇଂରାଜୀରେ ଯାହାକୁ କୁହାଯାଏ ଭାଲ୍ୟୁଜ୍ । ଏ କ୍ଷେତ୍ରରେ କେତେକ ଶବ୍ଦର ଅର୍ଥ ମଧ୍ୟ ବଦଳି ଯାଇଛି । ଗତ ଦଶ କୋଡ଼ିଏ ବର୍ଷ ତଳେ ଏକ ନିର୍ଦ୍ଦିଷ୍ଟ ଶବ୍ଦର ପରିଭାଷା ଯାହାଥିଲା, ଆଜି ତାହାର ଅର୍ଥ ଭିନ୍ନ ହୋଇଯାଇଛି । କେତେକର ଅର୍ଥ ସମ୍ପୂର୍ଣ୍ଣ ଓଲଟି ଯାଇଛି । ଏ ପ୍ରକାର କେତୋଟି ଉଦାହରଣ ବେଳେ ପ୍ରଦାନ କରାଯାଇଛି ।

ଦଲାଲ

*ଅମିନ, ଜାମିନ, ମଧ୍ୟସ୍ଥି, ନହେବ କହନ୍ତି ଅଗସ୍ତି* - ଏହି ଲୋକକଥାକୁ ଆଖିରେ ରଖି ଦଲାଲ କାମ କରିବାକୁ ପୂର୍ବେ ସାଧାରଣତଃ ଲୋକମାନେ ନାପସନ୍ଦ କରୁଥିଲେ । କ୍ରମେ ଦଲାଲମାନଙ୍କର ଆବଶ୍ୟକତା ଦେଖାଗଲା । ଧୀରେ ଧୀରେ ଦଲାଲ କାମ ଏତେ ବଢ଼ିଯାଇଛି ଯେ ସରକାରୀ, ବେସରକାରୀ, ବ୍ୟବସାୟ ଇତ୍ୟାଦି ପ୍ରତ୍ୟେକ କ୍ଷେତ୍ରରେ ବିନା ଦଲାଲରେ ଚଳି ହେବନାହିଁ । ଦଲାଲି କରି ପେଟ ପୋଷିବା ଏକ ପେଷା ହୋଇଗଲାଣି । ଦଲାଲ କାମରେ ଭଲ ଲାଭ ମିଳୁଛି । ଦଲାଲମାନଙ୍କୁ ଉଚ୍ଚସ୍ତରରୁ ପୃଷ୍ଠପୋଷକତା ମିଳୁଛି । ଶେଷରେ ଦଲାଲମାନଙ୍କର ଦୌରାତ୍ମ୍ୟ ଏତେ ଉପରକୁ ଉଠିଗଲା ଯେ, ସଂପ୍ରତି ଦେଶର ସର୍ବବୃହତ ଆର୍ଥିକ ବିଭ୍ରାଟ ଏହିମାନଙ୍କ ଦ୍ୱାରା ଘଟିଲା । ସୁତରାଂ ଦଲାଲ ଶବ୍ଦର ପରିଭାଷା ବର୍ତ୍ତମାନ ପରିପ୍ରେକ୍ଷୀରେ ବଦଳିଯାଇଛି ।

ଚାକିରି

ଚାକର, ନୌକର ଶବ୍ଦରୁ ଚାକିରି ଶବ୍ଦର ସୃଷ୍ଟି । ଅନ୍ୟର ଅଧୀନସ୍ଥ ଭାବେ କାମ କରିବା, ନିଜର ସ୍ୱାଧୀନତା ହରାଇବା ଓ ଶ୍ରମ କରି ମଜୁରିନେବା ଚାକର କାମର ଲକ୍ଷଣ । ପୂର୍ବେ ଚାକିରିଆ ଲୋକ ଗରିବ, ମଜୁରିଆ, ଶ୍ରମିକ ସ୍ତରରେ ମିଳୁଥିଲେ । ରାଜା ମହାରାଜାମାନେ ମଧ୍ୟ ଚାକିରିଆ କମ୍ ରଖୁଥିଲେ । ଜମିଦାର, ଗାଁ ପଧାନ ଆଦି ସାମୟିକ ଭାବେ ରାଜକାର୍ଯ୍ୟ କରୁଥିଲେ । ଇଂରେଜ ସମୟର ପ୍ରାରମ୍ଭକାଳରେ ଚାକିରି

କରିବାକୁ ଲୋକ ମିଳୁନଥିଲେ । ଭଲ ଦରମା, କ୍ବାର୍ଟର, ପେନ୍‌ସନ୍, କମ୍ ପରିମାଣରେ ଦିପଇସା ଉପୁରି ଏବଂ ଅନ୍ୟମାନଙ୍କୁ ଶାସନ କରିବା ଆଦିର ପ୍ରଲୋଭନରେ ଲୋକମାନେ ଧୀରେ ଧୀରେ ଏଥିପାଇଁ ଆକର୍ଷିତ ହେଲେ । ଚାକିରିଆ ନିର୍ମାଣ କରିବାକୁ ଇଂରେଜୀ ସ୍କୁଲ ଓ କଲେଜ ଖୋଲିଲା । ଏବେ କିନ୍ତୁ ଚାକର ହେବାପାଇଁ ଅର୍ଥାତ୍ ଚାକିରି କରିବାପାଇଁ ଲୋକମାନଙ୍କର ଅସଂଖ୍ୟ ଭିଡ଼, ଚାକିରି ଶୂନ୍ୟତା ଏକ ଜାତୀୟ ସମସ୍ୟା । ଚାକିରିଆ କହିଲେ ସାମାଜିକ ସମ୍ମାନ ଅଧିକ । କଲେଜ ସଂଖ୍ୟା ଦିନକୁ ଦିନ ବଢିବାରେ ଲାଗିଛି । ନିଜ ଗୋଡ଼ରେ ଠିଆ ହେବା, ସ୍ୱାଧୀନ ପେଷା କରି ଜୀବିକା ନିର୍ବାହ କରିବା ପାଇଁ ଯୁବ ସମାଜ ପଛଘୁଞ୍ଚା ଦେବାରେ ଲାଗିଛି । ବର୍ତ୍ତମାନ ଚାକିରିର ପରିଭାଷା ବଦଳି ଯାଇଛି ।

· ସରଳତା

ସରଳ ଜୀବନଯାପନ ଅର୍ଥାତ୍ ନିରାଡ଼ମ୍ବର ପୋଷାକ ପରିଧାନ, ସାଦାର ଭୋଜନ, କେଶ ବିନ୍ୟାସ ନକରିବା, ଆଭୂଷଣ ବର୍ଜନ, ଅଦରକାରୀ ଦ୍ରବ୍ୟରେ ଘରକୁ ଭର୍ତ୍ତି ନକରିବା ଏବଂ ନିଜର ପରିବାରବର୍ଗରେ ମଧ୍ୟ ସରଳତାର ଅଭ୍ୟାସ କରାଇବାକୁ ବୁଝାଇଥାଏ । ଇଂରାଜୀରେ କୁହାଯାଇଛି *ସରଳ ଜୀବନ, ଉଚ୍ଚ ଚିନ୍ତନ* । Simple Living, High Thinking ଏବେ କିନ୍ତୁ ଏ ପ୍ରକାର ଜୀବ ତାଚ୍ଛଲ୍ୟର ଶରବ୍ୟ । ଗାଉଁଲିଆ, କାର୍ଟୁନ, କଞ୍ଜୁସ୍ ଆଦି ବିଶେଷଣର ପ୍ରୟୋଗ କରି ଏ ପ୍ରକାର ଲୋକମାନଙ୍କୁ ଏକଘରିଆ କରି ରଖାଯାଉଛି । ବିବାହ ବ୍ରତରେ ଆପଣ ସରଳ ବ୍ୟବସ୍ଥାର ନାଁ ନେଲେ ପରିହାସର ପାତ୍ର ହେବେ । ଭୋଜି ଭାତରେ ବାଜା, ଲାଇଟ୍, ସାମିଆନା, ଆମିଷ ସହିତ ମାଦକ ଦ୍ରବ୍ୟର ବ୍ୟବସ୍ଥା ନଥିଲେ କି ଭୋଜି ସେ ? ଇଂରାଜୀ ସ୍କୁଲର ସଂଖ୍ୟା ବଢିଚାଲିଛି । ସହରର ଘରେ ଘରେ ସୋଫା, ଫ୍ରିଜ୍, ଷ୍ଟିଲ୍ ଆଲମାରୀ, ଡାଇନିଙ୍ଗ୍ ଟେବୁଲ୍, କାର୍ପେଟ୍, କଲର ଟି.ଭି. ଆଦି ସାଧାରଣ ଦୃଶ୍ୟ । ଡ୍ରେସ୍, ଶାଢୀ, ଜୋତାରେ ଘରର ଅଧା ଅଂଶ ଭର୍ତ୍ତି ରହୁଛି । ଆଣ୍ଠୁ ଲୁଚା ଗାନ୍ଧି ପୋଷାକର କଳ୍ପନା କିଏ କରିବ ? ଏ ପରିସ୍ଥିତିରେ ଦେଶରେ ଅଭାବ ଅଛି, ଗରିବ ଅଛନ୍ତି କେହି ବିଦେଶୀ ଲୋକ ବିଶ୍ୱାସ କରିବା ଅସମ୍ଭବ । ଏହିପରି ସରଳତାର ପରିଭାଷା ବଦଳି ଯାଇଛି ।

ଆଦର୍ଶବାଦ

ମଧ୍ୟବିତ୍ତ ପରିବାରରେ ଏବଂ ବିଶେଷ କରି ଭାରତୀୟ ସଂସ୍କୃତିରେ ଆଦର୍ଶବାଦକୁ ଉଚ୍ଚସ୍ଥାନ ମିଳିଥାଏ । କେହି ନୀତି ଆଦର୍ଶକୁ ମାନି ଚଳିଲେ ସମସ୍ତଙ୍କଠାରୁ ସମ୍ମାନ ପାଇଥାଏ, ପ୍ରଶଂସା ପାଇଥାଏ । ଉପବାସ କରିବା, ପୂଜା ଆରାଧାନାରେ ମନଦେବା, ନିଜେ କଷ୍ଟ ସହି ଅନ୍ୟର ମଙ୍ଗଳ କରିବା, ଏଗୁଡ଼ିକ ଆଦର୍ଶ ଜୀବନର ବର୍ଣ୍ଣନା । ବାପା, ମା, ପୁଅ, ଭାଇ, ବୋହୂ ଭାବେ କେହି ନିଜ ଜୀବନରେ ଏପ୍ରକାର ଆଦର୍ଶର ପାଳନ କଲେ ଆଦର୍ଶ ବ୍ୟକ୍ତି ଭାବେ ପରିଗଣିତ ହୋଇଥାଏ । ରାମାୟଣର ଶ୍ରୀରାମ, ଦେବୀ

ସୀତା, ମହାଭାରତର ଶ୍ରୀକୃଷ୍ଣ, ଯୁଧିଷ୍ଠିର ଇତ୍ୟାଦି ଆମ ସମାଜର ଆଦର୍ଶ ଚରିତ୍ର ଭାବେ ଯୁଗଯୁଗରୁ ରହି ଆସିଛନ୍ତି ।

ଏବେ କିନ୍ତୁ କାହାକୁ ଆଦର୍ଶବାଦୀ ବା ଆଇଡିଆଲିଷ୍ଟ କହିବା ଅର୍ଥ ତାକୁ ଗାଳିଦେବା । ଯାହାର କଥା ଶୁଣିବାକୁ ମଧୁର କିନ୍ତୁ ପାଳନ କରିବା କଷ୍ଟକର । ଯେ ଏ ଯୁଗପାଇଁ ଉପଯୁକ୍ତ ନୁହେଁ । ସମୟ ସହିତ ତାଳଦେଇ ଚାଲିବା ଅର୍ଥାତ୍ ଆଦର୍ଶବାଦକୁ ଛାଡ଼ି ସୁବିଧାବାଦକୁ ଗ୍ରହଣ କରିବା, ଏ ପ୍ରକାର ବ୍ୟାଖ୍ୟା ଅନେକଙ୍କ ମୁହଁରୁ ଶୁଣିବାକୁ ମିଳୁଛି । ଆଜିର ଛାତ୍ରସମାଜ, ଯୁବ ସମାଜ ଆଦର୍ଶବାଦର ଧାର ଧରୁନାହାନ୍ତି । ଆଦର୍ଶ କଥା କହିବା, ଆଦର୍ଶକୁ ପାଳନ କରି ଦେଖାଇବା ଲୋକ ବା ସଂସ୍ଥା ଆମ ସମାଜରୁ ଲୋପ ପାଇବାକୁ ବସିଛି । ତେଣୁ ଆଦର୍ଶବାଦର ପରିଭାଷା ମଧ ବଦଳିଯାଇଛି ।

ଏପରି ପ୍ରତ୍ୟେକ ସ୍ତରର ସମାଜ ଜୀବନକୁ ନିକଟରୁ ଅନୁଧ୍ୟାନ କଲେ ପଣ୍ଡିତ, ଆଧୁନିକ, ସ୍ମାର୍ଟ, ଶିକ୍ଷିତ, ଚାଲାକ୍ ଆଜିର ପରିଭାଷା ମଧ ବଦଳିଯାଇଛି । ଏସବୁ ପରିବର୍ତ୍ତନ କିନ୍ତୁ ସାମୟିକ ବୋଲି ମନେହୁଏ । ସମଗ୍ର ଦେଶରେ ଯେଉଁ ଚିନ୍ତନ ମନ୍ଥନ ଚାଲିଛି । ଏହାର ନିଷ୍କର୍ଷ ଦିନେ ନା ଦିନେ ମିଳିବ । ସେହି ଶୁଭ ଦିନର ଆଗମନ ପୂର୍ବରୁ ଏ ପ୍ରକାର ବିକୃତ ଦୃଶ୍ୟ ଦେଖିବାକୁ ମିଳୁଛି, ଯାହାକି କ୍ରମେ ଉଭେଇ ଯିବ । ଦିନେ ଆମ ଭାରତୀୟ ସମାଜର ମୂଳ ବିଚାରର ପୁନଃ ପ୍ରକଟ ହେବ । ପ୍ରତ୍ୟେକ ଶବ୍ଦ ପୁଣି ନିଜର ମୌଳିକ ଅର୍ଥରେ ଉଦ୍‌ଭାସିତ ହେବ ।

*ଧ୍ୟେୟ*

*ସଂଗଚ୍ଛଧ୍ୱଂ ସଂବଦଧ୍ୱଂ*
*ସଂବୋ ମନାଂସି ଜାନତାମ୍*
*ଦେବାଭାଗଂ ଯଥା ପୂର୍ବେ*
*ସଂଜାନନା ଉପାସତେ ।*

*ଅର୍ଥାତ୍ : ତୁମେ ସମସ୍ତେ ଏକାସାଥିରେ ସ୍ନେହ ବନ୍ଧନରେ ଆବଦ୍ଧ ହୁଅ । ଏକା ସାଥିରେ ବସି ବିଚାର କର ଏବଂ ନିଜ ଲକ୍ଷ୍ୟ ପ୍ରାପ୍ତି ପାଇଁ ମିଳିତ ଭାବେ କାର୍ଯ୍ୟ କର । ତୁମର ସବୁ ସଂଗଠନ ମଧ ମିଳିମିଶି କାମ କରନ୍ତୁ, ତୁମର ମନ ଏକ ହେଉ, ନିର୍ଣ୍ଣୟ ଏକ ହେଉ ଏବଂ ତୁମେ ସମସ୍ତେ ମିଳିମିଶି କଲ୍ୟାଣ ଲାଭକର ।*

*କିରିବୁରୁ, ବିହାର*
*ଜୁଲାଇ, ୧୯୯୩*

◆◆◆

# ଅଗ୍ନି ପରୀକ୍ଷା

ଜୀବନରେ ଅନେକ ପରୀକ୍ଷା ଆସିଥାଏ । ସ୍କୁଲ, କଲେଜ ଓ ଚାକିରି ଉପଲକ୍ଷେ ଦେଇଥିବା ପରୀକ୍ଷା ଏବଂ ନିଜର ଆଦର୍ଶ ରକ୍ଷା ପାଇଁ ହୋଇଥିବା ପରୀକ୍ଷାର ଅନୁଭୂତି ଭିନ୍ନ ଭିନ୍ନ ଧରଣର । ପାଶ୍ ଫେଲ୍‌ର ଆଶଙ୍କା ଥାଏ ଆନୁଷ୍ଠାନିକ ପଦ୍ଧତିରେ, ମାତ୍ର ଆଦର୍ଶର ପରୀକ୍ଷାରେ ମୂଲ୍ୟବୋଧର ଉତ୍‌ଥାନ ବା ପତନ ନିର୍ଣ୍ଣୟ ହୋଇଥାଏ । ଏ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ଜୀବନ-ଯାତ୍ରାର ଏକ ମାଇଲ୍ ଖୁଣ୍ଟ ପାର ହୋଇଗଲା ବୋଲି ଧରିବାକୁ ହେବ । ଏହି ପରୀକ୍ଷାକୁ ଅଗ୍ନିପରୀକ୍ଷା କୁହାଯିବା ଯଥାର୍ଥ ।

ଏକ :

ସ୍କୁଲ୍ ଦିନର ଘଟଣା । ଶ୍ରେଣୀର ଶେଷ ପିରିଅଡ୍‌ରେ କ୍ରାଫ୍‌ଟ ଶିକ୍ଷକଙ୍କର ପଢାଇବା ପାଳିଥିଲା । ବିଷୟର ଓଜନ କମ୍ ଥିବାରୁ ସବୁଥର ପରି ସେଦିନ ମଧ୍ୟ ପିଲାମାନେ କୋଳାହଳ କରିବା ଆରମ୍ଭ କରିଦେଲେ । ଚାଳିଶ ଜଣ ଛାତ୍ର ସାତ ଧାଡ଼ିରେ ବସି ପାଟିକଲା ବେଳେ ତାଙ୍କ ମଧ୍ୟରୁ ଦୋଷୀ ଛାତ୍ରକୁ ଠଉରାଇବା କଷ୍ଟକର । ହଠାତ୍ ତା ଭିତରୁ ଜଣେ କାଠ ମାଷ୍ଟ୍ରେ ବୋଲି ଡାକିଦେଲା । ଏ ଡାକରେ ସାର୍‌ଙ୍କର ଅପମାନ ସହିବାର ସୀମା ପାର ହୋଇଗଲା । କିଏ ଡାକିଲା ? ଚୋର, ଚଣ୍ଡାଳ, ଲଫଙ୍ଗା ଇତ୍ୟାଦି ଗାଳିକରି ସାର୍ ଆଗଧାଡ଼ିରୁ ପଛଧାଡ଼ିଯାଏ ଦ୍ରୁତ ପଦରେ ଚାଲିବାରେ ଲାଗିଲେ । ଏତିକିରେ ଶ୍ରେଣୀର ସମସ୍ତଙ୍କର ମୁହଁ ବନ୍ଦ ହୋଇଗଲା । ସତ କୁହ - ସତ କହିଲେ ଛାଡ଼ିଦେବି ବୋଲି ସାର୍ କହିବା ଆରମ୍ଭ କଲେ ।

ଜଣେ ଅନ୍ୟଜଣଙ୍କ ମୁହଁକୁ ଚାହିଁଲା । କିଛି ସମୟ ନୀରବତା ପରେ ଜଣେ ଛାତ୍ର ନିଜ ସ୍ଥାନରେ ଠିଆହୋଇ କହିଲା ସାର୍, ମୋର ଭୁଲ୍ ହୋଇଛି । ଏତକ କହି ତଳକୁ ମୁହଁ କରି ଠିଆହେଲା ସେ । ସାର୍ ପାଖକୁ ଆସି ମୁହଁକୁ ଟେକି ଧରିଲେ । କହିଲେ - ଜଣେ ସତ କହିଲା, ଆଉ କିଏ କହିଛ ଠିଆ ହୁଅ ।

ଶେଷ ପର୍ଯ୍ୟନ୍ତ ସେହି ଜଣକ ଛଡ଼ା ଅନ୍ୟକେହି ଛିଡ଼ା ହୋଇନଥିଲେ ।

ତା ପରଦିନ ଶ୍ରେଣୀ ଆରମ୍ଭରେ ପିଲାମାନେ କୁହାକୁହି ହେଲେ - ଅମୁକ ଟୋକାଟା ସତ କହିବାକୁ ଠିଆହୋଇ ପଡିଲା । ମଜା ବାହାରିବ ଯେ । ଭାବୁଛି ସାର୍ ଛାଡ଼ିଦେବେ ? ଯଦି ଏଡ଼େ ଭଲପିଲା, ତେବେ କମେଣ୍ଟ କରୁଥିଲା କାହିଁକି ? ସେହି ଦିନ ଦ୍ୱିତୀୟ ପିରିଅଡ୍‌ରେ ହେଡ୍ ମାଷ୍ଟ୍ରେଙ୍କ ନୋଟିସ୍ ଆସିଲା - ଭବେଶ୍ ଆଚାର୍ଯ୍ୟ ଶ୍ରେଣୀରେ ଶିକ୍ଷକଙ୍କୁ କଦର୍ଯ୍ୟ ବ୍ୟବହାର କରିଥିବାରୁ ତାକୁ ପାଞ୍ଚଟଙ୍କା ଜୋରିମାନା ଦେବାକୁ ହେବ ।

ତା ପରେ ଭବେଶ ନିଜକୁ ବହୁତ ସୁଧାରି ନେଇଛି । ସେ ବର୍ଷ ବାର୍ଷିକ ପରୀକ୍ଷାରେ ଶ୍ରେଣୀରେ ପ୍ରଥମ ହେଲା ସେ ।

ଦୁଇ :

ଅନ୍ୟ ଏକ ଘଟଣା କଲେଜ୍ ଦିନର । ନିଜ ଜାଗାରୁ ଆଇ.ଏ. ପଢା ଶେଷ କରି ବଡ଼ କଲେଜରେ ବି.ଏ. ପଢିବା ପାଇଁ ଭବେଶ ଗଲା ଭୁବନେଶ୍ୱର । କଲେଜରେ ଆଡ୍‌ମିଶନ୍ ସିନା ହୋଇଗଲା । ମାତ୍ର ହଷ୍ଟେଲ୍‌ରେ ସିଟ୍ ମିଳିଲା ନାହିଁ । ସମାନ ସଙ୍କଟରେ ପଡିଥିବା ଅନ୍ୟ ତିନିଜଣ ସହପାଠୀ ଓ ସେ ମିଶି ଏକ ଭଡ଼ାଘର ନେବେ ଓ ସେଠାରେ ମେସ୍ କରି ରହିବାର ନିଷ୍ପତ୍ତି ହେଲା । ଘରଟିଏ ସ୍ଥିର ହେଲା, ମାତ୍ର ବର୍ଷ ଆରମ୍ଭରେ କ୍ଲାସ୍‌ରେ ଅନିୟମିତତା ଦୃଷ୍ଟିରୁ, ପନ୍ଦର ଦିନ ପାଇଁ ସମସ୍ତେ ଘରକୁ ଯାଇ ଷୋହଳ ତାରିଖ ଠାରୁ କ୍ଲାସ୍ କରିବା ପାଇଁ ମନସ୍ଥ କଲେ । ତେଣୁ ୧୫ ତାରିଖ ସନ୍ଧ୍ୟା ସୁଦ୍ଧା ସମସ୍ତେ ନିଆଯାଇଥିବା ଭଡ଼ାଘରେ ପହଞ୍ଚିବା କଥା ହେଲା ।

ଭବେଶ ନିର୍ଦ୍ଧାରିତ ଦିନ ୧୨ଟା ସୁଦ୍ଧା ପହଞ୍ଚିଲେ ହେଁ ଅନ୍ୟ ତିନିଜଣ ସାଥୀ ୧୬ ତାରିଖ ସକାଳ ସୁଦ୍ଧା ପହଞ୍ଚି ପାରିନଥିଲେ । ଆଶଙ୍କାଗ୍ରସ୍ତ ଦୁଶ୍ଚିନ୍ତା ଓ ଭୟପୂର୍ଣ୍ଣ ରାତ୍ରିଯାପନ କରି ତହିଁଆରଦିନ ଭବେଶ କଲେଜକୁ ବାହାରିବା ସମୟରେ ଅନ୍ୟ ତିନିଜଣ ସାଥି ଆସି ପହଞ୍ଚିଥିଲେ । ସେମାନେ ଭବେଶର ସମୟଜ୍ଞାନ ଓ ଦାୟିତ୍ୱବୋଧତା ପାଇଁ ଆଶ୍ଚର୍ଯ୍ୟ ପ୍ରକଟ କରିଥିଲେ ଏବଂ ନିଜକୁ ସଙ୍କୁଚିତ ମନେ କରିଥିଲେ । ଭବେଶର ଏ ଭାବମୂର୍ତ୍ତି ବନ୍ଧୁମାନଙ୍କୁ ବହୁତ ପ୍ରଭାବିତ କରିଥିଲା । ସାରା ରହଣିକାଳ ପାଇଁ ସେମାନଙ୍କ ମନରେ ଏହା ଏକ ଦୃଢ ରେଖା ଅଙ୍କନ କରିଥିଲା ।

ତିନି :

ଏବର ଘଟଣା ୟୁନିଭର୍‌ସିଟି କ୍ୟାମ୍ପସ୍‌ର ବାଣୀବିହାର ହଷ୍ଟେଲ୍‌ରେ ରୁମ୍ ଦଖଲ କରି ରଖିବା ଏକ ପୁରୁଣା ସମସ୍ୟା । ଜଣକୁ ଆଲଟ୍ ହୋଇଥିବ, ଅନ୍ୟ ଜଣେ ଯାଇ ଜବରଦଖଲ କରି ରହିଥିବ । ଏଥିପାଇଁ ଯୁକ୍ତିତର୍କ, ପାଟିତୁଣ୍ଡ ଏପରିକି ମାମଲା ମାର୍‌ପିଟ୍ ପର୍ଯ୍ୟନ୍ତ ଯାଇଥାଏ । କେତେକ ଜବରଦଖଲକାରୀଙ୍କୁ ବାଧ ହୋଇ ସେହି ରୁମ୍ ଆଲଟ୍ କରି ଦିଆଯାଏ ।

ଭବେଶ ମଧ୍ୟ ସେହି ସମସ୍ୟାର ଶିକାର ହେଲା । ଏକ ନମ୍ବର ହଷ୍ଟେଲ୍‌ର ୨୦୮ ନମ୍ବର ରୁମ୍ ତାକୁ ମିଳିଲା । ସେହି ରୁମ୍‌ରେ ଅନ୍ୟ ଜଣେ ସହପାଠୀ ଆସି ତାଲାଟିଏ ଲଗାଇ ଚାଲିଗଲା । ବୁଝିବାରୁ ଜଣାଗଲା ଯେ ଛାତ୍ର ଜଣକ ବିଜ୍ଞାନ ବିଭାଗର ଦିଲ୍ଲୀପ ରଥ । ବନ୍ଧୁମାନଙ୍କ ସହିତ ପରାମର୍ଶ କରାଗଲା ।  ଅନେକ କହିଲେ ଛାଡ଼ିଦିଅ । କେତେକ କହିଲେ ତୁମେ ସେ ତାଲା ଭାଙ୍ଗି ଭିତରେ ରୁହ । କଣ କରାଯିବ ? କଠିନ ପ୍ରଶ୍ନର ସମ୍ମୁଖୀନ ହେବାକୁ ପଡ଼ିଲା । ଶେଷରେ ନିଷ୍ପତ୍ତି ହେଲା ରବିବାର ଦିନ ସକାଳେ ତାଲା ଭାଙ୍ଗି ଭିତରେ ପଶିବ । ଆଉ ତିନିଜଣ ସାଥି ମନୋବଳ ବଢାଇବା ପାଇଁ ପାଖରେ ରହିବେ ।

ସକାଳେ ୮ଟା ସୁଦ୍ଧା ତାଲା ଭଙ୍ଗା ହୋଇଗଲା । ଜବରଦଖଲକାରୀ ବନ୍ଧୁ ଖବର ପାଇ ୯ଟା ୩୦ମିନିଟ୍ ସୁଦ୍ଧା ପହଞ୍ଚିଲେ । କିଏ ଭାଙ୍ଗିଲା - ଏଡ଼େ ସାହସ ? ମୁଣ୍ଡ ଫଟାଇଦେବି - ମୋତେ ଚିହ୍ନିନି - ନିଆଁ ସଙ୍ଗେ ଖେଳୁଛି, ଆଦି ବଡ଼ ପାଟିରେ କହି ରୁମ୍ ସାମ୍‌ନା ବାରଣ୍ଡାରେ ଏପଟ ସେପଟ ହେଲା । ଆଖପାଖରେ ଅନ୍ତେବାସୀମାନେ ପଦାକୁ ବାହାରି ଏ ତାମସା ଦେଖିଲେ । ତାଙ୍କ ଭିତରୁ ସପକ୍ଷ ବିପକ୍ଷ ଦୁଇଦଳ ହୋଇଗଲେ । ରୁମ୍ ଭିତରୁ ଥାଇ ଭବେଶ୍ ଓ ତାର ସାଥୀମାନେ ମଧ୍ୟ ପାଲଟା ଜବାବ୍ ଦେଲେ । ଆମ ରୁମ୍‌ରେ ଯିଏ ପଶିବ ତାକୁ ଛାଡ଼ିବୁନି - ଦାଦାଗିରି ଆଉ ଯେଉଁଠି ଦେଖାଇବୁରେ ପୁଅ - ଆମେ କିଛି କମ୍ ନୋହୁଁ, ତୁ ପାଞ୍ଚ ହେଲେ ଆମେ ପଚିଶ । ଏମିତି ବାକ୍ୟବାଣ ପ୍ରୟୋଗ ଚାଲିଲା ।

କିଛି ସମୟ ପରେ ଜବରଦଖଲକାରୀ ସ୍ଥାନ ଛାଡ଼ି ଚାଲିଗଲେ । ତଥାପି ଭୟ ଓ ଆଶଙ୍କା ମନରେ ଲାଗି ରହିଥାଏ । ଆରଦିନ ସକାଳୁ କ୍ଲାସ୍‌କୁ ଗଲାବେଳେ ରାସ୍ତାରେ ଜଣେ ଅଟକାଇ କହିଲା - ଓ ବାବୁ ହୋ ! ଶୁଣ, ଶୁଣ, ଚାଲ କ୍ୟାଣ୍ଟିନ୍ ଚାଲ । ତୁମେ କଣ ତାଲା ଭାଙ୍ଗିଦେଲ ? ଚାଲ ଆଜି ଏହାର ବିଚାର ହେବ । କ୍ୟାଣ୍ଟିନ୍‌କୁ ଭବେଶ ଆଉ ଦୁଇଜଣ ସାଥିଙ୍କ ସହ ଯାଇ ଦେଖିଲା, ଗୋଟିଏ କୋଣରେ ୧୦ ଜଣ ବସି ରହିଛନ୍ତି ।

ଧୀର ଓ ଦୃଢ ପଦକ୍ଷେପରେ ଯାଇ ତାଙ୍କ ପାଖରେ ପହଞ୍ଚି ଦେଖିବାରୁ ଜଣାଗଲା - ତା ଭିତରୁ ୩/୪ ଜଣ ସାଥି ଭବେଶର ଜଣାଶୁଣା । ବି.ଏ. ପଢା ବେଳର ସାଥି, ଜଣେ ତା ଭିତରୁ କହିଲା - କିରେ ଭବେଶ ତୁ ! ତୋ ସହିତ ଝଗଡ଼ା । ଭାଉ ଦେଖ, ଏଥିରେ ମୁଁ କିଛି କହିବିନି । ଜବରଦଖଲକାରୀ କିଛି କହି ଆସୁଥିଲେ । ଦଳର ବଡ଼କୁହା ଜଣକ ଏତିକିବେଳେ କହିଲେ - ଭାଇ ତୁମେ  ଆମକୁ ଭୁଲ୍ ଜାଗାକୁ ଆଣିଛ । ଭବେଶକୁ ଆମେ ଜାଣିଛୁ । ସେ ସେଇଠି ରହିବ । ଏ ଗଣ୍ଡଗୋଳ ଛାଡ଼, ଚାଲ, ହାତ ମିଳାଅ ।

ଭବେଶର ଚିନ୍ତା ଦୂର ହେଲା । ସମସ୍ତେ କ୍ୟାଣ୍ଟିନ୍‌ରୁ ପଦାକୁ ଆସିଲେ । ଜବରଦଖଲକାରୀ ବନ୍ଧୁ ପକେଟରୁ ୧୦୦ ଟଙ୍କା କାଢି ଜଳଖିଆ ବିଲ୍ ଦେଉଥିଲେ ।

ଚାରି :

ଏହି ପରିପ୍ରେକ୍ଷୀରେ ଚାକିରି ଜୀବନରେ ଆଉ ଏକ ଘଟଣା ଭବେଶ ସହ ଘଟିଥିଲା । ପ୍ରଥମେ ଚାକିରିରେ ଯୋଗଦେବାର ମାତ୍ର ଏକମାସ ହୋଇଥାଏ । ଦୁଇବନ୍ଧୁ ଟାଉନ୍‌ବସ୍‌ରେ ବସି ପୁରୁଣା ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିରକୁ ଯାଉଥାନ୍ତି । ଦୁଇଜଣଙ୍କ ମଧ୍ୟରେ କଥା ଚାଲିଥାଏ । ସେଦିନର ପ୍ରସଙ୍ଗ ଏକ ଗମ୍ଭିର ବିଷୟ ଥିଲା । ଜୟପ୍ରକାଶ ଆନ୍ଦୋଳନର ମଧ୍ୟବର୍ତ୍ତୀକାଳ । ସରକାରଙ୍କ ବିରୋଧରେ ସତ୍ୟାଗ୍ରହ ଯୋଜନା ଚାଲିଥାଏ । ସହରରୁ ଦଳଦଳ ସତ୍ୟାଗ୍ରହୀ ବାହାରିବେ । କଚେରୀ, ବଜାର କିମ୍ବା ବସ୍‌ଷ୍ଟାଣ୍ଡ ଆଦି ଜନଗହଳି ସ୍ଥାନରେ ସରକାର ବିରୋଧୀ ଧ୍ୱନି ଦିଆଯିବ । ପ୍ରଚାରପତ୍ର ବଣ୍ଟାଯିବ । ପୋଲିସ୍ ଆସି ଆରେଷ୍ଟ୍ କରିବେ । ଜେଲ୍ ଯିବାକୁ ପଡ଼ିବ ।

ଅନ୍ୟ ଜଣେ ବନ୍ଧୁ ଏଥିପାଇଁ ଆଗରୁ ପ୍ରସ୍ତୁତ ହୋଇଥାନ୍ତି । ଆନ୍ଦୋଳନର ପୂର୍ବ ସମସ୍ତ କାର୍ଯ୍ୟକ୍ରମରେ ଉଭୟ ସକ୍ରିୟ ଥାଆନ୍ତି । ମାତ୍ର ଭବେଶ ପାଇଁ ଏ ପର୍ଯ୍ୟାୟର ପଦକ୍ଷେପ ବହୁତ କଷ୍ଟକର ଥିଲା । ଆରେଷ୍ଟ ହେବା, ଜେଲ୍ ଯିବା, ପୋଲିସ୍ ଲାଠି ଖାଇବା, ଚାକିରି ଛାଡ଼ିବା, ନିଜର କ୍ୟାରିୟର ଛାଡ଼ିବା, ଘର ଲୋକଙ୍କ ମନରେ କଷ୍ଟଦେବା, ଏ ସମସ୍ତ ଚିନ୍ତାରେ ଭବେଶର ମନ ଭାରାକ୍ରାନ୍ତ ଥିଲା । ନିଜର ନିଜ ଉପରେ ବିଶ୍ୱାସ, ଆନ୍ଦୋଳନର ସଫଳତା, ମହତ ଉଦ୍ଦେଶ୍ୟ ପାଇଁ ସ୍ୱାର୍ଥ ତ୍ୟାଗ କରିବା ଓ କଷ୍ଟ ସହିବାର ଭାବନା ମଧ୍ୟ ମନକୁ ଆଚ୍ଛାଦିତ କରି ରଖିଥାଏ । ଯିବା-ନଯିବା ଓ ହଁ-ନାହିଁର ଗଳି ପାର ହୋଇ ଟାଉନ୍‌ବସ୍ ଆସି ମନ୍ଦିର ପାଖରେ ପହଞ୍ଚିଲା । ସିଂହଦ୍ୱାର ଦେଇ ମନ୍ଦିର ଭିତରକୁ ପଶିଗଲା ପରେ ପଥରମୟ ଦୀର୍ଘକାୟ ମନ୍ଦିର ପ୍ରାଙ୍ଗଣ ଓ ତା ଭିତରେ ଲିଙ୍ଗରାଜଙ୍କ ଦର୍ଶନ କରି ବାହାରକୁଆସି ଦୁଇବନ୍ଧୁ ପଥରପାହାଚ ଉପରେ ବସିଗଲେ ।

ଜହ୍ନରାତି, ନିକାଞ୍ଚନ ବାତାବରଣ, ମନ୍ଦିରର ଘଣ୍ଟା ଓ ମନ୍ତ୍ର ଉଚ୍ଚାରଣ ପୃଷ୍ଠଭୂମିରେ ଲୋଭ-ମୋହର ଦୁନିଆରୁ ମନ ଏକ ଉଚ୍ଚସ୍ତରକୁ ଚାଲିଗଲା । ଏକ ଅହେତୁକ ଆନନ୍ଦରେ ଉଲ୍ଲସିତ ହୋଇଗଲା ମନ । ହଠାତ୍ ଭବେଶ୍ ମୁହଁରୁ ବାହାରି ପଡ଼ିଲା - ଠିକ୍ ଅଛି, ଯାହାହେବ ଦେଖାଯିବ । ସତ୍ୟାଗ୍ରହରେ ଯିବି । ଆର ବନ୍ଧୁ ଭବେଶ୍‌କୁ ଖୁସିରେ କୁଣ୍ଢାଇ ପକାଇଲେ । ପାହାଚରୁ ଓହ୍ଲାଇ ଆସି ମୁଖଶାଳା ପାଖରେ ମନ୍ଦିରର ଅନ୍ନ-ପ୍ରସାଦ ସେବନ କରି ଦୁହେଁ ବାସସ୍ଥଳୀକୁ ଲେଉଟି ଆସିଲେ ।

ଜାନୁଆରୀ ୭ ତାରିଖର ଶୀତ ସକାଳ । ବାହାରର ଶୀତ ସାଙ୍ଗକୁ ଭିତରର ଆଶଙ୍କାଜଡ଼ିତ ଶିହରଣ ମିଶ୍ରିତ ଏକ ବିଚିତ୍ର ଅନୁଭୂତି ନେଉଥିଲା । ସକାଳ ୯ଟା ବେଳେ କଚେରୀ ସାମ୍ନା ଭିଡ଼ରେ ଚାରିଦିଗରୁ ଓହ୍ଲାଇ ଆସିଲେ ୧୧ ଜଣ ସତ୍ୟାଗ୍ରହୀ । ଭାରତ ମାତା କି ଜୟ, ଲୋକ ନାୟକ ଜୟପ୍ରକାଶ ଜିନ୍ଦାବାଦ୍, ଇନ୍ଦିରାଗାନ୍ଧି ମୁର୍ଦ୍ଦାବାଦ,

ଜରୁରୀ ପରିସ୍ଥିତି ହଟାଇ ନିଅ - ଆଦି ସ୍ଲୋଗାନରେ କୋର୍ଟ ପରିସର କମ୍ପି ଉଠିଲା । ଲୋକ ଭିଡ଼ ବଢି ଚାଲିଲା । ପୋଲିସ୍ ଆସି ପହଞ୍ଚିଲେ । ସମସ୍ତଙ୍କୁ ବନ୍ଦୀକରି ଥାନାକୁ ନେଇଗଲେ ।

ପରଦିନ କୋର୍ଟରେ ହାଜର କରି ଜେଲ୍ ପଠାଇଦେଲେ । ୪୭ ଦିନର ଜେଲ୍ ଜୀବନ ପରେ ପ୍ରାୟ ୧ ବର୍ଷ କେସ୍ ଚାଲିଲା । ୧୯ ମାସର ଅବସାନ ପରେ ଜରୁରୀ ପରିସ୍ଥିତି ହଟିଗଲା । ନୂଆ ସରକାର ଗଠନ ହେଲା । ସମସ୍ତ ସତ୍ୟାଗ୍ରହୀଙ୍କର କେସ୍ ନୂଆ ସରକାର ଉଠାଇନେଲେ । ଦୀର୍ଘ ଦିନର ଚିନ୍ତା ଓ ଅବସାଦ ଦୂର ହେଲା । ଚାକିରି ଆରମ୍ଭରେ ଭବେଶର ପଦକ୍ଷେପ ବନ୍ଧୁ ମହଲରେ ଦୁଃସାହସର ନମୂନା ହୋଇଗଲା । ପୁଣି ଚାକିରି ଜୀବନ ଆରମ୍ଭ ହେଲା । ପ୍ରଥମ ଚାକିରିରୁ ଅବ୍ୟାହତି ନେଇ ତାଠାରୁ ଉଚ୍ଚପଦରେ ଅଭିଷିକ୍ତ ହେଲା ଭବେଶ । ସେଦିନର ସ୍ମୃତି କିନ୍ତୁ ଭବେଶର ମନ ଭିତରେ ଏକ ଗଭୀର ରେଖାପାତ କରି ରହିଯାଇଛି ।

ଅଗ୍ନିପରୀକ୍ଷା ଆସିଛି, ତାର ସମ୍ମୁଖୀନ ହୋଇ ଈଶ୍ୱରଙ୍କ ଆଶୀର୍ବାଦରୁ, ନିଜ ମନୋବଳରୁ ପରିସ୍ଥିତି ଅନୁକୂଳ ହୋଇଯାଇଛି ଏବଂ ଭବେଶ ଏଯାଏ ସମସ୍ତ ଅଗ୍ନି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଆଗେଇ ଚାଲିଛି ।

*କନ୍ତିଓକାଟେଣୀ, ଢେଙ୍କାନାଳ*
*ଅକ୍ଟୋବର, ୧୯୯୪*



# ତିନି ପାହାଚ

ଗାଁଟିଏ । ଓଡ଼ିଶାର ଅଗଣିତ ଗାଁ ଭିତରୁ ଗୋଟିଏ । ନଦୀନାଳ, ବିଲବଣ ଓ ତାଳତୋଟାରେ ବିଭୂଷିତ ଏ ଗାଁର ଅନେକ ପରିବର୍ତ୍ତନ ହୋଇଛି । ସମୟ ସହ ତାଳଦେଇ ଏ ଗାଁର ଲୋକମାନେ ନିଜର ଚାଲିଚଳନ, ହାବଭାବ ବଦଳାଇଛନ୍ତି । ମୋଟ ଉପରେ ଗାଁ ସହିତ ଗ୍ରାମବାସୀମାନଙ୍କର ଜୀବନରେ ପ୍ରଗତି ହୋଇଛି । ଏହି ପ୍ରଗତିର ଦୃଶ୍ୟ ଗତ ତିନି ଦଶନ୍ଧି ମଧ୍ୟରେ ସ୍ତରକୁ ସ୍ତର ହୋଇ ତିନୋଟି ପାହାଚ ସଦୃଶ ଦୃଷ୍ଟିଗୋଚର ହୁଏ ।

ପ୍ରଥମ ପାହାଚ :

ଗାଁ ଶେଷମୁଣ୍ଡ ପାଣସାହି ସେପଟକୁ ବିଲମାଳ ଭିତରେ ପଡ଼ିଆଟିଏ । ପଡ଼ିଆ ଉପରେ ଧାଡ଼ିଏ ଉଚ୍ଚାଘର । ଘର ଚାରିପଟେ ବଢିଆଳ, କନିଅର ଓ ବେଗୁନିଆ ଗଛର ବାଡ଼ । ବଡ଼ ଘରକୁ ଲାଗି ଦୁଇବଖରା ଚାଳ ତିଆରି ଆଡ଼ିଘର । ଏହାର ଗୋଟିଏ କଣକୁ ବାଉଁଶ ମାଢି । ବିଲପାଖକୁ ଲାଗି କୂଅଟିଏ । ଏ ହେଲା ଗାଁର ପ୍ରାଥମିକ ବିଦ୍ୟାଳୟ । ପ୍ରଥମ ଶ୍ରେଣୀରୁ ପଞ୍ଚମ ଯାଏଁ ପଢିବା ପାଇଁ ସାରା ଗାଁର ପିଲାମାନେ ଏକତ୍ରି ହୁଅନ୍ତି । ଧାନକ୍ଷେତରୁ ଫେରିବା ବେଳେ କେବେ କେମିତି ବିଲ ଫେରନ୍ତା ଚଷାପୁଅ ସ୍କୁଲ ବାରଣ୍ଡାରେ ଅଟକା ମାରେ । ଛେଳିଆଳ ପିଲା ଝରକା ବାଡ଼କୁ ଧରି ଶ୍ରେଣୀ ଭିତରର ପାଠପଢା ନିରେଖି ଦେଖେ ।

ସ୍କୁଲରେ ଗଣେଶପୂଜା, ସରସ୍ୱତୀ ପୂଜା, ଅଗଷ୍ଟ ପନ୍ଦର, ଜାନୁଆରୀ ଛବିଶ ଇତ୍ୟାଦିରେ ଆମ୍ବଡାଳ ତଥା ନାଲି, ନୀଳ, ବାଇଗଣୀ ରଙ୍ଗର ତ୍ରିକୋଣାକାର ପତାକା ଲଗାଇ ସଜାଯାଏ । ଆନନ୍ଦମୁଖର ହୁଏ ଦିନଗୁଡ଼ାକ । ଅଧିକାଂଶ ଛାତ୍ରଙ୍କର ପଞ୍ଚମ ଶ୍ରେଣୀ ପଢା ଶେଷ ହେଲେ ପାଠରେ ଡୋରିବନ୍ଧା ହୁଏ । ଅଳ୍ପ କେତେଜଣ ଗାଁ ବାହାରେ ହାଇସ୍କୁଲରେ ପଢନ୍ତି । ଛୁଟି ଦିନରେ ଏମାନେ ଗାଁକୁ ଆସିଲେ ସ୍କୁଲ ଘରେ ଓ ସ୍କୁଲ କୂଅ

ଚାନ୍ଦିନିରେ ଆଡ୍ଡା ଜମେ । କ୍ଲବ୍ ଗଢିବା, ପୂଜା କରିବା ଓ ଡ୍ରାମା କରିବା ଆଦି ଆଲୋଚନା ହୁଏ । ଛୁଟି ଭିତରେ କିଛି ଆୟୋଜନ ହୁଏ । ପାଠ ପଢୁଆ ଯୁବକମାନେ ଲୁଙ୍ଗି, ଗଞ୍ଜି ଓ ଗାମୁଛା ପରିହିତ ହୋଇ ଅନ୍ୟ ଗ୍ରାମବାସୀଙ୍କଠାରୁ ବାରି ହୋଇଯାଆନ୍ତି । ପ୍ରଥମ ପାହାଚ ଗାଁର ଶିକ୍ଷା ପ୍ରାଥମିକ ସ୍କୁଲ ପର୍ଯ୍ୟନ୍ତ ହୋଇ ସୀମିତ ରହେ ।

### ଦ୍ୱିତୀୟ ପାହାଚ

ଆଖପାଖ ଗାଁମାନଙ୍କରେ ମାଇନର ସ୍କୁଲ ଖୋଲିବା ଆରମ୍ଭ ହେଲା । ଏଇ ଗାଁର ମାଟ୍ରିକ ପାଶ୍ କରି କେତେଜଣ ଯୁବକ ଶିକ୍ଷିତ ହେବାର ଯୋଗ୍ୟତା ହାସଲ୍ କଲେ । ମୁଖିଆ ଲୋକମାନଙ୍କ କାନରେ କଥା ପଡିଲା । ଏତେ ବଡ଼ ଗାଁ ପାଇଁ ସାମାନ୍ୟ ମାଇନର ସ୍କୁଲ ଖୋଲିବା କିଛି ବଡ଼ କଥା ନଥିଲା । ଗାଁରେ ସଭା ବସିଲା । ଏକମତରେ ପ୍ରସ୍ତାବ ଗ୍ରହଣ ହେଲା ଯେ, ଆସନ୍ତା ବର୍ଷ ଆରମ୍ଭରୁ ମାଇନର ସ୍କୁଲ ଖୋଲାଯିବ ।

ଗାଁର ଦୁଇଜଣ ଯୁବକ ସ୍ୱେଚ୍ଛାରେ ଶିକ୍ଷକ ଭାବେ ବାହାରି ପଡ଼ିଲେ । ପ୍ରାଥମିକ ସ୍କୁଲର ଚାଳଘର ବଖରାରେ ଆରମ୍ଭ ହେଲା ମାଇନର ସ୍କୁଲ । କିଛିଦିନ ପରେ ଏହି ସ୍କୁଲ ପାଖକୁ ଲାଗିଥିବା ଚାଷ ଜମିରେ ନୂଆ ସ୍କୁଲଘର ତିଆରି ହେଲା । ଏ ସ୍କୁଲର ଅଲଗା ହତାବାଡ଼ ରହିଲା, ଅଲଗା ଭାବେ କୁଅଟିଏ ସ୍କୁଲପାଇଁ ଖୋଳାଗଲା । ଏବେ ଗାଁର ଯୁବଗୋଷ୍ଠୀ ଉ.ପ୍ରା. ସ୍କୁଲ ଛାଡ଼ି ମଧ୍ୟ ଇଂରାଜୀ ସ୍କୁଲରେ ଭିଡ଼ କଲେ । ସ୍କୁଲ ଲାଇବ୍ରେରୀରୁ ବହିନେଇ ପଢିବା, ସ୍କୁଲ କ୍ୟାରମ୍‌ବୋର୍ଡରେ ଖେଳିବା, ନୂଆ କୂଅ ଚାନ୍ଦିନିରେ ବସି ଆଳାପ-ଆଲୋଚନା କରିବା ଦେଖାଗଲା ।

ମାଇନର ସ୍କୁଲକୁ ଲାଗି ଗାଁର ପୋଷ୍ଟ ଅଫିସ୍ ଦେଖାଗଲା । ମାଇନର ସ୍କୁଲର ପ୍ରଧାନ ଶିକ୍ଷକ ଗାଁ ଲୋକ ହୋଇଥିବାରୁ ଓ ଗାଁରେ ସ୍ଥାୟୀ ହୋଇ ରହୁଥିବାରୁ, ସେ ଗାଁ ରାଜନୀତିରେ କର୍ଣ୍ଣଧାର ହୋଇ ବାହାରିଲେ । ଏହା ସହିତ ଅଲୋଡ଼ା ହୋଇଗଲା ପ୍ରାଥମିକ ବିଦ୍ୟାଳୟର ଘର ଓ ଏହାର କୂଅ ଚାନ୍ଦିନି ।

### ତୃତୀୟ ପାହାଚ

ତୃତୀୟ ପାହାଚରେ ଦୃଶ୍ୟ ଦେଖାଗଲା, ଯେଉଁଦିନ ପୁଣି ଏକ ଗାଁ ସଭା ଆରମ୍ଭ ହେଲା । ଏଥର ସଭାର ଲକ୍ଷ୍ୟ ଥିଲା ଗାଁରେ ହାଇସ୍କୁଲ ଗଢିବା । ପ୍ରେରଣାଦାତା ଥିଲେ ଗାଁର କେତେଜଣ ବେକାର ଗ୍ରାଜୁଏଟ୍ । ଗାଁର ମାଇନର ସ୍କୁଲକୁ ଲାଗି ଆଉ କିଛି ଚାଷଜମି ହାତକୁ ନିଆଗଲା । ନୂତନ କମିଟି ଗଠନ ହେଲା । ପାଣ୍ଠି ସଂଗ୍ରହ ହେଲା । ଯଥାରୀତି ହାଇସ୍କୁଲର ଆରମ୍ଭ ଗାଁ ମାଇନର ସ୍କୁଲରେ ହିଁ ହେଲା । ବର୍ଷକ ଭିତରେ ହାଇସ୍କୁଲର ମାଟିଘର ମଧ୍ୟ ଛିଡ଼ା ହୋଇଗଲା । ସାଇନ୍‌ସ ଟିଚର ଓ ସଂସ୍କୃତ ଟିଚର ଗାଁରୁ ନ ମିଳିବାରୁ ବାହାରୁ ଆସିଲେ । ଯୁଦ୍ଧକାଳୀନ ଭିତ୍ତିରେ ସ୍କୁଲ ଚାରିପଟେ ପାଚେରୀ ଗେଟ୍ ଇତ୍ୟାଦି ଅନେକ କିଛି ହେଲା । ପିଲାମାନେ ୟୁନିଫର୍ମ ପିନ୍ଧି ସ୍କୁଲ ଆସିଲେ ।

ହାଇସ୍କୁଲର ଅଲଗା କୂଅ ଖୋଳାନଯାଇ ଚାପାକଳ ବସାଗଲା । ସ୍କୁଲର ବାର୍ଷିକ କ୍ରୀଡ଼ା ଓ ପୁରସ୍କାର ବିତରଣ ଉତ୍ସବ ହେଲା । ସଂଯୋଗ କ୍ରମେ ହାଇସ୍କୁଲର ଘର ଗାଁର ମୁଖ୍ୟ ଦାଣ୍ଡକୁ ଲାଗିକରି ଥିବାରୁ ସ୍କୁଲ ପାଖରେ ଜନଗହଳି ପ୍ରତୀୟମାନ ହେଲା । ଗାଁର ଶିକ୍ଷିତ ପିଲାମାନେ ଛୁଟିଦିନରେ ହାଇସ୍କୁଲ ଘରେ ଭିଡ଼ ଜମାଇଲେ । ହାଇସ୍କୁଲ ପାଖରେ ଛୋଟକାଟର ବଜାର ଗଢିଉଠିଲା । ଗାଁର ପଞ୍ଚାୟତ ଅଫିସ୍ ଘର ଏହି ସ୍ଥାନରେ ତିଆରି ହେଲା । ମଝି ଗାଁରୁ ଲୋକମାନେ ସ୍କୁଲ ପାଖକୁ ଉଠି ଆସି ନୂଆ ଘର ତିଆରି କଲେ । ସ୍କୁଲ ଛକ ଗାଁର ମୁଖ୍ୟ କେନ୍ଦ୍ର ହୋଇଗଲା ।

ହାଇସ୍କୁଲ ଗଠନ ପରେ ମାଇନର ସ୍କୁଲର ସବୁ ମହତ୍ତ୍ୱ ଚାଲିଗଲା । ପ୍ରାଥମିକ ବିଦ୍ୟାଳୟର ଅବସ୍ଥା ଆହୁରି ଶୋଚନୀୟ । ପୂର୍ବବର୍ଣ୍ଣିତ ଦୁଇକୂଅ ମଧ୍ୟ ବିଶେଷତ୍ୱ ହରାଇ ବସିଲେ । ଗାଁରେ ଏବେ ନ୍ୟୂନତମ ଶିକ୍ଷାର ସ୍ତର ମାଟ୍ରିକ୍ ପାଠକୁ ଧରାଗଲା । ଗାଁରେ ଧୋବଧାଉଳିଆଙ୍କ ସଂଖ୍ୟା ବଢିଲା । ବିଜୁଳିବତୀ ଆସିଗଲା । ପ୍ରଥମେ ରେଡିଓ, ଟେପ୍‌ରେକର୍ଡର ଓ ପରେ ଟି.ଭି.ର ବ୍ୟବହାର ଆରମ୍ଭ ହୋଇଗଲା । ମନୋରଞ୍ଜନ ପାଇଁ ଭି.ସି.ପି.ର ପ୍ରୋଗ୍ରାମ୍ କରାଗଲା ।

ଏ ପ୍ରକାର ୩ଟି ସ୍ତର ହୋଇ ଗାଁର ଶିକ୍ଷା ନିଜର କାୟା ବିସ୍ତାର କରି ଚାଲିଲା । ଏବେ ଚତୁର୍ଥ ପାହାଚର ଆଭାସ ମିଳିଲାଣି । +୨ କଲେଜ ଖୋଲିବାର ଆୟୋଜନ ଚାଲିଛି । ମୋଟ ଉପରେ ଗାଁର ପ୍ରଗତି ହୋଇଛି । ଗ୍ରାମବାସୀମାନଙ୍କ ସାମାଜିକ ଜୀବନରେ ମଧ୍ୟ ଘଟିଛି । ନୂତନତାର ଆସ୍ୱାଦରେ ପୁରାତନ ପରିତ୍ୟକ୍ତ ହେଉଛି । ଶିକ୍ଷା ଓ ସାମାଜିକ ଜୀବନର ଉନ୍ନତିରେ ମାନବୀୟ ମୂଲ୍ୟବୋଧ କିପରି ବଦଳୁଛି ତାର ମୂକସାକ୍ଷୀ ରୂପେ ପୁରୁଣା ପୂଅ ଦୁଇଟି ବିଦ୍ୟମାନ ରହିଛି ।



# ଭଦ୍ରଲୋଭ

ସକାଳର ଶିତୁଳିଆ ପବନ ଭିତରେ କଲିକତାର ରାଜରାସ୍ତା ପାର ହୋଇ ରେଳବାଇ ସିଟି ବୁକିଂ ଅଫିସ୍ ପାଖରେ ପହଞ୍ଚିବା ପରେ ସେ ଉପଯୁକ୍ତ ବ୍ୟକ୍ତିଙ୍କୁ ଖୋଜିବାରେ ଲାଗିଲା । ସେତେ ଭିଡ଼ ନଥିଲେ ସୁଦ୍ଧା ପଚରା ପଚରି କରି ବୁଝିନେଲା ଯେ, ହଜିଲା ଟିକେଟ୍‌ର ଡୁପ୍ଲିକେଟ୍ ପାଇଁ ସୁପରଭାଇଜର୍ ଲାହିଡି ବାବୁ ବୁଝିଦେବେ ।

ଲାହିଡି ବାବୁଙ୍କୁ ଭେଟ ହେବା ପରେ ଦରଖାସ୍ତ ଲେଖି ଆଣିବାକୁ କହିଲେ । ଦୁଇଖଣ୍ଡ ସାଦା କାଗଜ ପାଇଁ ପୁଣି ପାଖ ଷ୍ଟେସନାରୀ ଦୋକାନରୁ ସକାଳର ବଇନି କରି କାଗଜ ଦୁଇଫର୍ଦ୍ଦ କିଣି ଆଣିଲା । ଲାହିଡିବାବୁ ସକାଳ ଜଳଖିଆ ସିଙ୍ଗଡ଼ା ଓ ଚା ଶେଷ କରି ଉପର ମହଲା କମ୍ପ୍ୟୁଟର ରିପୋର୍ଟ ବାହାର କରି ଟିକେଟ୍‌ର ସଠିକତା ଧାର୍ଯ୍ୟ କଲେ । ଦରଖାସ୍ତ ଉପରେ ମତାମତ ଲେଖି ବୁଝାଇଦେଲେ ପରବର୍ତ୍ତୀ ଉପାୟ ।

ସିଟି କାଉଣ୍ଟରରୁ ଯାଇ ରେଳବାଇର ମୁଖ୍ୟ ଦପ୍ତରରେ ପହଞ୍ଚି ନିର୍ଦ୍ଦିଷ୍ଟ ଅଧିକାରୀଙ୍କୁ ଭେଟ କରିବାକୁ ଆଉ କିଛି ସମୟ ଲାଗିଲା । ଭାଗ୍ୟ ଜୋର ବଳରେ କାମଟି ହୋଇଗଲା । ପଚିଶ୍ ପର୍ସେଣ୍ଟ ଫାଇନ୍ ଦେଇ ଡୁପ୍ଲିକେଟ୍ ଟିକେଟ୍‌ଟିଏ ମିଳିଲା । ଫେରନ୍ତା ଯାତ୍ରାର ଟିକେଟ୍ ଚିନ୍ତା ଦୂର ହେବା ପରେ ସମୟ ନଷ୍ଟ ନକରି ଟ୍ରେନିଂର ଶେଷ ଦିନର କାର୍ଯ୍ୟକ୍ରମରେ ଆସି ସେ ସାମିଲ୍ ହୋଇଗଲା । ଅନ୍ୟ ସାଥୀମାନେ ପଚାରିଲେ - କୁଆଡ଼େ ଯାଇଥିଲ ? ତୁମର କିଛି ଜିନିଷ ମିଳିଛି । ରିସେପ୍‌ସନ୍‌ରୁ ନେଇଯାଅ ।

ରିସେପ୍‌ସନ୍‌ରୁ ଲଫାପାଟିଏ ମିଳିଲା ଓ ତା ଭିତରେ ଅନ୍ୟ କେତୋଟି କାଗଜ ସହିତ ହଜିଥିବା ଟ୍ରେନ୍ ଟିକେଟ୍‌ଟି ରଖାଯାଇଥିଲା । ଲଫାପା ଉପରେ ସୁନ୍ଦର ଅକ୍ଷରରେ ସ୍ପଷ୍ଟ ଭାବରେ ଲେଖାଥିଲା - ଶ୍ରୀ ଅମୁକ, ଠିକଣା ସମୁକ, ପାଇବେ । ଗତ ଚାରିଘଣ୍ଟାର ଶ୍ରମ, ଚିନ୍ତା ଓ ମାନସିକ ଯନ୍ତ୍ରଣାର ସମାପ୍ତି ଘଟିଲା । ମାତ୍ର ମନରେ କେତେଗୁଡ଼ିଏ

ଅଛିଣ୍ଡା ପ୍ରଶ୍ନ ଜାଗି ଉଠିଲା । କିଏ ଏ ଲଫାପା ସହ ଟିକେଟ୍ ଫେରାଇଲା ? ଯେଉଁ ଆଟାଚିରେ ଏ ସବୁ ରଖାଯାଇଥିଲା ତାହା କାହିଁକି ନ ଫେରାଇଲା ? ଏତେବଡ଼ ହୋଟେଲ୍‌ର ମିଟିଙ୍ଗ୍ ଭିତରୁ ଏ ଆଟାଚିଟି କିପରି ସେ ଲୋକ ହାତକୁ ଗଲା ? ସେ ଲୋକଟି କଣ ସହଭାଗୀମାନଙ୍କ ମଧ୍ୟରୁ ଜଣେ ? ସହଭାଗୀମାନେ ଏତେ ସମ୍ପନ୍ନ ଓ ଉଚ୍ଚଶିକ୍ଷିତ ହୋଇ ଏତେ ସାମାନ୍ୟ ଆଟାଚି ପ୍ରତି କିପରି ଲୋଭାନ୍ୱିତ ହେଲେ ? ଆଟାଚି ନେଇଥିବା ଲୋକଟି କଣ ସେଇ ଅତି ଜଣାଶୁଣା ସହଭାଗୀ ବନ୍ଧୁ ଯେ କି ଗତ ଦୁଇଦିନ ହେଲା ପାଖେ ପାଖେ ରହୁଥିଲେ ?

କଲିକତା ମହାନଗରୀ ମଧ୍ୟରେ ପାଞ୍ଚତାରକା ବିଶିଷ୍ଟ ଗ୍ରାଣ୍ଡ ହୋଟେଲ୍‌ରେ ଅଖିଳ ଭାରତ ଅଧିକାରୀ ସମ୍ମିଳନୀ ମଧ୍ୟରେ ଶତାଧିକ ସହଭାଗୀଙ୍କ ଗହଣରେ ସମ୍ମିଳନୀର ସମସ୍ତ ପରବର୍ତ୍ତୀ ଆଲୋଚନା ଓ କାର୍ଯ୍ୟକ୍ରମ ନିରସ ମନେ ହେଉଥିଲା । ଭଦ୍ରବେଶରେ ସଜ୍ଜିତ ପ୍ରତ୍ୟେକ ବ୍ୟକ୍ତିର ଖିଲି ଖିଲି ହସ ତାସଲ୍ୟଭରା ମନେ ହେଉଥିଲା । କଥାଗୁଡ଼ିକ ଛଳନାର ବାକ୍ୟ ଜାଲ ଭଳି ଲାଗୁଥିଲା । ପ୍ରୋଗ୍ରାମ୍‌ର ରୂପରେଖ ନକଲି ଓ କୃତ୍ରିମ ମନେ ହେଉଥିଲା ।

ଘଟଣାର ଆରମ୍ଭ ହୋଇଥିଲା ପୂର୍ବଦିନ ଅପରାହ୍ଣ ଅଧିବେଶନ ଶେଷରେ ଚା ବିରତି ସମୟରେ । ଅଧିବେଶନରେ ମିଳିଥିବା ଆକର୍ଷଣୀୟ ଆଟାଚିଟି ମିଟିଙ୍ଗ୍ ହଲ୍‌ର ବସିବା ଜାଗାରେ ଛାଡ଼ିଦେଇ ହଲ୍ ବାହାରେ ଦଶ ମିନିଟ୍ ଚା ପାନରେ ଭାଗନେଇ ସାରି ହଲ୍‌କୁ ଫେରିଆସି ଦେଖିଲା ବେଳକୁ ଆଟାଚିଟି ଯଥା ସ୍ଥାନରେ ନାହିଁ । ସଙ୍ଗେ ସଙ୍ଗେ ପରବର୍ତ୍ତୀ ସଭା ଆରମ୍ଭ ହୋଇଯିବାରୁ ଖୋଜାଖୋଜି ସଭା ଶେଷରେ କରାଗଲା । ପରିଶେଷରେ ଆଟାଚିଟି ମିଳିଲା ନାହିଁ । ଅନ୍ୟ ସହଭାଗୀମାନେ ମଧ୍ୟ ବହୁତ ଖୋଜି ନପାଇବାରୁ ସମବେଦନାର ସାନ୍ତ୍ୱନାବାଣୀ ଶୁଣାଇଲେ । ସେଦିନ ସନ୍ଧ୍ୟାରୁ ତା ପରଦିନ ଡୁପ୍ଲିକେଟ୍ ଟିକେଟ୍ ପାଇବା ପର୍ଯ୍ୟନ୍ତ ପ୍ରଥମ ପର୍ଯ୍ୟାୟରେ ଓ ହଜିଥିବା ଟିକେଟ୍ ସହ ଲଫାପାଟି ପାଇବା ପରଠାରୁ ସମ୍ମିଳନୀ ଶେଷ ହେବା ଯାଏଁ ଦ୍ୱିତୀୟ ପର୍ଯ୍ୟାୟରେ ଦୁଇ ପ୍ରକାର ଗ୍ଳାନିର ଅନୁଭବ ହେଲା । ଏହି ଗ୍ଳାନିର ମୂଳରେ ଯେଉଁ କାରଣ ଥିଲା ତାକୁ ସରଳ ଭାଷାରେ ଭଦ୍ରଲୋଭ କୁହାଯାଇପାରେ ।

*କଲିକତା,*
*ଜାନୁଆରୀ ୧୯୯୬*



# ଆକାଶ ଓ ଚନ୍ଦ୍ର ସହ ଆଳାପ

ଦୁଇଜଣ ପରିଚିତ ଯାତ୍ରୀଙ୍କ ସହିତ ହୋଟେଲ୍‌କୁ ଆସିବା ଅବସରରେ କଥା ପଡିଲା - କଣ ସାର୍, କାଲି ନେତାଜୀ ଜୟନ୍ତୀରେ ଛୁଟି ହେଉଛି ତ ? ହଠାତ୍ ଉତ୍ତର ମିଳିଲା, ଛୁଟି, ଛୁଟି, ଛୁଟି । ବର୍ଷସାରା ତ ଛୁଟି । ଭଲ ଧନ୍ଦା ଚାଲିଛି । ଜୟନ୍ତୀ ହେଉ, ଶତବାର୍ଷିକୀ ହେଉ, ମୃତ୍ୟୁ ହେଉ, ଆଗ ଦରକାର ଛୁଟି । ମହାପୁରୁଷ କୁଆଡ଼େ, ତାଙ୍କୁ ସ୍ମରଣ କରିବା କୁଆଡ଼େ, ଆଗ ସ୍କୁଲ କଲେଜ, ଅଫିସ୍ ଛୁଟି କରିଦିଅ । କାମଦାମ ଛାଡ଼ି ବୁଲୁଥାଅ ।

**ବହୁତ ଛୁଟି**

ସେଇଠୁ କଥା ପଡିଲା । ଛୁଟି ନକରି ଆମେ ସମସ୍ତେ ଯଦି ସେ ମହାପୁରୁଷଙ୍କର ଫଟୋନେଇ ସ୍କୁଲ ବା ଅଫିସ୍ ଗେଟ୍‌ରେ ସଜାଇ ଫୁଲମାଳ ଲଗାଇ ଧୂପଦେଇ, ଗଲା ଆସିଲାବେଳେ ମୁଣ୍ଡିଆ ମାରନ୍ତେ, ଫୁଲ ଚଢାନ୍ତେ, ଆଉ ସ୍ମରଣ କରନ୍ତେ, ଆଜି ଅମୂକ ମହାପୁରୁଷଙ୍କର ଜନ୍ମତିଥି ବା ପୁଣ୍ୟତିଥି, ତେବେ କେତେ ଭଲ ହୁଅନ୍ତା !

ଏମିତି ସ୍କୁଲ କଲେଜମାନଙ୍କରେ ଖରାଦିନ ଛୁଟି, ପୂଜା ଛୁଟି, ଏକ୍ସମାସ ଛୁଟି, ପରୀକ୍ଷା ପ୍ରସ୍ତୁତି ଛୁଟି, ପରୀକ୍ଷା ପର ଛୁଟି । ବର୍ଷ ସାରା ଛୋଟବଡ଼ ଉତ୍ସବ ଓ ପର୍ବର ଛୁଟି ଲାଗି ରହିଛି । ହିସାବ କରି ଦେଖିଲେ ବର୍ଷକ ୩୬୫ ଦିନ ଭିତରୁ ମାତ୍ର ୧୬୫ ଦିନ କାର୍ଯ୍ୟ ଦିବସ ମିଳୁଛି । ତା ଭିତରୁ ପୁଣି ଦିନକର କାର୍ଯ୍ୟକାଳ ମଧ୍ୟରୁ ୧୦ଟାରୁ ୪ଟା ଭିତରେ ଖେଳ ଛୁଟି, ଶିକ୍ଷକ ଅନୁପସ୍ଥିତି ଛୁଟି, ଶେଷ ପିରିଅଡ଼ ଛୁଟି ଆଦି ବାଦ୍ ଦେଲେ ମାତ୍ର ୪ ଘଣ୍ଟାର ପାଠପଢା ହୋଇଥାଏ । ଅଫିସ୍‌ମାନଙ୍କର କାର୍ଯ୍ୟନିର୍ଘଣ୍ଟ ମଧ୍ୟ ତଦନୁରୂପ ।

ଷ୍ଟାଫ୍ ପହଞ୍ଚିବାରେ ବିଳମ୍ବ, ଲଞ୍ଚ ସମୟ ଛୁଟି, ବସ୍ ଧରିବା ପାଇଁ ଆଗରୁ ଛୁଟି, ଘରେ କୁଣିଆ, ବ୍ୟାଙ୍କ, ପୋଷ୍ଟଅଫିସ୍ ଆଦି କାମରେ ଅଫିସ୍‌ରୁ ଛୁଟି । ଏପରି ପ୍ରକାର ପ୍ରକାର ଛୁଟି ଲାଗି ରହିଛି । ଫାଇଲ୍ କାମ ବର୍ଷ ବର୍ଷ ଧରି ବାକିଆ ପଡିରହୁଛି । ସି.ଏଲ୍., ଇ.ଏଲ୍, ସିକ୍ ଲିଭ୍, ସ୍ପେଶାଲ୍ ଲିଭ୍ କଥା ତ ଅଛି । ଏହି ପ୍ରକାର କାରଣରୁ କଳ କାରଖାନା ଗୁଡ଼ିକର ଡିଉଟି ଟାଇମ୍ ମଧ୍ୟ ବିଭିନ୍ନ କାରଣରୁ ସଙ୍କୁଚିତ ହୋଇଆସୁଛି ।

ଶୀତ ଦିନର ଶିତୁଳିଆ ପବନ ଭିତରେ ଦେଶର ପ୍ରମୁଖ ସମସ୍ୟାବଳୀ ଆଲୋଚନା ପରିସର ଭିତରକୁ ଆସିଯାଉଥିଲା । ସେଥିରୁ ଗୋଟିଏ ହେଲା ଶିକ୍ଷା ଓ ପରୀକ୍ଷା ବ୍ୟବସ୍ଥା ।

## ଶିକ୍ଷା ଓ ପରୀକ୍ଷା

ବଡ଼ କୋଠା, ବଡ଼ ଗେଟ୍, ବଡ଼ ହଲ୍, ବଡ଼ ପଡିଆ ଏସବୁକୁ ନେଇ ଆଜିର ଶିକ୍ଷାନୁଷ୍ଠାନମାନଙ୍କରେ ଦଳ ଦଳ ଯୁବକ-ଯୁବତୀ ବୁଲୁଥିବାର ଦୃଶ୍ୟ । ସେମାନଙ୍କର ମନ, ଶରୀର ଓ ଯୋଗ୍ୟତା ଅନୁସାରେ ଉପଯୁକ୍ତ ଶିକ୍ଷାଦାନ ଭିନ୍ନ ଭିନ୍ନ ଶିକ୍ଷଣୀୟ କାର୍ଯ୍ୟକ୍ରମ ଇତ୍ୟାଦିର ଯୋଜନା ଆଜିର ଶିକ୍ଷା ଯୋଜନା ପରିସର ବାହାରେ । ମୂଲ୍ୟବାନ ସମୟ ହସ ଖୁସି, ମଜା, ସଉକ, ଖେଳ, ନାଚ ଆଦିରେ ବିତିଯାଉଛି । ପରିଶେଷରେ ଖଣ୍ଡିଏ ଲେଖାଏଁ ଡିଗ୍ରୀ ଧରି ଏହି ଯୁବକ ଯୁବତୀଗଣ ସମାଜକୁ ପ୍ରବେଶ କରିବା ବେଳେ ନିଜର କଳ୍ପନାବିଳାସ ଆଗରେ ବିରାଟ ପ୍ରତିବନ୍ଧକ ସ୍ୱରୂପ ଦେଖିପାରନ୍ତି ଚାକିରି ଶୂନ୍ୟତା ଓ ନିଷ୍ଠୁର ସମାଜ । ଭଲ ପିନ୍ଧିବା, ଆରାମ କରିବା ଓ ସଜାଇହେବା ଆଦିର ଅଭ୍ୟାସ ରଖିଥିବା ଯୁବକ, ଯୁବତୀ ଆଗରେ ଅଭାବ, ପରିହାସ ଓ ନିରାଶାର ପରିବେଶ ପ୍ରାଚୀର ହୋଇ ଠିଆ ହେଇଛି । ପରିଶ୍ରମ କରିବା, ପ୍ରତିକୂଳ ପରିସ୍ଥିତି ସହିତ ଖାପ ଖୁଆଇନେବା, ନିଜ ଗୋଡ଼ରେ ଠିଆ ହେବା ଆଦି ସମୟୋପଯୋଗୀ ଶିକ୍ଷା ଆଜିର ଶିକ୍ଷା ବ୍ୟବସ୍ଥାରେ ମୂଳରୁ ନାହିଁ ।

ଅନ୍ୟ ଦିଗରୁ ପରୀକ୍ଷା ସମୟରେ ସମଗ୍ର ପାଠ୍ୟ ପୁସ୍ତକର ମାତ୍ର ଶତକଡ଼ା ୫୦ ବିଷୟରେ ପ୍ରଶ୍ନପତ୍ର ପ୍ରସ୍ତୁତ ହେଉଛି । ତା ଭିତରୁ ୧୦ଟି ପ୍ରଶ୍ନରୁ ୫ଟି ପ୍ରଶ୍ନର ଉତ୍ତର ଦେବାକୁ ପଡୁଛି । ୫ଟି ଭିତରୁ ମାତ୍ର ୨ଟି ବିଷୟ ଠିକ୍ ଭାବେ ଉତ୍ତର ଲେଖିଦେଲେ ପାଶ୍‌ମାର୍କ ମିଳିଯାଉଛି । ଅର୍ଥାତ୍ ମୋଟ ବିଷୟରୁ ମାତ୍ର ଶତକଡ଼ା ୨୦ ଭାଗ ଅଧ୍ୟୟନ କରିଦେଲେ ସମଗ୍ର ବିଷୟରେ ପାଶ୍ ହେବାର ଯୋଗ୍ୟତା ପ୍ରାପ୍ତ ହେଉଛି ।

କଲେଜ ଅଧ୍ୟୟନ ପରେ ସମାଜ କ୍ଷେତ୍ରରେ ପ୍ରବେଶ କରିବା ସମୟରେ ବୟସ ୨୧/୨୨ ହେବା ସହିତ ପରିବାରର ଦାୟିତ୍ୱ ଆସି ପହଞ୍ଚିଯାଉଛି । ହାତରେ ରୋଜଗାର ନାହିଁ । ଲେଖିବା ଓ ପଢିବା ବ୍ୟତୀତ ଅନ୍ୟ ବିଷୟରେ ପ୍ରଶିକ୍ଷଣ ନାହିଁ । ଘରେ ବୟସ୍କ ମାତା ପିତାଙ୍କ ସହିତ ନିର୍ଭରଶୀଳ ଭାଇଭଉଣୀ ରହିଛନ୍ତି । ଏ ପରିସ୍ଥିତିରେ ନିରାଶ,

ହତାଶ୍ ଓ ଧୈର୍ଯ୍ୟହରା ହୋଇ ଜଣେ ଯୁବକ ଭାଙ୍ଗି ପଡୁଛି । ଶିକ୍ଷା ଓ ପରୀକ୍ଷା ବିଭାଗରେ ଯାବତୀୟ ଅସଙ୍ଗତି ଥିବା ସମୟରେ ଜାତୀୟ ସ୍ତରରୁ ଆରମ୍ଭ କରି ସ୍ଥାନୀୟ ସ୍ତର ପର୍ଯ୍ୟନ୍ତ ସେହି ଗତାନୁଗତିକ ଧାରା ଚାଲି ଆସୁଛି ଏବଂ ସେହି ପ୍ରକାର ଶିକ୍ଷା ଅନୁଷ୍ଠାନ ବଢ଼ି ଚାଲିଛି ।

## ରୋଜଗାର ଓ ମଜୁରି

କଥା ପ୍ରସଙ୍ଗରେ ଅନ୍ୟ ଏକ ମୁଖ୍ୟ ବିଷୟ ଆଲୋଚିତ ହେଲା । ତା ହେଲା ରୋଜଗାର ଓ ମଜୁରି ବ୍ୟବସ୍ଥା । ବେରୋଜଗାରଙ୍କ ସଂଖ୍ୟା ବଢ଼ି ଚାଲୁଛି । ଆତ୍ମନିଯୁକ୍ତି ପାଇଁ ଅନୁରୂପ ପ୍ରୋତ୍ସାହନ ମିଳିପାରୁନି । ଚାକିରିଆଙ୍କ ପାଇଁ ଦରମା ବୃଦ୍ଧି, ଭତ୍ତା ବୃଦ୍ଧି ହେଉଛି । ସର୍ବନିମ୍ନ ମଜୁରିହାର ନିର୍ଦ୍ଧାରଣ ହେଉଛି । ସର୍ବନିମ୍ନ ମଜୁରି ଦିନକୁ ୨୫ ଟଙ୍କା ଥିବାବେଳେ ଜଣେ ମଜୁରିଆ ପାଇଁ ସବୁଦିନର କାମ ନାହିଁ ଓ ତା ପାଇଁ କୌଣସି ସାମାଜିକ ସୁରକ୍ଷା ନାହିଁ । ଏତିକି ଯୋଗ୍ୟତା ଥାଇ ସରକାରୀ ଅଫିସ୍‌ରେ କାର୍ଯ୍ୟରତ ସର୍ବନିମ୍ନ ସ୍ତରର କର୍ମଚାରୀ ନ୍ୟୁନତମ ମଜୁରିର ଦୁଇଗୁଣ ମଜୁରି ପାଇ ପାରୁଛି । ଅନେକ ପ୍ରକାର ସାମାଜିକ ସୁରକ୍ଷାର ସୁବିଧା ପାଉଛି । ଏ ପ୍ରକାର ଅସମତୁଲ ମଜୁରି ବ୍ୟବସ୍ଥା ଫଳରେ ଗ୍ରାମାଞ୍ଚଳରୁ ସହରାଞ୍ଚଳକୁ ଶ୍ରମିକମାନଙ୍କର ଧାରା ଛୁଟୁଛି । ସହରରେ ବସ୍ତିଅଞ୍ଚଳ ଗଢ଼ି ଉଠୁଛି । ଅନ୍ୟ ପକ୍ଷରେ ଗ୍ରାମାଞ୍ଚଳରେ ଶ୍ରମିକ ଅଭାବ ଦେଖାଦେଉଛି । କୃଷି ଓ କୁଟୀର ଶିଳ୍ପର ହାନି ହେଉଛି । ସ୍ୱାବଲମ୍ବୀ ହେବାର ଚେଷ୍ଟା ଛାଡ଼ି ଚାକିରି ପାଇଁ ଦାବି ଓ ପ୍ରତିବାଦ ବୃଦ୍ଧି ହେବାରେ ଲାଗିଛି । ରାଜନୈତିକ ଦଳମାନଙ୍କ ପାଇଁ ହାତବାରିସି ହୋଇ ଏହି ବେରୋଜଗାର ଯୁବଗୋଷ୍ଠୀ ଠିଆ ହେଉଛି ।

ସହର ଜୀବନର କୋଠାବାଡ଼ି, ରାସ୍ତାଘାଟ, ସାଜସଜା, ଆଧୁନିକ ଉପକରଣ, ବେଶଭୂଷା, ଦୋକାନବଜାର ଆଦି ତୁଳନାରେ ଗାଁ ଗହଳର ଧୂଳିମାଟି, ପାଣିକାଦୁଅ, ମଇଳା ଲୁଗା, ଛିଣ୍ଡା ଚପଲର ଦୃଶ୍ୟ ବହୁତ ହିନିମାନିଆ ଦେଖାଯାଉଛି । ଏକ ପକ୍ଷରେ ରୋଜଗାରିଆ ଲୋକ ପାଇଁ ଆଡ଼ମ୍ବର ବୃଦ୍ଧି ପାଉଥିବା ବେଳେ ଅନ୍ୟ ପକ୍ଷରେ ବେରୋଜଗାର ଲୋକର ଅଭାବ ହେଉଛି ସାମାନ୍ୟତମ ନିତ୍ୟ ବ୍ୟବହାର୍ଯ୍ୟ ଦ୍ରବ୍ୟ ।

ଆଲୋଚନା ଶେଷ ହେଉନାହିଁ । ଧୀରେ ପଦଚାଳନା କରି ବସ୍ ପାଖକୁ ଆସିବା ବେଳକୁ ବସ୍‌ର ଛାଡ଼ିବା ସମୟ ହୋଇ ଆସୁଥାଏ । ସମସ୍ତେ ବସ୍‌ରେ ଉଠିବା ପରେ ପାଖାପାଖି ବସି ପୂର୍ବର ଆଲୋଚନା ଚାଲୁ ରହିଲା । ବନ୍ଧୁମାନେ ପ୍ରଶ୍ନ କଲେ ଏ ପରିସ୍ଥିତିରେ ସମାଧାନର ବାଟ କଣ ?

## ସମାଧାନ ସୂତ୍ର

ଗ୍ରୁପ୍ ଭିତରୁ ସମାଧାନ ଆସିଲା । ଦେଶ ଆମର ବହୁତ ବଡ଼ । ଓଡ଼ିଶାରେ ରହି କାଶ୍ମୀର ବା ତାମିଲନାଡୁର ସମସ୍ୟା ଦେଖିବା ସମ୍ଭବ ନୁହେଁ । କେବଳ ଶୁଣିବା ଓ

ସମବେଦନା ପ୍ରକାଶ ଛଡ଼ା ଦୂର ସ୍ଥାନ ପାଇଁ ଜଣେ ନାଗରିକର ବିଶେଷ କିଛି କରିବାର ନାହିଁ । ତେବେ ନିଜର ବାସସ୍ଥାନ, ନିଜର କାର୍ଯ୍ୟକ୍ଷେତ୍ର ହିଁ ଗୋଟିଏ କ୍ଷୁଦ୍ର ଭାରତ । ଏହାର ସୁବ୍ୟବସ୍ଥା, ସୁଶାସନ, ସୁଶିକ୍ଷା ସାଙ୍ଗକୁ ଏହାର ଅଧିବାସୀମାନଙ୍କର ଯାବତୀୟ ପ୍ରକାର ବିକାଶ ଦିଗରେ ଚେଷ୍ଟା କରିପାରିଲେ ଆମମାନଙ୍କର ଲକ୍ଷ୍ୟ ସାଧନ ହେବ । ପ୍ରତ୍ୟେକ ବ୍ୟକ୍ତି ନିଜକୁ ନିଜ ପରିବାରକୁ ସଜାଡ଼ିବା ସହିତ ପରିବେଶର ଉନ୍ନତି ପାଇଁ ସମ ବିଚାରର ଲୋକମାନଙ୍କର ସଂଗଠନ ଗଢି ତୋଳନ୍ତୁ । ସାମୂହିକ ଜୀବନରେ ସରକାରୀ ସାହାଯ୍ୟ ମିଳୁ ବା ନମିଳୁ ନିଜ ଉଦ୍ୟମରେ ପଦକ୍ଷେପମାନ ଗ୍ରହଣ କରାଯାଉ । ଶିକ୍ଷାର ବିକାଶ ହେଉ । ପରିଚ୍ଛନ୍ନତା ମାଧ୍ୟମରେ ସ୍ୱାସ୍ଥ୍ୟର ଉନ୍ନତି ହେଉ । ରାସ୍ତାଘାଟ, ବଜାର ହାଟ ଆଦିର ବିକାଶ ହେଉ । ସାମାଜିକ ଜୀବନରେ କୁରୀତିର ଉତ୍ପାଟନ ହେଉ । ଅପଖର୍ଚ୍ଚ ହେଉ । ନିଶା ନିବାରଣ ହେଉ । ପରିଶ୍ରମର ସମ୍ମାନ ମିଳୁ । ପରସ୍ପର ସହଯୋଗ ବଢି ଚାଲୁ । ସୁଖକୁ ବାଣ୍ଟି ଦୁଃଖକୁ ବାଣ୍ଟି ଜୀବନ ଅତିବାହିତ ହେଉ ।

ବସ୍ ଆଗକୁ ମାଡ଼ି ଚାଲୁଥାଏ । ଆଲୋଚନାରେ ଶେଷ ହେଉ ନଥାଏ । ଦୂରରୁ ଆକାଶ ଓ ଚନ୍ଦ୍ର ଝରକା ଫାଙ୍କରେ ସବୁ ଲକ୍ଷ୍ୟ କରୁଥାଆନ୍ତି ।

*ବଡ଼ଜାଣି, କେଉଁଝର*
*ଜୁନ୍, ୧୯୯୬*



# ଗରିବିର ଗୁଣଗାନ

ଗରିବି ଶବ୍ଦ ହିନ୍ଦୀ ଭାଷାରେ ପ୍ରଚଳିତ ଥିଲେ ସୁଦ୍ଧା ଏହାର ବହୁଳ ବ୍ୟବହାର କାରଣରୁ ଓଡ଼ିଆ ପାଠକବୃନ୍ଦ ଏହି ଶବ୍ଦ ସହିତ ଭଲଭାବେ ପରିଚିତ । ଗରିବି ହଟାଅ ସ୍ଲୋଗାନ୍‌ଟି ସତୁରୀ ଦଶକରେ ଆମ ଦେଶରେ ଯୁଗାନ୍ତକାରୀ ପରିବର୍ତ୍ତନର ସୂତ୍ରଧର ଥିଲା । ସେ ସମୟରେ ଯୁବପ୍ରାଣକୁ ଏ ଶବ୍ଦ ଉଦ୍‌ବେଳିତ କରିଥିଲା । ଦୁଇ ଦଶନ୍ଧି ସମୟ ପାର ହେବା ପରେ ମଧ୍ୟ ଆମ ଦେଶରେ ଗରିବିର ଦୃଶ୍ୟ ପୂର୍ବପରି ଦେଖାଯାଉଛି । ଲକ୍ଷ୍ୟକଲେ ମନେହେଉଛି ସତେ ଅବା ଗରିବି ଆମକୁ ଓ ଆମ ଦେଶକୁ ଚିରକାଳ ପାଇଁ ଧରି ରଖିଥିବ । ଏ ବିଷୟରେ କେତୋଟି ଉଦାହରଣ ପ୍ରସ୍ତୁତ କରାଯାଉଛି ।

**ସାମାଜିକ ଚିନ୍ତନରେ ଗରିବିର ସପକ୍ଷବାଦୀ**

ସାମ୍ୟବାଦ ବିଚାରାଧାରା ପ୍ରବର୍ତ୍ତନ ସମୟରୁ ଆଜି ପର୍ଯ୍ୟନ୍ତ ଶିକ୍ଷିତ ସମାଜ ମଧ୍ୟରେ ବିଶେଷ ଭାବେ ଶିକ୍ଷିତ ଯୁବକମାନଙ୍କ ମଧ୍ୟରେ ଗରିବଙ୍କର ସମର୍ଥକ ଅନେକ । ଗରିବିକୁ ବର୍ଣ୍ଣନା କରି ଅନେକ ସାହିତ୍ୟ ରଚନା ହେଉଛି । ଚିତ୍ର ଅଙ୍କାଯାଇଛି । ଏହି ତୁଳନାରେ ଗରିବି ଦୂରୀକରଣ ସମ୍ପର୍କିତ କାର୍ଯ୍ୟକ୍ରମ ବିରଳ । ତେଣୁ ସର୍ବପ୍ରଥମେ ଆମକୁ ଭାବନା ରାଜ୍ୟରେ ପରିବର୍ତ୍ତନ ଆଣି ଭାବୁକତା ବଦଳରେ ବାସ୍ତବିକତା ପ୍ରତି ଗୁରୁତ୍ୱ ଦେବାକୁ ହେବ ।

**ନେତାମାନଙ୍କର ଭାଷଣରେ ଗରିବି**

ଯେକୌଣସି ନେତାଙ୍କ ଭାଷଣରେ ଦେଶର ଗରିବି ସମସ୍ୟା ଏକ ମୁଖ୍ୟ ଆଲୋଚ୍ୟ ବିଷୟ ଭାବେ ଦେଖାଯାଏ । ଭାଷଣର ଅଣ୍ଡା ଗରମ ଶବ୍ଦ ଜାଲ ଭିତରେ ଲୋକଙ୍କ କରତାଳି ଧ୍ୱନିରେ ଗରିବି ସମସ୍ୟା ଚର୍ଚ୍ଚା ହେଲାବେଳେ ବକ୍ତାଙ୍କ ପ୍ରତି ଶ୍ରୋତାଙ୍କର ଶ୍ରଦ୍ଧା ବୃଦ୍ଧି ହେବା ସଂଗେ ସଂଗେ ଶ୍ରୋତାବୃନ୍ଦ ସୁନେଲି ସ୍ୱପ୍ନରେ ସାମୟିକ

ଭାବେ ବୁଡି ଯାଆନ୍ତି । ମାତ୍ର ସୁଫଳ ମିଳେନା । କେବଳ ଏଇକଥା ସାବ୍ୟସ୍ତ ହୋଇଯାଏ ଯେ, ଆମେମାନେ ଗରିବ ଓ ଆମ ଦେଶ ଗରିବ ।

### ବିଦେଶୀ ଋଣ ଭିକ୍ଷା

ଦେଶ ସ୍ୱାଧୀନ ହେବାର ୫୦ ବର୍ଷ ପାରହେବା ପରେ ମଧ୍ୟ ଆମ ଦେଶର ପ୍ରତ୍ୟେକ ଯୋଜନା, ପ୍ରତି କଳକାରଖାନା ପ୍ରତିଷ୍ଠା ଓ ପ୍ରତି ବିକାଶଜନିତ ପଦକ୍ଷେପ ପାଇଁ ବିଦେଶୀ ଋଣର ଆବଶ୍ୟକତା ହୋଇଛି । କେହି ଆମକୁ ଦୟା ଦେଖାଉଛନ୍ତି ତ କେହି ବନ୍ଧୁତାର ହାତ ବଢ଼ାଇ ଋଣ ଦେଇଛନ୍ତି । ଏହି ଋଣ କ୍ରମେ ବଢ଼ିବାରେ ଲାଗିଛି ଓ ଦେଶର ଗରିବିକୁ ସ୍ଥାୟିତ୍ୱ ଦେବାରେ ବିଦେଶୀ ଋଣର ସାର୍ଟିଫିକେଟ୍ ପ୍ରମାଣ ଭାବେ ରହିଯାଇଛି ।

### ଅନାହାର ମୃତ୍ୟୁକୁ ନେଇ ଚର୍ଚ୍ଚା

ପ୍ରତ୍ୟେକ ବର୍ଷ ବିଧାନସଭା ଆଲୋଚନାରେ ଅନାହାର ମୃତ୍ୟୁକୁ ନେଇ ସରକାରୀ ଦଳ ଓ ବିରୋଧୀ ଦଳ ମଧ୍ୟରେ ଚର୍ଚ୍ଚାର ଝଡ଼ ସୃଷ୍ଟି ହୋଇଥାଏ । ଗୋଟିଏ ପକ୍ଷ ଏହାକୁ ସତ୍ୟ ବୋଲିପ୍ରମାଣ କରିବାକୁ ଲାଗିପଡନ୍ତି ଓ ଅନ୍ୟପକ୍ଷ ଏହାକୁ ମିଛ ବୋଲି ଯୁକ୍ତି ବାଢନ୍ତି । ଦୁଇପକ୍ଷର ଉର୍ଦ୍ଧ୍ୱରେ ଥାଇ ଦର୍ଶକ ଓ ପାଠକ ବୃନ୍ଦ ସନ୍ଦେହରେ ପଡ଼ିଲେ ସୁଦ୍ଧା ଏ ବିଷୟରେ ନିଶ୍ଚିତ ହୁଅନ୍ତି ଯେ, ଲୋକଙ୍କର ଅକାଳ ମୃତ୍ୟୁ ହେଉଛି ଓ ମୃତ୍ୟୁର ଅନେକ କାରଣ ମଧ୍ୟରୁ ଖାଦ୍ୟର ଅଭାବ ଅନ୍ୟତମ । ଏ ପ୍ରକାର ତର୍କବିତର୍କକୁ ଦୂରେଇ ଦେଇ ଦେଶର ପ୍ରତିନିଧିମାନେ ଖାଦ୍ୟ ଅଭାବ, ଖାଦ୍ୟ ବଣ୍ଟନ, ଖାଦ୍ୟ ଉତ୍ପାଦନ ଆଦି ଗୁରୁତ୍ୱପୂର୍ଣ୍ଣ ବିଷୟମାନ ଆଲୋଚନା କରି ନିରାକରଣ ଦିଗରେ ସଚେଷ୍ଟ ହେଲେ ଦେଶବାସୀ ଚିର ଉପକୃତ ହୁଅନ୍ତେ ।

### ଯାତ୍ରୀବସ୍ ଗୁଡ଼ିକର ଦୁସ୍ଥତା

ବସ୍‌ରେ ଯାତ୍ରା କରିବା ଅନୁଭୂତି ଆମ ସମସ୍ତଙ୍କର ଅଳ୍ପେ ବହୁତେ ଅଛି । ବିଶେଷ କରି ସରକାରୀ ବସ୍‌ଗୁଡ଼ିକ ସହିତ ବେସରକାରୀ ବସ୍‌ଗୁଡ଼ିକୁ ତୁଳନା କଲେ ଦେଖାଯାଏ ଯେ, ଯାତ୍ରୀବସ୍ ଗୁଡ଼ିକର ସିଟ୍ ଫାଟିଥିବ । ରଙ୍ଗ ଛାଡ଼ିଥିବ, ଟିଣ ବାହାରି ପଡିଥିବ । ପରଦା ନଥିବ । ସେହିପରି ଆମ ପ୍ରଦେଶର ରାସ୍ତାଗୁଡ଼ିକ ଅନେକ ଜାଗାରେ ଅସମତଳ, ଅଣଓସାରିଆ ଓ ଅସଜଡ଼ା । ଯାନବାହନ କ୍ଷେତର ଦୃଶ୍ୟ ଅନେକ ଦିନରୁ ହୀନତା ଓ ଦୟନୀୟତାର ଜ୍ୱଳନ୍ତ ଉଦାହରଣ ହୋଇ ରହିଛି ।

### ପ୍ରଶାସନ କେନ୍ଦ୍ରଗୁଡ଼ିକର ଦୂରବସ୍ଥା

ଦରକାରୀ କାମରେ କୌଣସି ସରକାରୀ ଅଫିସ୍ ଭିତରକୁ ଯାଇ ଦେଖିବେ, ଘରସବୁ ଭାଙ୍ଗିବାକୁ ବସିଲାଣି । ଚୂନଲଗା ବର୍ଷ ବର୍ଷ ଧରି ହୋଇନାହିଁ । କବାଟ ଝରକା

ଭାଙ୍ଗିବା ଉପରେ । ଛାତରୁ ପାଣି ଗଳୁଥିବ । ଘର ଭିତରେ ବୁଢିଆଣି ଜାଲ, ଗଦା ଗଦା ଫାଇଲ ସବୁ ଇତସ୍ତତଃ । ସମାଜ ପରିଚାଳନାର କେନ୍ଦ୍ରବିନ୍ଦୁ ଏବଂ ଶାସନକଳର ହୃତ୍‌ପିଣ୍ଡ ସଦୃଶ ଅଫିସ୍‌ଗୁଡ଼ିକର ଦୂରବସ୍ଥା ଦୂର କରିବା ପାଇଁ ସମସ୍ତ ପ୍ରକାର ପ୍ରଚେଷ୍ଟା ଆବଶ୍ୟକ ହୋଇପଡିଛି ।

## ଗୃହ ନିର୍ମାଣରେ ଗରିବିର ଦୃଶ୍ୟ

ଆଜିକାଲି ହାଉସିଂ ବୋର୍ଡ ତରଫରୁ ସ୍ଥାନେ ସ୍ଥାନେ ଗୃହ ନିର୍ମାଣ କରାଯାଇ ବଣ୍ଟନ କରାଯାଉଛି । ସେ ଘରଗୁଡ଼ିକର ନିର୍ମାଣ ସ୍ତର ଅନେକ କାରଣରୁ ସମାଲୋଚିତ । ସରକାରୀ ଅଫିସ୍ ବା କ୍ୱାର୍ଟର ନିର୍ମାଣ ମଧ୍ୟ ତଦ୍ରୂପ । ଗରିବ ଲୋକଙ୍କ ପାଇଁ ଉଦ୍ଦିଷ୍ଟ ରାଜରାସ୍ତାର ଦୁଇପାର୍ଶ୍ୱରେ ନିର୍ମିତ ଇନ୍ଦିରା ଆବାସଗୁଡ଼ିକର ଭଙ୍ଗା କାନ୍ଥ । ଉଡ଼ାଛପର ଓ ଅପନ୍ତରା ଅବସ୍ଥିତି ଦେଖିବା ପରେ ସ୍ୱତଃ ଆତ୍ମଗ୍ଳାନି ଜାତହୁଏ । ଦେଶର ବିରଳ ପୁଞ୍ଜିର ପ୍ରକାର ବିନିଯୋଗ କଣ ଯଥାର୍ଥ ।

## ଅବହେଳିତ ଶିକ୍ଷାନୁଷ୍ଠାନ

ଦେଶସାରା ଶିକ୍ଷାନୁଷ୍ଠାନ ଗୁଡ଼ିକ ବିଶେଷ ଭାବେ ଗ୍ରାମାଞ୍ଚଳରେ ଅଲୋଡ଼ା ଅଦରକାରୀ ଭାବେ ବଞ୍ଚି ରହିଛନ୍ତି । ବିଦ୍ୟାଳୟ ଗୃହମାନଙ୍କର ଅବସ୍ଥା ଅତୀବ ଶୋଚନୀୟ । ବିଦ୍ୟାଳୟ ଉପକରଣ ବିଷୟରେ ଆଲୋଚନା କରାନଯିବା ଭଲ । ବିଦ୍ୟାଳୟ ପରିବେଶ ଓ ଚତୁଃପାର୍ଶ୍ୱ ଆଜି ଦର୍ଶକ କିମ୍ୱା ଛାତ୍ରମାନଙ୍କ ମନରେ ପ୍ରେରଣା ଦେବା ପରିବର୍ତ୍ତେ ନିରୁତ୍ସାହ ଭାବେ ସୃଷ୍ଟି କରିଥାଏ ।

## ରୁଗ୍‌ଣ ଚିକିତ୍ସାଳୟ

ରୋଗ ଦୂର କରିବା ପାଇଁ ଉଦ୍ଦିଷ୍ଟ ଚିକିତ୍ସାଳୟଗୁଡ଼ିକ ନିଜେ ସୁସ୍ଥ କରିବା ବଦଳରେ ରୁଗ୍‌ଣ ଦେଖାଯାଉଛନ୍ତି । ଡାକ୍ତରଖାନାରେ ଖଟ, ଶେଯ, ତୁଳା, ବ୍ୟାଣ୍ଡେଜ୍ ମିଳିବା କଷ୍ଟକର । ଔଷଧ ଓ ଡାକ୍ତରଙ୍କ ଅଭାବ ତ ରହିଛି । ଡାକ୍ତରଖାନାର ଘରକାନ୍ଥ, ଛାତ, ଚଟାଣ ଓ ଚତୁଃପାର୍ଶ୍ୱ ମଧ୍ୟ ଦୁଃସ୍ଥ ଜୀବନର ଦୃଶ୍ୟ ସୃଷ୍ଟି କରିଥାଏ । ଏ ଅବସ୍ଥାରେ ଜଣେ ରୋଗୀ ଡାକ୍ତରଖାନା ଆସିବା ପରେ ତାର ମନର ସ୍ଥିତି ଦୁର୍ବଳରୁ ଦୁର୍ବଳତର ହୋଇଯିବା ସ୍ୱାଭାବିକ ।

## ଗରିବି ଅର୍ଥାତ୍ ମନର ଗରିବି

ଗରିବି ସହିତ ଧନ ଓ ସମ୍ପତ୍ତିର ହିସାବ ସଂଯୁକ୍ତ ରହିଛି । ଧନର ପରିମାଣ ସହିତ ଧନର ଆବଶ୍ୟକତା ସମତାଳ ହେଲେ ବ୍ୟକ୍ତିର ମାନସିକ ସନ୍ତୋଷ ସମତାଳ ହୁଏ ଏବଂ ବ୍ୟକ୍ତିର ମାନସିକ ସନ୍ତୋଷ ବଜାୟ ରହିଥାଏ । ଅନ୍ୟ ପକ୍ଷରେ ଧନ ସଂଗ୍ରହ ପ୍ରବୃତ୍ତି ନିୟନ୍ତ୍ରଣ ବହିର୍ଭୂତ ହେଲେ ଜଣେ ବ୍ୟକ୍ତିର ମନ ଦୁର୍ବଳ ହୋଇପଡ଼େ ଓ ଏ ପ୍ରବୃତ୍ତି

ଅଶାନ୍ତିର ବୀଜବପନ କରିଥାଏ । ଏଣୁ ପ୍ରଥମେ ମନର ଗରିବିକୁ ଦୂର କରିବାକୁ ହେବ ।

### ଯୌବନରେ ଗରିବି

ବନ୍ଧୁ ମହଲରେ ସୌଜନ୍ୟ ପ୍ରକାଶ କରି କୁହାଯାଏ, କଣ କରିବି ଭାଇ, ଗରିବ ଲୋକ, ଅଳ୍ପେ ବହୁତେ ଯେତିକି ପାରିଲି ସେତିକି ଯୋଗାଡ଼ କରିଛି । ସେହି ପ୍ରକାର କୁହାଯାଏ ଏ ଗରିବର କୁଡ଼ିଆରେ ଥରେ ପାଦ ପକାଇ ଯାଆନ୍ତୁ । ଏଥିରେ ବ୍ୟକ୍ତିର ସୁବ୍ୟବହାରର ସୂଚନା ମିଳିଥାଏ ଏବଂ ଏହା ସୁସମ୍ବନ୍ଧ ପାଇଁ ଆବଶ୍ୟକ । ଏ ପ୍ରକାର ଶବ୍ଦ ପ୍ରୟୋଗରେ କାହାର୍ କ୍ଷତି ହୋଇନଥାଏ ବରଂ ପରିବେଶ ରୁଚିକର ହୋଇଥାଏ ।

### ସରଳତା ଗରିବି ନୁହେଁ

ସରଳ ଜୀବନଯାପନ କରିବା ଅର୍ଥ ନୁହେଁ ଛିଣ୍ଡା ବା ଅପରିଷ୍କାର ପୋଷାକ ପିନ୍ଧିବା, ଅସନା ଘରେ ବାସ କରିବା କିମ୍ବା ପଚାସଢ଼ା ଖାଦ୍ୟଖାଇବା । ଏ ସମସ୍ତ ହୀନତାର ପରିପ୍ରକାଶ ମାତ୍ର । ଜଣେ ଅଭାବଗ୍ରସ୍ତ ଲୋକ ମଧ୍ୟ ପରିଷ୍କାର ପରିଚ୍ଛନ୍ନ ରହିପାରେ । ବାସଗୃହକୁ ସଜାଇ ରଖିପାରେ । ପ୍ରକୃତରେ ଯଥେଷ୍ଟ ଜାଗରଣ ଓ ଯତ୍ନ ଅଭାବରୁ ଗରିବିର ଦୃଶ୍ୟ ଦୂର କରିବାରେ ଆମେମାନେ କ୍ଷମ ହୋଇପାରି ନାହୁଁ ।

### ପ୍ରକୃତି ଗରିବ ନୁହେଁ

ଅନ୍ୟ ପକ୍ଷରେ ପ୍ରକୃତିର ଦୃଶ୍ୟ ମନୋରମ । ଝରଣା, ପାହାଡ଼, ବୃକ୍ଷଲତା, ଫୁଲଫଳ, ଆକାଶ, ବାଦଲ ପ୍ରତ୍ୟେକ ଦର୍ଶକର ଚକ୍ଷୁକୁ ଆକର୍ଷିତ କରିଥାନ୍ତି ଓ ମନୁଷ୍ୟ ମନରେ ଉଚ୍ଚ ଭାବର ଜାଗରଣ କରାଇଥାନ୍ତି । ମନୁଷ୍ୟର ହସ୍ତକ୍ଷେପ ଫଳରେ ଝରଣା ଆଜି ପ୍ରଦୂଷିତ । ବୃକ୍ଷରାଜି ବିଲୁପ୍ତ, ଫୁଲଫଳ ଦୁଷ୍ପ୍ରାପ୍ୟ । ତେଣୁ ଭାବନାର ସ୍ତରକୁ ଉଚ୍ଚରଖି ଗରିବିକୁ ହଟାଇବାକୁ ହେଲେ ପ୍ରକୃତିର ସୁରକ୍ଷା କରିବାକୁ ହେବ । ପ୍ରକୃତି ଓ ପ୍ରଗତିର ପରସ୍ପର ପରିପୂରକ ଭାବକୁ ବଜାୟ ରଖିବାକୁହେବ ।

ଉପରୋକ୍ତ ଉଦାହରଣ ଗୁଡ଼ିକ ପାଠ କରିବା ପରେ ପାଠକମାନେ ଲେଖକ ସହ ଏକମତ ହେବେ ଯେ, ଆମ ଦେଶରେ ଗରିବି ଦୂରୀକରଣ ପାଇଁ କମ୍ ପଦକ୍ଷେପ ନିଆଯାଉଛି । ଅଥଚ ଗରିବି ପ୍ରଚାର କରିବାରେ ଏବଂ ସ୍ଥାୟୀକରଣ ଦିଗରେ ଆମେ ସମସ୍ତେ ଅଜାଣତରେ ଲାଗିପଡିଛେ ।

*ବଲାଣି, କେନ୍ଦୁଝର*
*ଡିସେମ୍ବର, ୧୯୯୬*



# ମଶାଗ୍ରାମ

ଶତାବ୍ଦୀ ଏକ୍ସପ୍ରେସ୍ ଅକସ୍ମାତ୍ ବନ୍ଦ ହୋଇଗଲା । ବଗିରେ ଥିବା ସହଯାତ୍ରୀଗଣ ସମସ୍ୱରରେ କହି ଉଠିଲେ - ଅଭି ଉତ୍ତର ଯାଇଏ । କିଛି ସମୟ ପୂର୍ବରୁ ଏମାନେ ସମସ୍ତେ ଭାବୁଥିଲେ କେମିତି ଟ୍ରେନ୍‌ଟି ରହିଯାଆନ୍ତା କି । ଆଉ ସେଇଆ ହେବାରୁ ସମସ୍ତଙ୍କ ମୁହଁରେ ହସ ଖେଳିଗଲା । ହାଓଡା ଦିଲ୍ଲୀ ମେନ୍ ଲାଇନ୍ ଉପରେ ଛୋଟିଆ ଷ୍ଟେସନ ଉପରେ ଟ୍ରେନ୍‌ଟି ଅଟକି ଯାଇଛି ବୋଧେ ସିଗ୍‌ନାଲ୍ କ୍ଲିଅର ନଥିଲା ।

ବଗିର କବାଟ ଖୋଲି ପଦାକୁ ଓହ୍ଲାଇ ଦେଖିଲାବେଳେ ଷ୍ଟେସନ୍‌ର ବୋର୍ଡଟି ଆଖିରେ ପଡିଲା । ତିନିଭାଷାରେ ଲେଖାଯାଇଛି - ମଶାଗ୍ରାମ । ଜଣେ ଦୁଇଜଣ ଲୋକ ଏପାଖ ସେପାଖ ହେଉଥାନ୍ତି । ଶତାବ୍ଦୀ ଏକ୍ସପ୍ରେସ୍‌ରୁ ମଶାଗ୍ରାମ ଷ୍ଟେସନ୍‌ରେ ଓହ୍ଲାଇଥିବା ଯାତ୍ରୀଙ୍କୁ ଦେଖି ଏମାନେ ଆଶ୍ଚର୍ଯ୍ୟ ହେଉଥାନ୍ତି । ତାଙ୍କ ଭିତରୁ ଜଣେ ପଚାରିଦେଲା - କି ହେଲୋ ? ଉତ୍ତର ମିଳିଲା - ଭୁଲ୍ ହୋଇଗଲା - ସେତିକି ଉତ୍ତରରେ ବୋଧେ ପ୍ରଶ୍ନକର୍ତ୍ତା ବୁଝିଗଲେ ।

ଅପ୍‌ଲାଇନ୍ ପ୍ଲାଟ୍‌ଫର୍ମରୁ ଡାଉନ୍ ଲାଇନ୍ ପ୍ଲାଟ୍‌ଫର୍ମକୁ ଯିବାକୁ ହେବ । ସେ ପାଖରୁ ଲୋକାଲ୍ ଧରି ହାଓଡ଼ା ଫେରିବାକୁ ହେବ । ହାତରେ ମୋଟା ଆଟାଚି ସାଙ୍ଗକୁ ପ୍ଲାଷ୍ଟିକ୍ ଝୁଲାରେ ଭର୍ତ୍ତି ଜିନିଷ । ଦୁଇ ହାତରେ ଧରି ଚାଲିଲାବେଳକୁ କଷ୍ଟ ହେଉଛି । ବଡ଼ ଷ୍ଟେସନ୍‌ରେ କୁଲି ମଳିଯିବେ ସିନା, ଏ ଜାଗାରେ ତ ନିଜ କାମ ନିଜେ କରିବାକୁ ପଡ଼ିବ ।

ଅପରପାର୍ଶ୍ୱର ପ୍ଲାଟ୍‌ଫର୍ମରେ ଅପେକ୍ଷାକୃତ ଅଧିକ ଯାତ୍ରୀଙ୍କର ସମାଗମ । ସକାଳ ୭ଟା ସମୟ । ସକାଳ ପହର ପରିବା ବିକାଳି, ଚାକିରିଆ, ମଜୁରିଆ ସମସ୍ତେ ଲୋକାଲ୍ ଟ୍ରେନ୍ ଅପେଧାରେ । ତେବେ ଏ ପ୍ରକାର ବାଟା ଜୋତା ଓ ମୋଟା ଆଟାଚିବାଲା ଯାତ୍ରୀଙ୍କୁ ଦେଖି ଅନ୍ୟମାନଙ୍କ ମନରେ ପ୍ରଶ୍ନ ଉଙ୍କି ମାରୁଥାଏ । ଷ୍ଟେସନ୍‌ର ପରିବେଶ ବେଶ୍ ମନୋରମ । ପରିଷ୍କାର ପ୍ଲାଟ୍‌ଫର୍ମରେ ସ୍ଥାନେ ସ୍ଥାନେ ଗଛ ଗୋଟିଏ ଲେଖାଏଁ ଓ ଗଛ

ମୂଳରେ ବସିବା ପାଇଁ ସିମେଣ୍ଟର ଗୋଲ୍ ବେଞ୍ଚ । ଷ୍ଟେସନ୍‌ର ଦୁଇ ପାଖେ ଗାଁର ଘରଗୁଡ଼ିକ ଓ ଧାନ କ୍ଷେତ ।

ଜଣାଗଲା ଲୋକାଲ୍ ଆସିବା ସମୟ ହୋଇଯାଇଛି । ଟିକେଟ୍ କରିବାକୁ ପଡ଼ିବ । ଟିକେଟ୍ ଘର ଟିକିଏ ଦୂରରେ । ଏତେସବୁ ଜିନିଷ ଧରି ଟିକେଟ୍ ଘରକୁ ଯାଇ ଫେରିବାକୁ ଥକ୍‌କା ଲାଗୁଥାଏ ।

ପାଖରେ ବସିଥିବା ଜଣେ ଯାତ୍ରୀକୁ ପଚାରିବାରୁ ଜଣାଗଲା ସେ ମଧ ଲୋକାଲ୍ ଟ୍ରେନ୍‌ର ଅପେକ୍ଷାରେ । ତାକୁ ଅନୁରୋଧ ଜଣାଇଲି ଭାଇ, ତୁମେ ଟିକେ ଟିକେଟ୍ ଖଣ୍ଡିଏ ଆଣି ଦିଅତ । ଲୋକଟି ବିନା ଦ୍ୱିଧାରେ ଠିଆ ହେଲା ଓ ହାତରେ କୋଡ଼ିଏ ଟଙ୍କାର ନୋଟ୍‌ଟିଏ ନେଇ ଟିକେଟ୍ ଆଣିବାକୁ ଚାଲିଗଲା । ମନରେ ସନ୍ଦେହ ଲାଗୁଥାଏ ଏ ଲୋକଟି ଫେରିଲତ ? ଆଖିରେ ପଡିଲା ତାର ଛାଡ଼ି ଯାଇଥିବା ବସ୍ତାଟିକୁ । ବିଶ୍ୱାସ ଓ ସନ୍ଦେହର କୁହେଳିକା ଭିତରେ ବୁଡି ରହିଥିବା ସମୟରେ କିଛି ଦୂରରେ ଲୋକଟିର ଫେରୁଥିବା ଦୃଶ୍ୟ ଦେଖି ସନ୍ଦେହ ଦୂର ହେବା ସଂଗେ ସଂଗେ ଲୋକଟି ପ୍ରତି ସମ୍ମାନ ଭାବ ଜାଗି ଉଠିଲା । ତା ହାତରୁ ଟିକେଟ୍‌ଟି ନେବା ସହିତ ତା ହାତକୁ ଦୁଇଟଙ୍କା ବଢାଇ ଦିଅନ୍ତେ ସେ ନାହିଁ ନାହିଁ କଲା । ଶେଷରେ ବାଧକରି ତାର ସାର୍ଟ ପକେଟ୍‌ରେ ଗଳାଇ ଦେବାରୁ ରଖିଲା ।

ଯଥା ସମୟରେ ଟ୍ରେନ୍ ଆସିଲା । ଟ୍ରେନ୍‌ରେ ବସିବା ପରେ ଜଣାଗଲା ଯେ, ଏଠାରୁ ହାଓଡ଼ା ପ୍ରାୟ ୧ ଘଣ୍ଟା ୪୫ ମିନିଟ୍ ଲାଗିବ । ଶତାବ୍ଦୀ ଟ୍ରେନ୍‌ର ଏକ ଘଣ୍ଟାର ରାସ୍ତା ଲୋକାଲ୍ ଟ୍ରେନ୍‌ର ୧ ଘ ୪୫ ମିନିଟ୍ ଯାତ୍ରା ସଙ୍ଗେ ସମାନ । ଟ୍ରେନ୍‌ଟି ସବୁ ଷ୍ଟେସନ୍‌ରେ ରହୁଥାଏ । ପ୍ରକାର ପ୍ରକାର ଯାତ୍ରୀ ଚଢୁଥାନ୍ତି । ବଙ୍ଗଳା ଭାଷାରେ ବାଉଲ୍ ଗାନ, ଅନ୍ଧର ଭଜନ ଓ ଯାତ୍ରୀମାନଙ୍କର କୋଳାହଳ ସାଙ୍ଗକୁ ଝରକା ବାଟଦେଇ ଆସୁଥିବା ଥଣ୍ଡା ପବନ ପରିବେଶକୁ ଆନନ୍ଦମୟ କରି ଦେଉଥାଏ । କିନ୍ତୁ ଏ ବିଶେଷ ଯାତ୍ରୀଜଣଙ୍କର ମନରେ କେତେ ଚିନ୍ତା ଉଙ୍କି ମାରୁଥାଏ । କିପରି ଜଲ୍‌ଦି ହାଓଡ଼ାରେ ପହଞ୍ଚିବ । ସେଠାରେ ଶତାବ୍ଦୀ ଟ୍ରେନ୍‌ର ଟିକେଟ୍ ଫେରସ୍ତ, ଅନ୍ୟ ଟ୍ରେନ୍ ପାଇଁ ଟିକେଟ୍ ଖର୍ଦ୍ଦି, ଷ୍ଟେସନ୍‌ରୁ ନିଜ ସହରକୁ ଫୋନ୍‌ରେ ଖବର ପଠାଇବା, ଗନ୍ତବ୍ୟସ୍ଥଳରେ ଅପେକ୍ଷାରତ ଜିପ୍ ଡ୍ରାଇଭର ପାଇଁ ଟ୍ରେନ୍ ପରିବର୍ତ୍ତନର ସୂଚନା ପ୍ରେରଣ ଆଦି ଅନେକ କିଛି କାମ । ଏହା ସହିତ ମନରେ ପ୍ରଶ୍ନବାଚୀ, କାହିଁକି ଏପରି ହେଲା ? ସାମାନ୍ୟତମ ଅମନଯୋଗିତାର ଫଳ ସ୍ୱରୂପ ୭ ଘଣ୍ଟାର ଅଧିକ ଯାତ୍ରା । ଶରୀର କ୍ଳେଶ, ସମୟ ନଷ୍ଟ, ଅର୍ଥଶ୍ରାଦ୍ଧ । ତ୍ରୁଟିର ରୂପରେଖ ଏହିପରି ।

ସେଦିନ ସକାଳେ ୬ଟା ସମୟରେ ରାଉରକେଲାଗାମୀ ଶତାବ୍ଦୀ ଟ୍ରେନ୍‌ରେ ଟିକେଟ୍ ହୋଇଥାଏ । ସକାଳ ୫.୩୦ରେ ଆସି ପହଞ୍ଚିବା ବେଳକୁ ପ୍ଲାଟ୍‌ଫର୍ମରେ ଟ୍ରେନ୍‌ଟି ଲାଗିଯାଇଥାଏ । ଅଧଘଣ୍ଟା ସମୟ ବାକି ଥିବାରୁ ଯାତ୍ରୀ ଭିଡ଼ ହୋଇନଥାଏ । ଯାତ୍ରୀ

ତାଲିକା ମଧ୍ୟ ଲାଗି ନଥାଏ । ଟିକେଟ୍‌ରେ ବଗି ନମ୍ବର ଦେଖି ସେଥିରେ ଉଠିଯାଇ ନିଜ ସିଟ୍ ନମ୍ବର ଦେଖି ବସିଯିବା ପରେ ଟ୍ରେନ୍ ଛାଡ଼ିଦେଇଛି । ଯାତ୍ରୀଗଣ ସମସ୍ତେ ଅଜଣା । ତେଣୁ ଖବରକାଗଜ ପଢିବା, ରାସ୍ତା ପାଖର ଦୃଶ୍ୟ ଦେଖିବା ସହିତ ବଗିରେ ପରିବେଶିତ ଚା ଜଳଖିଆକୁ ନେଇ ସମୟ ବଢିଚାଲିଛି । ପ୍ରାୟ ୧ ଘଣ୍ଟା ପରେ ଟିକେଟ୍ କଲେକ୍ଟର ଆସି ଟିକେଟ୍ ଦେଖିବା ପରେ କହିଲେ - କ୍ୟା ଜି, ଆପ୍ ତୋ ଗଲତ୍ ଟ୍ରେନ୍ ମେ ବୈଠ ଗୟେ । ୟେ ବୋକାରୋ ଯା ରହି ହେ । ଆପ୍‌କୋ ରାଉରକେଲା ଶତାବ୍ଦୀ ମେ ଯାନା ଥା । ଆପ୍‌କା ଟ୍ରେନ୍ ବଗଲ୍ ମେ ଲଗାଥା ।

ଦୁଃଖ ପ୍ରକାଶ କରିବା ସହିତ ଟିକେଟ୍ କଲେକ୍ଟର ରାସ୍ତା ବତାଇ ଦେଲେ - ଘବରାଇଏ ନହିଁ । ଆଗେ ଦୁର୍ଗାପୁର ଷ୍ଟେସନ୍ ପଡ଼େଗା । ଆପ୍ ଓହିଁ ଉତର ଯାଇଏ । ଉଧର ସେ କୋଲ୍‌ଫିଲ୍ଡ ଆଏଗା । ଉସ୍‌ମେ ଆପ୍ ରିଟର୍ଣ୍ଣ ଚଲେ ଯାଏଁଗେ । ହାଓଡ଼ା ପହୁଞ୍ଚତେ ଆପ୍‌କୋ ୧୦.୩୦ ହୋ ଯାଏଗା ଔର ଉଧର ଗ୍ୟାର ବଜେ ଆପ୍‌କୋ ବମ୍ବେ ଏକ୍ସପ୍ରେସ୍ ମିଲେଗା । ସିକେପି ପହୁଞ୍ଚତେ ଆପ୍‌କୋ ପାଞ୍ଚ ବଜ୍ ଜାଏଗା । ଯୋ ହୋ ଗୟା ସୋ ହୋ ଗୟା, ଅଭି ଚିନ୍ତା ମତ୍ କରିୟେ ।

ଏହିସବୁ ଚିନ୍ତା କରୁ କରୁ ଲୋକାଲ୍ ଟ୍ରେନ୍ ହାଓଡ଼ାରେ ପହଞ୍ଚି ଯାଇଛି । ତା ପରେ ସମସ୍ତ କାର୍ଯ୍ୟ ଠିକ୍ ଠିକ୍ ହୋଇଗଲା । ସେ ଦିନର ମଶାଗ୍ରାମ ଅନୁଭୂତି କିନ୍ତୁ ସବୁଦିନ ପାଇଁ ମନରେ ରହିଗଲା ।

*ବଲାଣି, କେନ୍ଦୁଝର*
*ମାର୍ଚ୍ଚ, ୧୯୯୭*



# ଲବଣୀ ଗାଆଁରେ ସାହିତ୍ୟ ଚାଷ

ଲବଣୀ ଗ୍ରାମରେ ସାହିତ୍ୟର ଆଦର ଅଛି । ଏଠାରେ କେତେଜଣ ଲେଖକ ଅଛନ୍ତି । ସେହି ଅନୁପାତରେ ପାଠକ ମଧ୍ୟ । ବେଳେବେଳେ ପତ୍ରିକା ଖଣ୍ଡିଏ ପ୍ରକାଶିତ ହୋଇଥାଏ । ଲେଖକମାନେ ଏକାଠି ହୋଇ ସାହିତ୍ୟ ସଂସଦ ଗଢିଛନ୍ତି । ବର୍ଷରେ ଥରେ ଦୁଇଥର ସଂସଦର ସଭା ବସେ । କବିତା ପାଠ, ସାହିତ୍ୟ ଆଲୋଚନା ଓ ଭୋଜିଭାତରେ ବାତାବରଣ ସରଗରମ ହୋଇଥାଏ । ପ୍ରତିଷ୍ଠିତ ଲୋକଙ୍କର ପ୍ରୋତ୍ସାହନ ମିଳିଲେ ସାହିତ୍ୟର ଆସର ସଂଖ୍ୟା ବୃଦ୍ଧିପାଏ ।

ସଂସଦର ଅନେକ ଆଶା । ଘରଟିଏ ହୁଅନ୍ତା । ଆଲମାରୀ, ଟେବୁଲ୍, ଚେୟାର ଆଦି ଆସବାସ ମିଳନ୍ତା । ପତ୍ରପତ୍ରିକା ଆସୁଥାଆନ୍ତା । ପାଠକମାନେ ପାଠକରି ଆନନ୍ଦିତ ହୁଅନ୍ତେ । ଲେଖକମାନେ ନୂଆ ନୂଆ ଲେଖାମାନ ସୃଷ୍ଟିକରି ଚମକାଇ ଦିଅନ୍ତେ । ଲୋକମାନେ ଭରପୁର ସାହାଯ୍ୟ ଯୋଗାଇ ଦିଅନ୍ତେ । ସରକାରୀ ଗ୍ରାଣ୍ଟ ମିଳନ୍ତା । ଗାଁ ବାହାରୁ ଓଡ଼ିଶାର ପ୍ରତିଷ୍ଠିତ ଲେଖକ ଓ କବିମାନେ ଆସି ଆଲୋଚନାରେ ଭାଗ ନିଅନ୍ତେ - ଏହିପରି ଅନେକ ଆଶା ।

ମାତ୍ର ସଂସଦର ସକ୍ରିୟ ସଦସ୍ୟମାନଙ୍କର ଆଶା ପୂରଣ ହୋଇପାରୁ ନାହିଁ । ବେଳେବେଳେ ନିରାଶାରେ ଭାଙ୍ଗି ପଡିଲେ ସେମାନଙ୍କ ଭିତରୁ ଶୁଣିବାକୁ ମିଳେ, ଆମ ଏଠାକାର ଲୋକମାନଙ୍କ ବିଷୟରେ କହନ୍ତୁନି ଆଜ୍ଞା । ପତ୍ରିକା ନାଁ ଶୁଣିଲେ କଲମ ଧରନ୍ତି । ଆଉ ଲେଖା ପ୍ରକାଶିତ ନହେଲେ ବି ରାଗ । ସାହିତ୍ୟପ୍ରେମୀମାନେ ସବୁ ଖାଲି କଥାରେ । କାମ ପଡ଼ିଲେ ଦେଖା ହୁଅନ୍ତିନି । ଦେଖୁନାହାଁନ୍ତି ସେଦିନ କବିତା ପାଠୋତ୍ସବରେ ସକାଳ ସାତଟାରୁ ଦଶଟାଯାଏଁ ବସିଲେ କାହାରି ଦେଖା ମିଳିଲାନି । ଆମେ ସେଇ ତିନିଜଣକୁ ତିନିଜଣ । ନିଜେ ବଜାଇବୁ, ନିଜେ ଖାଇବୁ ।

ଏ ପ୍ରକାର ମନ ଦୁଃଖରେ ଭାଷା ପ୍ରକାଶ କରୁଥିଲେ ମଧ୍ୟ ସାହିତ୍ୟ ଲେଖକ ପତ୍ରିକା ଆଦିର କଥା ପଡିଲେ ସେହିମାନେ ଆସି ଉପସ୍ଥିତ ହୁଅନ୍ତି । ପ୍ରାୟ ଦଶବର୍ଷ ହେଲା ଗାଁରେ ପ୍ରତ୍ୟେକ ବର୍ଷ ପତ୍ରିକା ଖଣ୍ଡିଏ ନିୟମିତ ପ୍ରକାଶିତ ହୁଏ ଉତ୍କଳ ଦିବସ ଅବସରରେ । ଉତ୍କଳ ଦିବସ ପାଇଁ ଉଦ୍ୟୋକ୍ତାମାନେ ଯେଉଁ ପାଣ୍ଠି ସଂଗ୍ରହ କରନ୍ତି ସେଥିରୁ କିଛିଅଂଶ ଦିଅନ୍ତି ସାହିତ୍ୟ ପତ୍ରିକା ପ୍ରକାଶନ ଉଦ୍ଦେଶ୍ୟରେ । କାଳକ୍ରମେ ଉତ୍କଳ ଦିବସର ଆୟୋଜନ ଉଦ୍ୟୋକ୍ତାମାନଙ୍କ ହାତରୁ ସରକାରଙ୍କ ହାତକୁ ଚାଲିଆସେ । ଏଥିପାଇଁ ଅବଶ୍ୟ ସରକାରଙ୍କ ଉପରେ ଚାପ ପ୍ରୟୋଗ କରାଗଲା । ସରକାରୀ ଆୟୋଜନ ପରଠାରୁ ସେହି ଉଦ୍ୟୋକ୍ତାମାନେ ରହିଲେ କିନ୍ତୁ ନୂଆ ରୋଲ୍‌ରେ ।

ଆଗରୁ ଯେଉଁମାନେ ପରିଶ୍ରମ, ତ୍ୟାଗ, ସାହାଯ୍ୟ ସଂଗ୍ରହକୁ କର୍ତ୍ତବ୍ୟ ବୋଲି ଧରିଥିଲେ, ସେହିମାନେ ତର୍କ, ଦାବୀକୁ ଆଧାର କରି ଚାଲିଲେ । ଏହି ପରିସ୍ଥିତିରେ ଗୋଟିଏ ବର୍ଷ ଆୟରୁ ବ୍ୟୟ ବଢିଗଲା । ତେଣୁ ସାହିତ୍ୟ ପତ୍ରିକା ପାଇଁ ଉଦ୍ଦିଷ୍ଟ ପାଣ୍ଠିକୁ ରଦ୍ଦ କରାଗଲା । ପତ୍ରିକା ପ୍ରକାଶନ ନହେବା ସ୍ଥାନୀୟ ସଂସଦ ପାଇଁ ଦାରୁଣ ଆଘାତ ଦେଲା ଓ ଏହାକୁ ଚାଲେଞ୍ଜ ଭାବେ ଗ୍ରହଣ କରି ଏମାନେ ଲାଗିପଡ଼ିଲେ । ଘର ଘର ବୁଲି ସ୍ୱତନ୍ତ୍ର ଭାବେ ପାଣ୍ଠି ସଂଗ୍ରହ ହେଲା । ଏଥର କେବଳ ପତ୍ରିକା ପ୍ରକାଶନର ଉଦ୍ଦେଶ୍ୟ । ବହୁତ ଉତ୍ସାହର ଫଳସ୍ୱରୂପ ନୂଆ ନାଁରେ ଗୋଟାଏ ସୁଦୃଶ୍ୟ ଓ ସୁପାଠ୍ୟ ପତ୍ରିକା ଆତ୍ମପ୍ରକାଶ କଲା । ଲବଣୀ ଗାଁରେ ସାହିତ୍ୟର ନୂତନ ଧାରା ଖେଳିଲା । ଭବିଷ୍ୟତ ପାଇଁ ଅନେକ ଆଶାର ଜୁଆର ଭାସି ଉଠିଲା ।

ମାତ୍ର ତା ପରବର୍ଷ ଉତ୍କଳ ଦିବସ ପାଣ୍ଠିରୁ ପତ୍ରିକା ପ୍ରକାଶନ ବ୍ୟବସ୍ଥା ପୂର୍ବବତ୍ କରାଗଲା । ଗୋଟିଏ ପତ୍ରିକା ଗୋଟିଏ ବର୍ଷରେ ଏହି ନ୍ୟାୟରେ ଗାଁର ସାହିତ୍ୟ ସଂସଦ ନିଜ ଉଦ୍ୟମରୁ ବିରତ ହେଲେ । ଥରେ କଥାପ୍ରସଙ୍ଗରେ ଉଠିଲା ଯେ ଗାଁର ଲେଖକ ପାଠକମାନଙ୍କୁ ସଂଗଠିତ କରାଯାଉ । ସଂସଦକୁ ଠିକ୍ ଭାବେ ସକ୍ରିୟ କରାଯାଉ ।

ତେବେ କିପରି କରାଯିବ ? କଣ ରୂପରେଖ ହେବ । ଏ ବିଷୟରେ ବିଚାର କରାଯାଇ ପ୍ରାଥମିକ ଭାବେ ନିର୍ଣ୍ଣୟ କରାହେଲା ଯେ, ସମସ୍ତ ସାହିତ୍ୟପ୍ରେମୀ ସପ୍ତାହକୁ ଥରେ ଅପରାହ୍ଣ ସମୟରେ ଜଣେ କେହି ସଦସ୍ୟଙ୍କ ବୈଠକ ଘରେ ଏକତ୍ର ହେବେ । ହାତରେ ଥିବା ଲେଖାଗୁଡ଼ିକ ପାଠ କରିବେ । ଆଲୋଚନା ହେବ, ପରସ୍ପର ସାକ୍ଷାତ ହେବ । ଉଦ୍ୟୋକ୍ତା ବନ୍ଧୁ ଚା ପାନ ଦେବେ । ୧୦/୧୫ ଜଣଙ୍କର ଏକାଠି ବସିବାର ଆୟୋଜନ ଭାର ଉଦ୍ୟୋକ୍ତାଙ୍କୁ ଦିଆଗଲା । ଏ ନିର୍ଣ୍ଣୟ ଅନେକଙ୍କୁ ପସନ୍ଦ ଲାଗିଲା ।

ଆଉ କେତେଜଣ ଏଥିପାଇଁ ମାନସିକ ସ୍ତରରେ ପ୍ରସ୍ତୁତ ହେଲେ ନାହିଁ । ବିରୋଧ ମତ ଉଠିଲା । ଜଣକ ଘରେ ତାଙ୍କ ପିଲାମାନେ ଥିବେ । ତାର ବ୍ୟକ୍ତିଗତ ଜୀବନରେ ଅନୁପ୍ରବେଶ ହେବ । ଅନୁକୂଳ ବାତାବରଣ ହେବନାହିଁ । ବସିବାକୁ ଯାଗା ହେବନାହିଁ ।

ଘରକୁ ଆସି ଆଲୋଚନା କରିବାକୁ ସମସ୍ତେ ରାଜି ହେଉନାହାଁନ୍ତି । ଏହିପରି ଅନେକ ଅନିଚ୍ଛା ସତ୍ତ୍ୱେ ପ୍ରଥମ ବୈଠକଟି ଅନୁଷ୍ଠିତ ହେଲା । ତାପରେ ଆଉ ବୈଠକ ହୋଇପାରି ନାହିଁ ।

ଏ ବର୍ଷର ଉତ୍କଳ ଦିବସ ପାଖେଇଛି । ଏଥିପାଇଁ ପତ୍ରିକା ପ୍ରକାଶିତ ହେବ । ପୁଣି ଥରେ ସଂସଦ ଜାଗି ଉଠିଛି । ଲେଖା ସଂଗ୍ରହ ଚାଲିଛି । ପାଣ୍ଠି ପାଇଁ ଚିନ୍ତା ନାହିଁ । ଉତ୍କଳ ଦିବସର ଶୁଭ ଅବସରରେ ପତ୍ରିକାର ନୂତନ କଳେବର ଉନ୍ମୋଚନ ହେବ । ଅନେକ ନୂଆ ପୁରୁଣା ଲେଖକଙ୍କର ଆତ୍ମପ୍ରକାଶ ହେବ ।

ଏହି ପରିପ୍ରେକ୍ଷୀରେ ଲବଣୀ ଗ୍ରାମର ସମସ୍ତ ଲେଖକ ପାଠକ ଓ ସାହିତ୍ୟପ୍ରେମୀମାନଙ୍କ ତଥା ସର୍ବୋପରି ସାହିତ୍ୟ ସଂସଦକୁ ପୁଣିଥରେ ଆହ୍ୱାନ ଦିଆଯାଉଛି ଯେ ଏ ଗାଁର ସାହିତ୍ୟ ଆଲୋଚନାର ସ୍ତର କଣ ଏହିପ୍ରକାର ଥିବ । ଜଗତ୍‌ରେ ମହୁମାଛି ଅଛନ୍ତି । କେହି କିଛି ନ କହୁ । ମହୁମାଛି ମହୁସଂଗ୍ରହ କରି ମହୁ ଫେଣାରେ ସଞ୍ଚୟ କରୁଛି । ଏ ମହୁକୁ ଜୀବ ଜଗତ ଉପଭୋଗ କରୁଛି । ମହୁମାଛି ମଧ୍ୟ ନିଜ଼ର ମହୁପାନ କରି ଆତ୍ମସନ୍ତୋଷ ଲାଭ କରୁଛି । ତେବେ ମହୁ ମିଳିବା ନ ମିଳିବା ନିର୍ଭର କରୁଛି ମହୁମାଛିର ଦୟା ଉପରେ । ମହୁ ସଂଗ୍ରହ କରୁଥିବା ଜଙ୍ଗଲବାସୀ କନ୍ଧ, ଜୁଆଙ୍ଗମାନଙ୍କ ସକ୍ରିୟତା ଉପରେ । ଆଜିର ଆଧୁନିକ ଯୁଗର ମହୁର ଆବଶ୍ୟକତା ବଢିଯାଇଛି । ତେଣୁ ମଣିଷ ମହୁଚାଷର ପରିକଳ୍ପନା କରି ନିଜ ଘରେ ବସି ମହୁ ଉତ୍ପାଦନ କରୁଛି ।

ଏହି ମହୁ ଚାଷରୁ ଉଦାହରଣ ନେଇ ଲବଣୀ ଗାଁର ଲେଖକ ପାଠକମାନେ ସାହିତ୍ୟଚାଷ କରିବେ କି ?

*ଲବଣୀ, କେନ୍ଦୁଝର*
*ଏପ୍ରିଲ୍, ୧୯୯୭*



# ଆମ ଗାଆଁର ହାଲଚାଲ

ଏ ବର୍ଷ ଖରାଦିନେ ଗାଁରେ ସାତଦିନ କଟିଲା । ପିଲାମାନଙ୍କୁ ନେଇ ଆସିବା ପାଇଁ ମା-ବାପାଙ୍କର ଅଭିମାନଭରା ଆଦେଶ ଥିଲା । ଗତବର୍ଷ ଦଶହରା ଓ ଏ ବର୍ଷର ରଜଛୁଟି ଭିତରେ ଅନେକ ଦିନ ବିତି ଯାଇଛି, କିନ୍ତୁ ଗାଁର ସେମିତି କିଛି ପରିବର୍ତ୍ତନ ହୋଇନି ।

ଜୁନ୍ ୧୦ ତାରିଖର ଖରା । ସୂର୍ଯ୍ୟ ଉଦୟ ହେଉ ହେଉ ତାତିଲା ଖରାର ଆରମ୍ଭ । ଗମ୍ ଗମ୍ ଝାଳର ଧାରା । ସକାଳ ୯ଟା ବେଳକୁ ଗରମ ପବନର ଝାଞ୍ଜି । ଗାଁ ଦାଣ୍ଡର ଧୂଳି ଖରାତାପରେ କୁହୁଳୁଥାଏ । ଗଛଛାଇ ତଳେ କ୍ଲାନ୍ତ ପଥିକ । ଜିଭ ଲହ ଲହ କରି ଗାଁ କୁକୁର ଧକେଇବା ସହିତ ପାଟି ଆଁ କରି କୁଆ, ବଣିମାନଙ୍କର ଗଛ ଡାଳରେ ବିଶ୍ରାମ । ପ୍ରଚଣ୍ଡ ତାତି ଭିତରେ ଦାଣ୍ଡ ସବୁ ଶୂନ୍‌ଶାନ୍ । ସତେକି ଗାଁ ଭିତରେ କର୍ଫ୍ୟୁ ଜାରି ହୋଇଛି । ବାରଣ୍ଡାମାନଙ୍କରେ ଗଛମୂଳ ଛାଇରେ, ମନ୍ଦିର ଚାନ୍ଦିନୀରେ ଗାଁ ଟୋକାଙ୍କର ତାସ୍ ଖେଳ ଓ ମଝିରେ ମଝିରେ ଖୁସିର ଅଟ୍ଟହାସ୍ୟ । ଏ ସମୟରେ ଥଣ୍ଡା ପାଣି ମୁନ୍ଦେ ସତେ ଅବା ଅମୃତ ।

**ପାଣିର ଅଭାବ**

ପାଣିର କିନ୍ତୁ ଉତ୍କଟ ଅଭାବ । ପୋଖରୀ ସବୁ ଠୋ ଠୋ । କୂଅମାନଙ୍କର କାହିଁ କେଉଁ ତଳେ ପାଣି । ଗାଧୋଇବା ପାଇଁ ବୁଡ଼ା ପାଣି ନାହିଁ । ନଳକୂଅ ମୂଳରେ ଭିଡ଼ । ବିଲ ଭିତରେ ଚୁଆ ମାନଙ୍କରେ ମୁନ୍ଦାଏ ଲେଖାଁ ପାଣି । ସନ୍ଧ୍ୟାବେଳର ବାଦଲ ଖଣ୍ଡେ ଦେଖାଦେଲେ ବର୍ଷାର ଆଶାରେ ସମସ୍ତେ ପୁଲକିତ । ଥଣ୍ଡା ପବନ ଦଲକାଏ ଦେହରେ ବାଜିଗଲେ କି ଶାନ୍ତି ଆହା । ଗ୍ରୀଷ୍ମର ଏ ତାପ ମଣିଷ ଜଗତକୁ ବର୍ଷାର ଆବଶ୍ୟକତାକୁ ଅନୁଭବ କରାଇଦିଏ । ସତେ ଅବା ବର୍ଷାରାଣୀର ଆଗମନକୁ ସମସ୍ତେ ଉତ୍କଣ୍ଠା ସହିତ ଚାହିଁ ରହିଥାନ୍ତି ।

## ଜାଳେଣି ଅଭାବ

ଗାଁରେ ଜାଳେଣିର ଅଭାବ । ଆଜକୁ କୋଡ଼ିଏ ବର୍ଷ ତଳେ ଶୁଣୁଥିଲୁ ପୁରୀ ଜିଲ୍ଲାର ସମତଳ ଅଞ୍ଚଳରେ ଜାଳକାଠ ମିଳେ ନାହିଁ । ନଡ଼ିଆ ବରଡ଼ା, ଶୁଖିଲା ପତ୍ର, ଗୋବର ଘଷି, ଜାଳେଣି ଭାବେ ବ୍ୟବହୃତ ହୁଏ । ଏବେ ସେହି ଅବସ୍ଥା ଢେଙ୍କାନାଳ ଜିଲ୍ଲାର ପାହାଡ଼ିଆ ଅଞ୍ଚଳରେ ଦେଖାଗଲାଣି । ଏ ଦିଗରେ ଗାଁରେ ଇଲେକ୍‌ଟ୍ରିକ୍ ଲାଇନ୍ ବିଶେଷ ସହାୟକ ହୋଇଛି । ପ୍ରାୟ ପ୍ରତ୍ୟେକ ଘରେ ହିଟରର ବ୍ୟବହାର । ଇଲେକ୍‌ଟ୍ରିକ୍ ଲାଇନ୍ ଶୁଳ୍କଯୁକ୍ତ ହେଉଥିଲେ ବୋଧେ ହିଟର ବ୍ୟବହାର ସହଜସାଧ ହୁଅନ୍ତା ନାହିଁ । ଗାଁମାନଙ୍କରେ ଗ୍ରାମ୍ୟ ଜଙ୍ଗଲର ସୃଷ୍ଟି ସହିତ ଗୋବର ଗ୍ୟାସ୍ ପ୍ଲାଣ୍ଟମାନ ଖୋଲାଗଲେ ଆଗାମୀ ଦିନରେ ଜାଳେଣି ଅଭାବ ଦୂର ହୋଇପାରନ୍ତା ।

## ବାଡ଼ିବଗିଚାର ହ୍ରାସ

ଗାଁରେ ପନିପରିବାର ଅଭାବ । ବିଚିତ୍ର ସ୍ଥିତି । ଗାଁରେ ବିକ୍ରି ହେଉଥିବା ପରିବା ସବୁ ସହରମାନଙ୍କରୁ ଆସୁଛି । ଅବଶ୍ୟ ଅନ୍ୟ କେଉଁଠି ଗ୍ରାମ୍ୟ ପରିବେଶରେ ପରିବା ଚାଷ ହେଉଛି ବୋଲି ସହରକୁ ଆସି ପୁଣି ଗାଁ କ୍ଷେତ୍ରକୁ ଆସୁଛି । ଦିନଥିଲା ଏଇ ଗାଁରେ ଖରାଦିନିଆ ପରିବା ଚାଷ ବେଶ୍ ହେଉଥିଲା । କାକୁଡ଼ି, କଖାରୁ, ଭେଣ୍ଡି ସାଙ୍ଗକୁ ଶାଗ, ବାଇଗଣ, ଛୁଇଁ, ସାରୁ ଓ ଦେଶୀଆଳୁର ବହୁଳତା ଥିଲା । ଏବେ ଆଉ ବାଡ଼ିଘର ଫସଲ ନାହିଁ । ଏହାର ଦୁଇଟି ମୁଖ୍ୟ କାରଣ : ପ୍ରଥମରେ ବାଡ଼ ପକାଇବା ପାଇଁ ଡାଳ ମେଡ଼ା ଅଭାବ । ଦ୍ୱିତୀୟରେ ପରିଶ୍ରମ ପ୍ରତି ବିତୃଷ୍ଣା । ବାଡ଼ି ବଗିଚା କାମ ସାଧାରଣତଃ ଘରର ସ୍ତ୍ରୀ ଲୋକମାନେ କରିଥାନ୍ତି । ଏବେକାର ସ୍ତ୍ରୀ ଲୋକମାନେ ଆଧୁନିକ ବେଶଭୂଷା ଓ ପରିପାଟି ସହିତ ପନିପରିବା ଚାଷର ସମନ୍ୱୟ ରଖିପାରୁ ନାହାଁନ୍ତି ।

## ଚାକିରି ଅନ୍ୱେଷଣ

ଗ୍ରାମ୍ୟ ଜୀବନରେ ଯୁବମାନସରେ ଚାକିରି ଅନ୍ୱେଷଣର ପ୍ରାବଲ୍ୟ ବୃଦ୍ଧି ପାଇବାରେ ଲାଗିଛି । ପ୍ରାଇଭେଟ୍ ସ୍କୁଲ କଲେଜରେ ଡୋନେସନ୍ ଦେଇ ଚାକିରି କରିବା, ଲାଞ୍ଚ ଯୋଗାଡ଼ କରି ଚାକିରି ଖୋଜିବା, ନେତା ଓ ମନ୍ତ୍ରୀଙ୍କ ପାଖରେ ଭିଡ଼ କରିବା ଆଜିକାଲି ସାଧାରଣ ଦୃଶ୍ୟ । ଏ ପରିସ୍ଥିତିରୁ ଫାଇଦା ନେବାପାଇଁ ଟାଉଟର ମଧ୍ୟସ୍ଥିମାନଙ୍କ ଅଭାବ ନାହିଁ । ଚିଟ୍ ଫଣ୍ଡର ମ୍ୟାନେଜର ପୋଷ୍ଟ, ପ୍ଲାଣ୍ଟେସନ୍ କମ୍ପାନୀର ସେଲ୍‌ସ ରିପ୍ରେଜେଣ୍ଟେଟିଭ୍ ଚାକିରି ଶିକ୍ଷିତ ଯୁବକମାନଙ୍କୁ ଆକର୍ଷିତ କରୁଛି ।

ବୃଦ୍ଧାବସ୍ଥାର ବାପା ମା ଓ ପରିବାରର ଅନ୍ୟ ସଦସ୍ୟମାନଙ୍କ ମନରେ ସେହି ଚାକିରି ଚିନ୍ତାର ବୋଝ । ମରିଚିକା ସଦୃଶ ଏହି ଚାକିରି ଖୋଜାରେ ଅନେକ ଯୁବପ୍ରାଣ ତାର ମୂଲ୍ୟବାନ ସମୟ କଟାଇ ଚାଲିଛି । ଏହା ସହିତ ପରିବାରର କୌଳିକ ପେଷା ପ୍ରତି

ବିତୃଷ୍ଣା ଦୁଃଖର ପରିମାଣ ବଢାଇ ଦେଇଛି । ସତ୍ୟର ସାମ୍ନା କରିବା ପାଇଁ ଯେଉଁ ସତ୍‌ସାହସର ଦରକାର ତାହା ଗ୍ରାମ୍ୟ ଜୀବନରେ ଯୁବମାନସ ହରାଇବାରେ ଲାଗିଛି ।

**ଚାଷର ଉନ୍ନତି ନାହିଁ**

ଗାଁରେ ଚାଷୀକୂଳ ହେଲେ ମୁଖ୍ୟ ବାସିନ୍ଦା ଓ ଚାଷକାର୍ଯ୍ୟ ହେଲା ମୁଖ୍ୟ ଜୀବିକା । ଚାଷୀ ସଂଖ୍ୟା ଏ ଦେଶରେ ଶତକଡ଼ା ଅଶୀ । ଗ୍ରାମ୍ୟ ଲୋକସଂଖ୍ୟା ମଧ୍ୟ ଏ ଦେଶରେ ଶତକଡ଼ା ସେତିକି । ଚାଷର ଉନ୍ନତି ନାଁରେ ଏତେସବୁ ଯୋଜନା ହେବାପରେ ଏବେସୁଦ୍ଧା ଜଣେ ଜାପାନୀ ଚାଷୀ ଏକର ପିଛା ଯାହା ଫସଲ ପାଏ ଆମ ଦେଶର ଚାଷୀ ତାର ଦଶମାଂଶ ପାଏ । ତା ସହିତ କୃଷିଜାତ ଦ୍ରବ୍ୟର ମୂଲ୍ୟ ନିୟନ୍ତ୍ରିତ ଥିବାରୁ ପରିଶ୍ରମ ଓ ଲଗାଣର ମୂଲ୍ୟ ଚାଷରୁ ମିଳୁନାହିଁ । ଚାଷରୁ ଲାଭ କମିବା ସହିତ, ମୂଲିଆମାନଙ୍କର ମୂଲ ଓ ଦୌରାତ୍ମ୍ୟ କ୍ରମେ ବଢିବାରେ ଲାଗିଛି । ଏ ପରିସ୍ଥିତିରେ ଜଣେ ଚାଷୀ ଓ ତାର ପରିବାର ଏକ ପ୍ରକାର ଅର୍ଥନୈତିକ ସଙ୍କଟରେ ପଡି ଘାଣ୍ଟି ହେଉଛି ।

ଏହାର ସମାଧାନ ପାଇଁ ଯେଉଁ ଦୂରଦୃଷ୍ଟିସମ୍ପନ୍ନ ନିର୍ଣ୍ଣୟ ଦରକାର ସେଥିପ୍ରତି ଦେଶର କୌଣସି ରାଜନେତା ଏଯାଏଁ ଗୁରୁତ୍ୱର ସହ ଚିନ୍ତା କରିବା ଦେଖାଯାଏ ନାହିଁ। ଚାଷ କ୍ଷେତ୍ରରେ ଚକବନ୍ଦୀ, ଜଳସେଚନ, ଉନ୍ନତ ବିହନ, ଉନ୍ନତ ଉପକରଣ, ରୋଗପୋକ ନାଶକ ଦ୍ରବ୍ୟ, ସାର ଓ ଖତ ବ୍ୟବହାରରେ ବୃଦ୍ଧି, ଫସଲ ସାଇତି ରଖିବାର ସୁବ୍ୟବସ୍ଥା ଆଦି ମାଧ୍ୟମରେ ବର୍ଷକ ଭିତରେ ଗୋଟିଏ ଫସଲ କରି ବସି ରହୁଥିବା ଚାଷୀ ଯଦି ୩ଟି ଫସଲ କରିପାରନ୍ତା ଓ ଆଜିର ଅମଳ ଅପେକ୍ଷା ଯଦି ୨/୩ ଗୁଣ ଅଧିକ ଫସଲ ଅମଳ କରିପାରନ୍ତା, ତେବେ ଗାଁର ରୂପ ବଦଳି ଯାଆନ୍ତା । ଏ ଦିଗରେ ପ୍ରଚେଷ୍ଟା ଯୋଜନାର ନିମ୍ନତମ ସ୍ତରରୁ ଆରମ୍ଭ ହୋଇ ଉପର ସ୍ତର ପର୍ଯ୍ୟନ୍ତ ବ୍ୟବସ୍ଥିତ ରୂପରେ ହୋଇ ପାରିଲେ ବିକାଶର ସୁଫଳ ନିଶ୍ଚୟ ମିଳିପାରନ୍ତା ।

ଗାଁ ଆମର ରହିଛି, ରହିଥିବ । ଏମିତି ଖରାଦିନର ଛୁଟି ହେଉ ବା ଶୀତ ଦିନର ଛୁଟି ହେଉ ଗାଁ ତାର ସ୍ନେହ ଭରା ଆକର୍ଷଣ ଦ୍ୱାରା ଆମକୁ ତା କୋଳକୁ ଟାଣି ଆଣୁଥିବ । ଗାଁର ପାଣି ପବନରେ କିଛିଦିନ କଟାଇବା ପରେ, ଗାଁର ଦୃଶ୍ୟ ଦେଖିବା ପରେ, ଜୀବନ ଯାତ୍ରା ପଥରେ ଉତ୍ସାହର ତରଙ୍ଗ ସୃଷ୍ଟି ହେଉଛି । ଏହି ସ୍ମୃତି ତରଙ୍ଗ ପ୍ରେରଣାର ଉତ୍ସ ହୋଇ କାମ କରୁଛି । ମାତ୍ର ଗାଁର ପ୍ରଗତି ପାଇଁ ନିଜେ କିଛି କରିପାରୁ ନଥିବାରୁ ମନରେ ଅବଶୋଷ ରହିଯାଉଛି ।

*କଣ୍ଟିଓକାଟେଣୀ, ଢେଙ୍କାନାଳ*

◆◆◆

# ବିଧି ଉପେକ୍ଷା

ଆମ ସମାଜର ସୁପରିଚାଳନା ପାଇଁ କେତେଗୁଡ଼ିଏ ବିଧି ବିଧାନର ସୃଷ୍ଟି କରାଯାଇଛି । ଏହି ନିୟମର ପାଳନ ହେଲେ ସମସ୍ତଙ୍କର ମଙ୍ଗଳ । କାଳକ୍ରମେ କେତୋଟି ବିଧାନର ଉପେକ୍ଷା ହେଉଥିବା ଦେଖାଯାଉଛି । ସାଧାରଣ ନାଗରିକ ଏ ଦିଗରେ ସଚେତନ ହେଲେ ବିଶେଷ ଭାବେ ସମାଜଶାସ୍ତ୍ରୀମାନେ ଏ ଦିଗ ପ୍ରତି ଦୃଷ୍ଟି ଦେଲେ ଭବିଷ୍ୟତ ସମାଜଜୀବନ ସୁଖମୟ ହେବ, ଏହା ଆଶା ।

**ପୈତୃକ ସମ୍ପତ୍ତିର ବଣ୍ଟନ**

ବାପା ସମ୍ପତ୍ତିରେ ସନ୍ତାନମାନଙ୍କର ସମାନ ଅଧିକାର ଅଛି । ଘର, ଜମି, ଆସବାବପତ୍ର, ଗାଈମଇଁଷି, ସୁନା ରୂପା, ବାସନକୁସନ ଇତ୍ୟାଦି ସମସ୍ତ ଜିନିଷ ଭାଇମାନଙ୍କ ମଧ୍ୟରେ ସମାନ ଭାବରେ ବାଣ୍ଟି ଦିଆଯାଏ । ଏ ଭାଗବଣ୍ଟାରେ ଦେଖାଯାଉଛି ଯେ, ଚାଷକରି ଚଳୁଥିବା ଭାଇକୁ ନିଜର ଭାଗ ସମ୍ପତ୍ତି ମିଳୁଛି ମାତ୍ର ତାର ଅନ୍ୟ ଭାଇ ଚାକିରିଆ ଥିଲେ ସ୍ଥାବର ସମ୍ପତ୍ତିର ଅର୍ଦ୍ଧେକ ଭାଗ ପାଇବା ସଂଗେ ସଂଗେ ନିଜ ଚାକିରିରୁ ମିଳୁଥିବା ରୋଜଗାର ପୂର୍ଣ୍ଣ ରୂପରେ ନିଜ ଭାଗରେ ରଖୁଛି । ଅଥଚ ସେଇ ଚାକିରିଆ ଭାଇର ପାଠପଢା ସମୟର ଯାବତୀୟ ଖର୍ଚ୍ଚ ସମୂହ ପାଣ୍ଠିରୁ ଖର୍ଚ୍ଚ ହୋଇଥାଏ । ସେହି ସମୟରେ ଚାଷରେ ଲାଗିଥିବା ଭାଇଜଣକ ପରିଶ୍ରମ କରି ଘରର ସମୂହ ଉନ୍ନତି ପାଇଁ ଉଦ୍ୟମ କରୁଥାଏ ଏବଂ ନିଜ ପାଇଁ ଭବିଷ୍ୟତ ପୁଞ୍ଜିଯୋଗାଡ଼ କରିବାର ସୁଯୋଗ ପାଇ ନଥାଏ ।

ଆଜିକାଲି ଭାଇଭାଗ ଫଳରେ ଦେଖାଯାଉଛି ଯେ, ଚାଷରେ ନିଯୁକ୍ତ ଥିବା ଭାଇର ଆର୍ଥିକ ଅବସ୍ଥା ଚାକିରିଆ ଭାଇ ତୁଳନାରେ ବହୁତ ଅସ୍ୱଚ୍ଛଳ । ଦୁଇ ଭାଇର ସାମାଜିକ ଚଳଣି ଭିତରେ ଆକାଶ ପାତାଳର ପ୍ରଭେଦ ସୃଷ୍ଟି ହେଉଛି । ଏଣୁ ଏହି ଭାଇଭାଗ ନାମକ ବିଧିର ସମୀକ୍ଷା ଆବଶ୍ୟକ ।

## ଶିକ୍ଷିତ ଯୁବକଙ୍କ ପାତ୍ରୀ ମନୋନୟନ

ଆମ ସମାଜର ବିବାହ ବ୍ୟବସ୍ଥା ମଧ୍ୟ କେତେକ ବିଧିବିଧାନର ସୂତ୍ରରେ । ଏଥିଲାଗି ପୁଅଝିଅର ବୟସ, ଯୋଗ୍ୟତା, ଘରର ସ୍ଥିତି, ଜାତକମେଳକ, ସୌନ୍ଦର୍ଯ୍ୟ, ପସନ୍ଦ ଇତ୍ୟାଦି ଅନେକ ଦିଗକୁ ବିଚାରକୁ ନିଆଯାଏ । ବର୍ତ୍ତମାନ ସୁଦ୍ଧା ଏହି ବ୍ୟବସ୍ଥା ସୁରୁଖୁରୁରେ ଚାଲି ଆସିଥିଲେ ସୁଦ୍ଧା କେତେକ କ୍ଷେତ୍ରରେ ଏହାର ବ୍ୟତିକ୍ରମ ଦେଖାଦେଉଛି । ଆଜିକାଲି ଅଧିକାଂଶ ଶିକ୍ଷିତ ଓ ଚାକିରିଆ ଯୁବକ ନିଜ ସ୍ତରର, ନିଜ ସମାଜର ଝିଅକୁ ବିବାହ କରିବା ପାଇଁ ଆଉ ପସନ୍ଦକୁ ଆଣୁନାହାଁନ୍ତି ।

ଏହାର ଫଳସ୍ୱରୂପ ଗରିବ ଘରର ଉଚ୍ଚ ଚାକିରିଆ ପୁଅ ବଡ଼ ଘରର ଝିଅକୁ ବିବାହ କରିବାକୁ ପସନ୍ଦ କରୁଛି । ଗାଁରେ ରହୁଥିବା ପୁଅ ସହରରେ ରହୁଥିବା ଝିଅକୁ ପସନ୍ଦ କରୁଛି । ଓଡ଼ିଆ ରାଜ୍ୟର ପୁଅ ଦିଲ୍ଲୀ, କଲିକତାର ଝିଅକୁ ପସନ୍ଦ କରୁଛି । ନିଜ ପସନ୍ଦ ମୁତାବକ ବିବାହ କରିବା ଦ୍ୱାରା ବ୍ୟକ୍ତିଗତ ଇଚ୍ଛା ପୂରଣ ହୋଇଯାଉଛି ।

କିନ୍ତୁ ସେହି ଘରର ବିବାହ ଯୋଗ୍ୟ ଝିଅଟିଏ ଥିଲେ ତାର ବିବାହ ପାଇଁ ଉଚ୍ଚ ସ୍ତର ସମାଜର ପୁଅ ସହିତ ବିବାହ ପାଇଁ ଯୋଗ୍ୟ ବିବେଚିତ ହୋଇପାରୁ ନାହିଁ । ଏ ପ୍ରକାର ସମାଜ ବହିର୍ଭୂତ ବିବାହ ବୃଦ୍ଧି ପାଇବା ଫଳରେ ଗରିବ ଘରର, ଗ୍ରାମାଞ୍ଚଳର, ଅନୁନ୍ନତ ରାଜ୍ୟର ଓ ମଧ୍ୟବିତ୍ତ ପରିବାରର ଝିଅମାନଙ୍କର ବିବାହ ସମସ୍ୟା ଦେଖାଦେଇଛି । ଏ ଦିଗ ପ୍ରତି ପ୍ରତ୍ୟେକ ବ୍ୟକ୍ତିର ଦୃଷ୍ଟି ଆକର୍ଷଣ କରାହେବା ଆବଶ୍ୟକ ।

## କୁଳପେଶା ପ୍ରତି ବିତୃଷ୍ଣା

ସହସ୍ର ବର୍ଷରୁ ଭାରତୀୟ ସମାଜ ବର୍ଣ୍ଣାଶ୍ରମ ବିଧିକୁ ନେଇ ଚଳିଆସିଛି । ବର୍ଣ୍ଣ ବ୍ୟବସ୍ଥା ସହିତ କର୍ମବ୍ୟବସ୍ଥା ମଧ୍ୟ ଏ ସମାଜରେ ଚଳିଆସିଛି । କୁଳପେଶାରେ ନିଯୁକ୍ତ ରହି ଆମଦେଶର ଶତକଡ଼ା ଅଶୀଭାଗ ବ୍ୟକ୍ତି ଏବେ ମଧ୍ୟ ଜୀବିକା ନିର୍ବାହ କରୁଛନ୍ତି । କାଳକ୍ରମେ କୁଳପେଶା ପ୍ରତି ଯୁବପୀଢ଼ିର ଉପେକ୍ଷା ଦେଖାଦେଉଛି । ପରିସ୍ଥିତିରେ ପଡି କୁଳପେଶା କରିବା ଏବଂ ନିଜର ସ୍ୱଇଚ୍ଛାରେ ଏହାକୁ ଆଦରି ନେବା ଭିତରେ ପାର୍ଥକ୍ୟ ରହିଛି ।

ନିଜ ବୁଦ୍ଧି ବିବେକର ସଦୁପଯୋଗ କଲେ ନିଜର କୌଳିକ ପ୍ରଥା କ୍ଷେତ୍ରରେ ବିକାଶର ପଥ ଉନ୍ମୋଚିତ ହୁଅନ୍ତା । ଅନ୍ୟପକ୍ଷରେ ଆଧୁନିକ ଶିକ୍ଷାରେ ଡିଗ୍ରୀଧାରୀ ଯୁବଗୋଷ୍ଠୀ ଚାକିରି ରୂପକ ମରିଚିକା ପଛରେ ଦୌଡ଼ିବାରେ ଲାଗିଛନ୍ତି ଏବଂ ଯୁବାବସ୍ଥାର ମୂଲ୍ୟବାନ ସମୟକୁ ଏହି ଅପେକ୍ଷା, ପ୍ରତୀକ୍ଷା ରୂପକ ଆଶା-ନିରାଶାର ମଧ୍ୟଦେଇ ବିତାଇ ଚାଲିଛନ୍ତି । ଯୁବପୀଢ଼ିକୁ ଏହି ସତ୍ୟର ହୃଦୟଙ୍ଗମ କରାଇବାରେ ସମାଜ ଚିନ୍ତକମାନେ ଅଗ୍ରଦୂତ ହୋଇ ବାହାରିବା ଆବଶ୍ୟକ ।

## ଶ୍ରମିକ ଶ୍ରେଣୀର ଉଦ୍ଧତ ସ୍ୱଭାବ

ଶ୍ରମ କରି ଜୀବିକା ଉପାର୍ଜନ କାର୍ଯ୍ୟରେ ଆମ ଦେଶର ପ୍ରାୟ ଅର୍ଦ୍ଧେକ ଲୋକ ନିଯୁକ୍ତି ଅଛନ୍ତି । ଶ୍ରମିକ ଓ ମାଲିକ ମଧ୍ୟରେ ଯୁଗ ଯୁଗରୁ ଏକ ସୌହାର୍ଦ୍ଦ୍ୟପୂର୍ଣ୍ଣ ସମ୍ପର୍କ ସ୍ଥାପିତ ହୋଇଆସିଛି । ପରସ୍ପର ସୁସମ୍ବନ୍ଧ ଫଳରେ କାର୍ଯ୍ୟକ୍ଷେତ୍ରର ସମସ୍ତ କର୍ମ ସୁରୁଖୁରୁରେ ସମ୍ପାଦିତ ହେବା ସଂଗେ ସଂଗେ ଗ୍ରାମ୍ୟ ଜୀବନର ସରସତା ବଜାୟ ରହିଆସିଛି । ଶ୍ରମିକ ମଧ୍ୟ ନିଜ ଅଧ୍ୟବସାୟ ଫଳରେ ଶ୍ରମିକ ସ୍ତରରୁ ଜମିମାଲିକ ହେବାର ଅନେକ ଦୃଷ୍ଟାନ୍ତ ରହିଛି । ବାସଗୃହ, ଖାଦ୍ୟପେୟ, ଲୁଗାପଟା ଆଦିରେ ଉଭୟ ଶ୍ରେଣୀ ମଧ୍ୟରେ ବିଶେଷ ପାର୍ଥକ୍ୟ ଦେଖାଯାଏ ନାହିଁ ।

ଆଜିକାଲି କିନ୍ତୁ ଏ ସୌହାର୍ଦ୍ଦ୍ୟପୂର୍ଣ୍ଣ ସମ୍ପର୍କ ମଧ୍ୟରେ ଫାଟ ସୃଷ୍ଟି ହୋଇଛି । ଏଥିଲାଗି ଶିଳ୍ପ ସଂସ୍କୃତିର ପ୍ରଭାବ ମୁଖ୍ୟତଃ ଦାୟୀ । ଚାଷୀକୂଳକୁ ଶୋଷକ ଓ ମୂଲିଆମାନଙ୍କୁ ଶୋଷିତ ଆଖ୍ୟା ଦେଇ ଶ୍ରେଣୀ ସଂଘର୍ଷର ରୂପଦେବା ସହିତ ଏହି ଦର୍ଶନର ପ୍ରଚାର ଫଳରେ ସାମାଜିକ ବିଷମତା ସୃଷ୍ଟି ହେବାରେ ଲାଗିଛି । ଜଣେ ଚାଷୀ ପାଖରେ ବର୍ଷସାରା ଲାଗି କାମ କରିବା ପାଇଁ କୌଣସି ମୂଲିଆ ରାଜି ହେଉନାହାଁନ୍ତି । ଦିନ ମଜୁରିଆ ହିସାବରେ କାମ କରିବା ବେଳେ ଅନେକ ସର୍ତ୍ତର ଆରୋପ ହେଉଛି । ଜଣେ ମୂଲିଆ ଦିନକ ଭିତରେ ୪ ଘଣ୍ଟା କାମ କରିଦେଲେ ଛୁଟି ମାଗୁଛି । କାମକୁ ପହଞ୍ଚିବାରେ ବିଳମ୍ବ । କାମରେ ଅମନଯୋଗିତା ସାଙ୍ଗକୁ ବ୍ୟବହାରରେ ଔଦ୍ଧତ୍ୟ କାରଣରୁ ଚାଷୀକୂଳକୁ ମାନସିକ ଦୁଃଖ ଆଣିଦେଇଛି ।

ମୂଲିଆ ଲଗାଇ ଚାଷ କରିବା ପାଇଁ ଚାଷୀର ଆଉ ସାହସ ହେଉନାହିଁ । ମୂଲିଆମାନେ ଯେ ଏହାଦ୍ୱାରା ବିଶେଷ ଉପକୃତ, ତାହା କୁହାଯିବ ନାହିଁ । ସରକାରୀ ସ୍ତରରେ ଶିଳ୍ପାଞ୍ଚଳର ମୂଲିଆ ଶ୍ରେଣୀ ପାଇଁ ବିଭିନ୍ନ ପ୍ରକାର ସୁବିଧା ପ୍ରଦାନ କାରଣରୁ ଚାଷ କାର୍ଯ୍ୟରେ ମୂଲ କାମ ପ୍ରତି ଆଗ୍ରହ କମିଯାଇଛି । ଏହାର ଦୁଷ୍ପରିଣାମ କିନ୍ତୁ ଚାଷ କ୍ଷେତ୍ରରେ ଦେଖାଦେଇଛି । ଯାହାର ସମାଧାନ ପାଇଁ ସମସ୍ତଙ୍କୁ ଚିନ୍ତା କରିବା ଆବଶ୍ୟକ ।

*ତେଲାଣି, କେନ୍ଦୁଝର*
*ଅଗଷ୍ଟ, ୧୯୯୭*

◆◆◆

# ଜୀବନ ଜିଜ୍ଞାସା

ମଣ୍ଟୁ : ପ୍ରଭାତ ନାୟକ । +୨ ବିଜ୍ଞାନର ଦ୍ୱିତୀୟ ବର୍ଷ ଛାତ୍ର । ରାଉରକେଲା ସହରରେ ରହେ । ସ୍ଥାନୀୟ ସରକାରୀ ମହାବିଦ୍ୟାଳୟରେ ପଢେ । ମଧ୍ୟବିତ୍ତ ପରିବାର । ବାପା ଇସ୍ପାତ କାରଖାନାର କର୍ମଚାରୀ । ଘରର ବଡ଼ ପୁଅ ସେ । ଆଉ ଦୁଇଜଣ ଛୋଟ ଭାଇ ସ୍କୁଲ ଛାତ୍ର । ମାଟ୍ରିକ୍ ପରୀକ୍ଷାରେ ୮୦ ଭାଗ ମାର୍କ ରଖି ପାସ୍ କରିଥିବାରୁ +୨ ପରୀକ୍ଷାରେ ମଧ୍ୟ ଭଲ ନମ୍ବର ରଖି ପାଶ୍ କରିବା ପାଇଁ ଆଶା ରଖିଛି । ଏହା ସହିତ ଲକ୍ଷ୍ୟ ରଖିଛି ଇଞ୍ଜିନିୟରିଂ କଲେଜରେ ପଢିବା ପାଇଁ । ଇସ୍ପାତ ସହରର ପାଣି ପବନରେ ବଡ଼ ହୋଇଛି ସେ । ଏଣୁ ସ୍ୱାଭାବିକ ଭାବେ କଳକାରଖାନା ସମ୍ପର୍କିତ ବିଦ୍ୟା ପ୍ରତି ତାର ଆକର୍ଷଣ ରହିଛି ।

ମଣ୍ଟୁର ଦିନଚର୍ଯ୍ୟା ବେଶ୍ ଅନୁଧ୍ୟାନର ବିଷୟ । ସେ କଲେଜ ଯାଏ ଘର ପାଖରୁ ପ୍ରାୟ ୧୦ କି.ମି. ରାସ୍ତା । କଲେଜ ଯିବା ଆଗରୁ ପ୍ରତ୍ୟେକ ଦିନ ସକାଳ ସମୟରେ ଜଣେ ଅଧ୍ୟାପକଙ୍କ ପାଖକୁ ଗୋଟିଏ ବିଷୟ ପାଇଁ ଟିଉସନ୍ ହେବାକୁ ଯାଏ । ସନ୍ଧ୍ୟା ସମୟରେ କଲେଜରୁ ଫେରି ଆଉ ଗୋଟିଏ ବିଷୟ ଟିଉସନ୍ ପାଇଁ ଆଉ ଜଣେ ଅଧ୍ୟାପକଙ୍କ ପାଖକୁ ଯାଏ । ଘରୁ ଅଧ୍ୟାପକଙ୍କ ଘରକୁ ଯିବା ଆସିବା ପାଇଁ ଦିନକୁ ୧୦ କି.ମି. + ୧୦ କି.ମି. = ୨୦ କି.ମି. ୨ ଥର = ୪୦ କି.ମି. ରାସ୍ତା ସାଇକେଲ୍‌ରେ ଯାଇଥାଏ ମଣ୍ଟୁ । କଲେଜ ଯିବା ଆସିବା ମିଶିଲେ ୪୦ କି.ମି. + ୨୦ କି.ମି. = ୬୦ କି.ମି. ରାସ୍ତା ଦିନ ଭିତରେ ସାଇକେଲ୍ ଚଳାଇବାକୁ ପଡ଼େ ମଣ୍ଟୁକୁ । ଦେଖିବାକୁ ଗଲେ କଟକରୁ ଭୁବନେଶ୍ୱର ଯାଇ ଫେରିବା ପାଇଁ ଯେତିକି ରାସ୍ତା ଯିବାକୁ ପଡ଼ିବ ପ୍ରତ୍ୟେକ ଦିନ ସେତିକି ରାସ୍ତା ସାଇକେଲ୍ ଚଳାଇବାର ପରିଶ୍ରମ ଓ ସମୟ ଲାଗିଥାଏ ତାକୁ । ଏ ପରିଶ୍ରମ ମଣ୍ଟୁ ହସି ହସି କରିଚାଲିଛି ।

ଟିଉସନ୍ ପାଇଁ ଖର୍ଚ୍ଚ ଅଛି । ପ୍ରତ୍ୟେକ ବିଷୟ ପାଇଁ ମାସକୁ ୧୦୦ ଟଙ୍କା ଫିସ୍ । ସପ୍ତାହକୁ ୩ ଦିନ ଓ ଦିନକୁ ଘଣ୍ଟାଏ ଲେଖାଏଁ ପାଠପଢ଼ା । ଟିଉସନ୍ ହୁଏ ଅଧ୍ୟାପକଙ୍କ ବାସଗୃହରେ, କାମଚଳା ବେଞ୍ଚ ଟେବୁଲ୍ ଓ ବ୍ଲାକ୍‌ବୋର୍ଡ ସାହାଯ୍ୟରେ । ଅଧ୍ୟାପକମାନେ ଦଳ ଦଳ କରି ଦିନକୁ ୪ ଦଳ ଛାତ୍ରଙ୍କୁ ଟିଉସନ୍ କରିବା ଦେଖାଯାଏ । ପ୍ରତି ଦଳରେ ପ୍ରାୟ ୨୦ ଜଣ ଛାତ୍ରଛାତ୍ରୀ ଥାଆନ୍ତି । ପ୍ରତି ବିଷୟ ପାଇଁ ରାଉରକେଲା ସହରରେ ୮/୧୦ ଜଣ ଲେଖାଏଁ ଅଧ୍ୟାପକ ସୁନାମ ଅର୍ଜନ କରିଛନ୍ତି ।

ଏହି ଅଧ୍ୟାପକମାନେ କଲେଜ୍ କ୍ଲାସ୍ ଶେଷ କରି ଟିଉସନ୍‌ରେ ସମୟ ଦିଅନ୍ତି । ପରିଶ୍ରମ କରନ୍ତି ସତ, ବିଷୟରେ ଅମାପ ଜ୍ଞାନ ଥିବାର ସନ୍ଦେହ ନାହିଁ । ସର୍ବୋପରି ଅଧ୍ୟାପକଙ୍କର ରୋଜଗାର ମଧ୍ୟ ଆଖିଦୃଶିଆ ହୋଇପାରୁଛି । ଟିଉସନ୍ ପାଇଁ ନାଁ ଲେଖାର ଭିଡ଼ ଦେଖିଲା ଭଳି । ମଣ୍ଟୁ ୮ ଜଣ ଅଧ୍ୟାପକଙ୍କ ପାଖକୁ ଟିଉସନ୍ ହେବାପାଇଁ ଯାଏ । ବୁଝିବାରୁ ଜଣାଗଲା ଫିଜିକ୍ସ ପଢ଼ାଇବା ପାଇଁ ଜଣେ ଓ ଟେଷ୍ଟ ନେବାପାଇଁ ଜଣେ । ଏ ପ୍ରକାର କେମେଷ୍ଟ୍ରି ପାଇଁ ୨ ଜଣ ମ୍ୟାଥ୍‌ମେଟିକ୍ସ ପାଇଁ ୨ ଜଣ ଓ ବାୟୋଲୋଜି ପାଇଁ ଦୁଇଜଣ ଅଧ୍ୟାପକ ଅଛନ୍ତି । ମୋଟ ଆଠଜଣ ଅଧ୍ୟାପକଙ୍କର ମାସକୁ ଫିସ୍ ହେଲା ୮୦୦ ଟଙ୍କା । ମାତ୍ର କଲେଜରେ ମାସକୁ ଫିସ୍ ହେଉଛି ୨୦ ଟଙ୍କା । ଅଧ୍ୟାପକମାନେ କଲେଜରେ ସେହି ବିଷୟ ପଢ଼ାନ୍ତି ।

କଲେଜର ଗୋଟିଏ କ୍ଲାସ୍‌ରେ ୧୨୮ ଜଣ ପିଲା ରହୁଥିବାରୁ ଏବଂ ବର୍ଷକୁ ୨୦୦ ଦିନ ଛୁଟି ଥିବାରୁ ଭଲ ଭାବରେ ଅଧ୍ୟାପନା କରି ଛାତ୍ରମାନଙ୍କ ପ୍ରଶ୍ନର ସମାଧାନ ପାଇଁ ସମୟ ମିଳେନାହିଁ । ତାହାର ବିକଳ୍ପ ହେଉଛି ଟିଉସନ୍ । ଏହା ଅଧ୍ୟାପକଙ୍କୁ ଖୁସି କରିବା ସହିତ ଛାତ୍ରଛାତ୍ରୀ ଓ ଅଭିଭାବକମାନଙ୍କୁ ସନ୍ତୁଷ୍ଟ କରୁଛି । ତେବେ ପ୍ରଶ୍ନ ହେଉଛି କଲେଜଗୁଡ଼ିକରେ ବିଭିନ୍ନ ପ୍ରକାର ଉପକରଣ ସହିତ ଶ୍ରେଣୀ ଗୃହ ଆଦିର ବ୍ୟବସ୍ଥା ଥାଇ ସୁଦ୍ଧା କେବଳ ଶିକ୍ଷାଦାନ ପାଇଁ ପରିବେଶ ଓ ସମୟର ଅଭାବ କାରଣରୁ ସେହି ଛାତ୍ର ଏବଂ ସେହି ଅଧ୍ୟାପକ କଲେଜକୁ ପଢ଼ିବା ଓ ପଢ଼ାଇବା ପାଇଁ ନ ଆସି ନିଜ ନିଜ ଘରେ ଏ ପ୍ରକାର ଟିଉସନ୍‌ର ଆୟୋଜନ କରିଛନ୍ତି ଏବଂ ଛାତ୍ରଗଣ ଅଯଥାରେ ଜାଗାରୁ ଜାଗାକୁ ଦୌଡ଼ି ମୂଲ୍ୟବାନ ସମୟ ଓ ଶକ୍ତି ଅପଚୟ କରିବାରେ ଲାଗିଛନ୍ତି ।

ଆଶ୍ଚର୍ଯ୍ୟର କଥା କଲେଜମାନଙ୍କରେ ଏତେ ଛୁଟି ଥିଲେ ସୁଦ୍ଧା ଟିଉସନ୍ କ୍ଲାସ୍‌ରେ ଜମା ଛୁଟି ନାହିଁ । ଗ୍ରୀଷ୍ମଛୁଟି, ପୂଜା ଛୁଟି ଓ ରବିବାର ଇତ୍ୟାଦି ଟିଉସନ୍ କ୍ଲାସ୍ ପାଇଁ ଲାଗୁ ହୁଏନାହିଁ । ଅନ୍ୟ ପକ୍ଷରେ ଜଣେ ଅଧ୍ୟାପକ ଦିନକୁ ୩/୪ଟି କ୍ଲାସ୍ ନେବାର ସୀମା ନିର୍ଦ୍ଧାରଣ ହୋଇଥିଲେ ସୁଦ୍ଧା ଟିଉସନ୍ କ୍ଲାସ୍ ପାଇଁ ଦିନକୁ ୮ ଘଣ୍ଟା ଯାଏଁ ପରିଶ୍ରମ କରୁଛନ୍ତି ।

ଏ ପରିସ୍ଥିତିରେ ଏ କଥା ସ୍ପଷ୍ଟ ଯେ ଅଧ୍ୟାପକଗଣ ପଢାଇବା ପାଇଁ ପ୍ରସ୍ତୁତ । ଛାତ୍ରଛାତ୍ରୀଗଣ ପରିଶ୍ରମ କରିବା ପାଇଁ ଏବଂ ଅଭିଭାବକମାନେ ଖର୍ଚ୍ଚ ଭରଣା ପାଇଁ ପ୍ରସ୍ତୁତ । ଏହି ତିନିପକ୍ଷ ସହିତ ୪ର୍ଥ ପକ୍ଷ ଅର୍ଥାତ୍ ଶିକ୍ଷା ବିଭାଗ ଯଦି ଶିକ୍ଷାଦାନର ସୁଯୋଗ ସୃଷ୍ଟି କରିବା ପାଇଁ ପ୍ରସ୍ତୁତ ହୁଅନ୍ତେ ତେବେ ସମସ୍ତଙ୍କ ପାଇଁ ମଙ୍ଗଳ ହୁଅନ୍ତା । ରାଉରକେଲାରେ ଯେ କେବଳ ଏ ପ୍ରକାର ବ୍ୟବସ୍ଥା ଅଛି ତା ନୁହେଁ । ଓଡ଼ିଶାର ପ୍ରତ୍ୟେକ ସହରରେ ଏ ପ୍ରକାର ଦୃଶ୍ୟ ଦେଖାଯାଉଛି ।

ବିଜ୍ଞାନର ଛାତ୍ରମାନଙ୍କ ପରି କଳା ଓ ବାଣିଜ୍ୟର ଛାତ୍ରମାନେ ମଧ ଏହି ଟିଉସନ୍ ପନ୍ଥାରେ ଜ୍ଞାନ ଆହରଣ କରିବାକୁ ଉପଯୁକ୍ତ ମାଧମ ଭାବେ ଗ୍ରହଣ କରିଛନ୍ତି । କଲେଜ ଶିକ୍ଷା ପରି ସ୍କୁଲ ଶିକ୍ଷା ମଧ ଟିଉସନ୍ ପନ୍ଥାକୁ ଅନେକବର୍ଷ ହେଲା ଗ୍ରହଣ କରିସାରିଛି । ଆମ ଦେଶରେ ନିଃଶୁଳ୍କ ଶିକ୍ଷା ବ୍ୟବସ୍ଥା ପାଇଁ ଆମେମାନେ ଗର୍ବିତ । ମାତ୍ର ପ୍ରକୃତ ପକ୍ଷରେ ଶିକ୍ଷା ବ୍ୟବସ୍ଥା ଦିନକୁ ଦିନ ବ୍ୟୟ ବହୁଳ ହେବାରେ ଲାଗିଛି ।

ପୁଣିଥରେ ମଣ୍ଟୁ ପାଖକୁ ଫେରି ଆସନ୍ତୁ । ମଣ୍ଟୁର ପାଞ୍ଚ ସାତଜଣ ସାଥି ଅଛନ୍ତି । ସେମାନେ ବାଲ୍ୟାବସ୍ଥାରୁ ସାଥି ହେଉଥିବାରୁ ପରସ୍ପର ସହିତ ନିଗୁଢ ସମ୍ପର୍କ । ସଂଯୋଗକୁ ଏମାନେ ପ୍ରତ୍ୟେକ ଭଲ ଛାତ୍ର ହୋଇଥିବାରୁ ଏବଂ ସେମାନଙ୍କର ଅଭିଭାବକମାନେ ସଜାଗ ଥିବାରୁ ଏମାନେ ଲକ୍ଷ୍ୟଚ୍ୟୁତ ହେଉନାହାଁନ୍ତି । ରାଉରକେଲାରେ ମୋଟ ୬ଟି କଲେଜରେ ବିଜ୍ଞାନ ପଢାଯାଏ । ଏ ସମସ୍ତ କଲେଜର ଛାତ୍ରଛାତ୍ରୀମାନଙ୍କୁ ଏକତ୍ର କଲେ ପ୍ରାୟ ୫୦୦୦ ଜଣ +୨ ଶ୍ରେଣୀରେ ଏବଂ ଆଉ ୨୦୦୦ ଜଣ +୨ ପାସ୍ କରିଥିବା ଛାତ୍ରଛାତ୍ରୀ ଉପର ବର୍ଣ୍ଣିତ ଟିଉସନ୍ ବା କୋଚିଙ୍ଗ୍ ଗ୍ରହଣ କାର୍ଯ୍ୟରେ ଲାଗିଛନ୍ତି । ଏଣୁ ରାଉରକେଲା ସହରରେ ଅତିକମ୍‌ରେ ୭୦୦୦ ଜଣ ତରୁଣ ଓ ତରୁଣୀ ଦିନସାରା ସହର ତମାମ୍ ଦୌଡ଼ିବାରେ ଲାଗିଛନ୍ତି । ଏହି ଦୌଡ଼ରୁ ଅନ୍ୟ ଯାହା ଲାଭ ହେଉ ବା ନହେଉ ସେମାନଙ୍କ କଷ୍ଟ ସହିଷ୍ଣୁତା ଗୁଣ ବୃଦ୍ଧି ପାଇବାରେ ସାହାଯ୍ୟ ମିଳୁଛି ।

ଗତ କେତେବର୍ଷର ଫଳାଫଳରୁ ଦେଖାଯାଉଛି ଯେ, ଓଡ଼ିଶାର ମୋଟ ପ୍ରାୟ ୯୦୦ଟି ଇଞ୍ଜିନିୟରିଂ ସିଟ୍ ଭିତରୁ ଅର୍ଦ୍ଧାଧିକ ସ୍ଥାନ କେବଳ ରାଉରକେଲାର ଛାତ୍ରଛାତ୍ରୀ ହାସଲ କରୁଛନ୍ତି । ରାଉରକେଲା କୋଚିଙ୍ଗ୍‌ର ଏ ପ୍ରକାର ସୁନାମ ଫଳରେ ଆଖପାଖର ବିଭିନ୍ନ ସ୍ଥାନରୁ ଏବଂ ଓଡ଼ିଶାର ବିଭିନ୍ନ ଜିଲ୍ଲାରୁ ଆଶାୟୀ ଛାତ୍ରମାନେ ରାଉରକେଲା ଆସି ମେସ୍ କରି ରହୁଛନ୍ତି । ଶୁଣାଯାଏ ଏ ବର୍ଷଠାରୁ ଓଡ଼ିଶାର ସମସ୍ତ ଇଞ୍ଜିନିୟରିଂ କଲେଜରେ ସିଟ୍ ବୃଦ୍ଧି କରାଯାଇଛି । ତେଣୁ ଟିଉସନ୍ କ୍ଲାସ୍ ପାଇଁ ଭିଡ଼ ଲାଘବ ହେବାର ଆଶା ଅଛି ।

ମଣ୍ଟୁର ଇଞ୍ଜିନିୟର୍ ହେବାର ଅଭିଳାଷ କେବଳ ପରିଶ୍ରମ ଓ ଟିଉସନ୍‌ରେ ସୀମିତ ହେଉନାହିଁ । ପ୍ରତିଯୋଗିତାମୂଳକ ସମାଜରେ ଯଦି ଏନ୍‌ଟ୍ରାନ୍ସ ସିଟ୍ ନ ମିଳିଲା

ତେବେ ପ୍ରାଇଭେଟ୍ କଲେଜରେ ଡୋନେସନ୍ ଦେଇ ନାମ ଲେଖାଇବା ପାଇଁ ମଣ୍ଟୁର ବାପା ଏବେଠାରୁ ପ୍ରସ୍ତୁତ ହେଲେଣି । ଅନ୍ୟ ପ୍ରଦେଶ ଭଳି ଓଡ଼ିଶାରେ ମଧ୍ୟ ଡୋନେସନ୍ କଲେଜ ଖୋଲିଲାଣି । ପୂର୍ବରୁ ନାଗପୁର, ପୁନା, ବାଙ୍ଗାଲୋର ଆଦି ସ୍ଥାନରେ ୩୦,୦୦୦ରୁ ଏକ ଲକ୍ଷ ଯାଏ ଟଙ୍କା ନେଇ ନାମ ଲେଖାଇବାର ଦୃଷ୍ଟାନ୍ତ ଅନେକ ଅଛି । ପ୍ରଶ୍ନ ଉଠେ ଯେ, ପ୍ରତ୍ୟେକ ବର୍ଷ ଏକ ହଜାରରୁ ଊର୍ଦ୍ଧ୍ୱ ଇଞ୍ଜିନିୟରଙ୍କୁ କର୍ମଯୋଗାଣ ପାଇଁ ସରକାର ଓ ଆମ ସମାଜ ପ୍ରସ୍ତୁତ ଅଛିକି ? ଜଣେ ବୁଦ୍ଧିମାନ ଓ ପରିଶ୍ରମୀ ଶିକ୍ଷିତ ଯୁବକ ଯଦି ପଢା ଶେଷ କରି ନିରାଶ ହୋଇ ବେକାର ହୋଇଯାଏ, ସେତେବେଳେ ସେ ତା ନିଜ ସହିତ, ନିଜ ପରିବାର, ତାର ଚତୁଃପାର୍ଶ୍ୱ ଓ ସର୍ବୋପରି ତାର ସମାଜର ଏକ ବଡ଼ ସମସ୍ୟା ହୋଇ ଠିଆହୁଏ ।

*ଜେନ୍‌ସା, ସୁନ୍ଦରଗଡ଼*
*ନଭେମ୍ବର, ୧୯୯୭*



# ଜ୍ଞାନ ଏବଂ କୌଶଳ

ଜ୍ଞାନ ଆହରଣ ପାଇଁ ଅସଂଖ୍ୟ ଶାସ୍ତ୍ର ସୃଷ୍ଟି ହୋଇଛି । ଏହି ଶାସ୍ତ୍ରଗୁଡ଼ିକର ବ୍ୟାଖ୍ୟାନ ପାଇଁ ଅନେକ ଅନୁଷ୍ଠାନ ଗଢ଼ାଯାଇଛି। ଏହି ଅନୁଷ୍ଠାନମାନଙ୍କରେ ପ୍ରବେଶ କରି ଏବଂ ଶାସ୍ତ୍ରମାନଙ୍କର ଅଧ୍ୟୟନ କରି ବହୁ ସଂଖ୍ୟାରେ ଜ୍ଞାନୀ ସୃଷ୍ଟି ହୋଇଛନ୍ତି । ମାତ୍ର ଜ୍ଞାନୀ ବା ଏଜୁକେଟେଡ୍‌ମାନେ ନିଜ ଗୋଡ଼ରେ ଠିଆ ହୋଇପାରୁ ନାହାନ୍ତି । ଯାହା ଫଳରେ ଶିକ୍ଷିତ ବେକାର ବା ,ଏଜୁକେଟଡ୍ ଅନଏମ୍ପ୍ଲଏଡ୍ ବୋଲି ଏକ ଶ୍ରେଣୀ ସୃଷ୍ଟି ହୋଇଛି । ଅନ୍ୟ ବେକାରମାନଙ୍କ ଅପେକ୍ଷା ଶିକ୍ଷିତ ବେକାରମାନେ ଅଧିକ ପ୍ରଭାବୀ ହୋଇ ଠିଆ ହେଉଛନ୍ତି ଏବଂ ଏମାନଙ୍କ ପାଇଁ ସାରା ସମାଜ ଚିନ୍ତିତ ।

ଶାସ୍ତ୍ର ଅଧ୍ୟୟନ କିମ୍ବା ଅନୁଷ୍ଠାନରେ ପ୍ରବେଶ ନ କରି ଆଉ କେତେ ଲୋକ କୌଶଳ ବା କଉଶଳ ହାସଲ କରିବାରେ ଲାଗିଛନ୍ତି । ଏ ବିଦ୍ୟା ପିଢ଼ିରୁ ପିଢ଼ି, ଓସ୍ତାଦ ପାଖରୁ ଚେଲା ଏବଂ ଗୁରୁଙ୍କଠାରୁ ଶିଷ୍ୟ ପାଖକୁ ଜଳଧାର ତୁଲ୍ୟ ବର୍ଷାନୁକ୍ରମେ ଗଡ଼ି ଆସିଛି । ଏଥିପାଇଁ କୌଣସି ପ୍ରମାଣପତ୍ର ମିଳେ ନାହିଁ । ମାତ୍ର ଏ ବିଦ୍ୟାକୁ ହାସଲ କରିଥିବା ବ୍ୟକ୍ତି ଜୀବନ ସଂଗ୍ରାମରେ ବେଶ୍ ସଫଳ ହେଉଛନ୍ତି । ଜ୍ଞାନ ଓ କୌଶଳ ସଂଜ୍ଞାରେ ନାମିତ ଏହି ଦୁଇ ପ୍ରକାର ବିଦ୍ୟାକୁ ଆଉ ଟିକିଏ ଗଭୀର ଭାବରେ ଅନୁଧ୍ୟାନ କଲେ ଜଣାପଡ଼େ ଯେ କୌଶଳରେ ସଫଳତା ଜ୍ଞାନଠାରୁ ଅଧିକ ଚମତ୍କାର । ଏହି ଚମତ୍କାରିତାର କେତୋଟି ଉଦାହରଣ ନିମ୍ନରେ ଦିଆଯାଉଛି ।

### ନାକ ଭିତରୁ ଯୋକ କାଢ଼ିବା

ଗୋଟିଏ ଡାକ୍ତରଖାନା ଦୃଶ୍ୟ । ଜଣେ ନାସା-ଗଳା ବିଶେଷଜ୍ଞ ଅତି ବିବ୍ରତ ହୋଇ ପଡ଼ିଥିଲେ । ଜଣେ ଗ୍ରାମ୍ୟ ବ୍ୟକ୍ତିର ନାକ ଭିତରେ ଗୋଟିଏ ଯୋକ ପଶିଯାଇଛି । ଯୋକଟି ବଞ୍ଚିଥିବାରୁ ସଲସଲ କରୁଛି ଏବଂ ନାକର ଭିତର ଅଂଶକୁ ପଶିଯିବାର ଆଶଙ୍କା ହେଉଛି । ଏ ଅବସ୍ଥାରେ ନାକ ଭିତରୁ ଯୋକ କାଢ଼ିବା ପାଇଁ ସମସ୍ତ ପ୍ରଚେଷ୍ଟାରେ ଡାକ୍ତର ମହାଶୟ ଫେଲ୍

ମାରିଗଲେ । ଚିମୁଟାରେ ଟାଣିଲେ ଯୋକଟି ଖସି ଯାଉଛି । ସୁଁ ସୁଁ କରି ଛିଙ୍କିଲେ ତଳକୁ ପଡୁନାହିଁ । ଏସିଡ୍ ଢାଳି ମାରିବାକୁ ଚେଷ୍ଟା କଲେ ନାକ ଭିତର ପୋଡ଼ି ଯିବାର ଭୟ । ଶେଷରେ ଡାକ୍ତରବାବୁ ଠିକ୍ କଲେ ଛୋଟ ଏକ ଅପରେସନ୍ କରିବେ । ତେଣୁ 'ଓଟି' ରୁମକୁ ସଜାଡ଼ିବାକୁ ଲାଗିଗଲେ ।

ଏ ସମୟରେ ଡାକ୍ତରଖାନାର ଜଣେ ବୁଢ଼ା ସୁଇପର ଲଖନ କାରୁଆ ଏ ଦୃଶ୍ୟ ଦେଖି ମନେ ମନେ ହସୁଥାଏ । ଶେଷରେ ସେ ଡାକ୍ତରଙ୍କ ପାଖକୁ ଆସିଲା ଏବଂ କହିଲା, ''ସାର୍, କାହିଁକି ଏତେ ବ୍ୟସ୍ତ ହେଉଛନ୍ତି ? ଏ ଯୋକଟି ଦୁଇ ମିନିଟ୍‌ରେ ତଳକୁ ଖସି ଆସିବ । ଅପରେସନ୍ ଦରକାର ନାହିଁ । ବୁଢ଼ାର କଥା ଡାକ୍ତରଙ୍କୁ ଅବିଶ୍ୱାସ ଲାଗିଲା । ତେବେ କଥା ଶୁଣି ଟିକିଏ ସ୍ତବ୍ଧ ହୋଇଗଲେ ଏବଂ ପଚାରିଲେ - କ'ଣ କରିବ, କିପରି କରିବ, କୁହ । ମୋର ବିଶ୍ୱାସ ହେଲେ ସେପରି କରିବା ।

ଲଖନ କହିଲା, ଗୋଟିଏ ବଡ଼ ପାଣି ଟବ୍ ଆଣନ୍ତୁ ଏବଂ ଗୋଟିଏ ଖାଲି ମଗ୍ ଆଣନ୍ତୁ । ରୋଗୀର ନାକକୁ ପାଣିକୁ ଲଗାଇ ରଖନ୍ତୁ । ରୋଗୀର ନାକ ଉପରେ ଧୀରେ ଧୀରେ ପାଣି ଢାଳନ୍ତୁ ଯେପରି ପାଣିର ଧାର ଟବ୍ ଉପରେ ପଡ଼ିବ । ଦେଖିବେ ଯୋକଟି ପାଣି ଧାରରେ ଆପେ ଟବ୍ ଭିତରକୁ ଖସି ପଡ଼ିବ ।

ଡାକ୍ତରବାବୁଙ୍କ ବିଶ୍ୱାସ ହେଲା । ସେହି ପ୍ରକାର ଜିନିଷ ଯୋଗାଡ଼ କଲେ ଏବଂ ଫଳ ମଧ୍ୟ କହିବା ଅନୁସାରେ ଅତି ସହଜରେ ମିଳିଲା । ରୋଗୀର ମୁହଁରେ ହସ ଖେଳିଗଲା । ଡାକ୍ତରଙ୍କ ମୁହଁରେ କୃତଜ୍ଞତାର ଲେପ ଓ ଲଖନ କାରୁଆ ନିଜର ବୁଦ୍ଧିର କୌଶଳ ପାଇଁ ଉଲ୍ଲସିତ ।

ଏତେବଡ଼ ଆୟୋଜନ, ଅନାଗତ ଶରୀର କଷ୍ଟ, 'ଓଟି' ଜନିତ ଖର୍ଚ୍ଚ ଓ ହଇରାଣ ଇତ୍ୟାଦିରୁ ମୁକ୍ତି ମିଳିଲା । ସାଧାରଣ କୌଶଳ ପ୍ରୟୋଗର ଫଳ ନିମିତ୍ତ ସମସ୍ତେ ଆନନ୍ଦିତ ହୋଇ ଉଠିଲେ । ଲଖନ କହୁଥିଲା, 'ଏ ପ୍ରକାର ଯୋକ କଢ଼ା ସେ ଅନେକ ଥର କରିଛି ଏବଂ ଏ ବିଦ୍ୟା ସେ ବାପା ପାଖରୁ ଗାଁରେ ଥିବାବେଳେ ଶିଖିଥିଲା ।''

### କମ୍ପ୍ୟୁଟର ହିସାବଠାରୁ ମୁହଁ ହିସାବର କ୍ଷୀପ୍ରତା

ନିୟୋଜନ ସମ୍ବନ୍ଧୀୟ ଲେଖା ପରୀକ୍ଷା ହୋଇଥାଏ । କୋଡ଼ିଏଟି ପୋଷ୍ଟ ପାଇଁ ହଜାରରୁ ଊର୍ଦ୍ଧ୍ୱ ପରୀକ୍ଷାର୍ଥୀ । ପରୀକ୍ଷା ଖାତା ଗୋଟିଏ ପୃଷ୍ଠରେ ସୀମିତ ଏବଂ ପ୍ରଶ୍ନପତ୍ରର ମୋଟ ଏକଶହଟି ପ୍ରଶ୍ନ 'ଅନେକରୁ ଏକ' ଧାରାରେ ଲିଖିତ । ପ୍ରତ୍ୟେକ ଠିକ୍ ଉତ୍ତର ପାଇଁ ଗୋଟିଏ ନମ୍ବର ଥିବାବେଳେ ଗୋଟିଏ ଭୁଲ୍ ଉତ୍ତର ପାଇଁ ଗୋଟିଏ ମାଇନସ୍ ନମ୍ବର ଥିଲା । ବର୍ତ୍ତମାନ ଖାତାଗୁଡ଼ିକର ମୂଲ୍ୟାଙ୍କନ ପାଇଁ ଚିନ୍ତା ହେଉଥାଏ । ଏ କାମରେ ଅଧିକ ଲୋକ ନିଯୁକ୍ତ ହେଲେ ଗୁପ୍ତ ତଥ୍ୟ ଜଣା ପଡ଼ିଯିବ । ଜଣେ ଲୋକ ଦ୍ୱାରା ସମସ୍ତ କାର୍ଯ୍ୟ ଅଳ୍ପ ସମୟ

ଭିତରେ ସମ୍ଭବ ନୁହେଁ । ମୋଟ୍ ୮/୧୦ ଘଣ୍ଟା ଲାଗିବ । ଏ ପରିସ୍ଥିତିରେ କମ୍ପ୍ୟୁଟର ପ୍ରୟୋଗ ପାଇଁ ପ୍ରସ୍ତାବ ଆସିଲା । ସେଥିରେ ମଧ ଦେଖାଗଲା ଯେ, ମୋଟ୍ ୮/୧୦ ଘଣ୍ଟା ସମୟ ଲାଗିବ । ସବୁ ଖାତାର ଫଳାଫଳକୁ ଗୋଟିଏ ଗୋଟିଏ ପ୍ରିଣ୍ଟ କରିବାକୁ ପଡ଼ିବ ଏବଂ ପ୍ରତି ଖାତାର ମୋଟ୍ ଫଳ ଏକାଠି କରି ଲେଖିବାକୁ ପଡ଼ିବ ।

ଏହି ସମୟରେ ଅଫିସ୍‌ର ଜଣେ ପୁରୁଣା କର୍ମଚାରୀ ପଣ୍ଡାବାବୁ କହିଲେ, 'ମୋ କଥା ଟିକିଏ ଶୁଣିବେ କି ? ଏ ଯେଉଁ କାମ ପାଇଁ ଆପଣମାନେ ଚିନ୍ତିତ, ଏହା ମାତ୍ର ୧ ଘଣ୍ଟା ସମୟ ଲାଗିବ ଏବଂ ଜଣେ ଲୋକର କାମ । ଏ ପ୍ରସ୍ତାବ ଶୁଣି ସମସ୍ତେ ଆଚମ୍ବିତ ହୋଇଗଲେ । ଏଥିରେ ଫର୍ମୁଲା କ'ଣ ଜାଣିବାକୁ ସମସ୍ତେ ଉତ୍କଣ୍ଠିତ ହୋଇପଡ଼ିଲେ । ଜଣାଗଲା ଯେ ଉତ୍ତରଖାତାର ସମସ୍ତ ଉତ୍ତର ଗୋଟିଏ ପୃଷ୍ଠାରେ ଲିଖିତ ଏବଂ ଗୋଟିଏ ଉତ୍ତର କାଗଜକୁ ଗୋଟିଏ ପ୍ଲାଷ୍ଟିକ୍ ପ୍ଲେଟ୍‌ରେ ରଖାଯାଇ କେବଳ ଠିକ୍ ଥିବା ଉତ୍ତର ଘରକୁ ଖୋଲା ରଖି ଯଦି ବାକି ପ୍ଲେଟକୁ ଗାଢ଼ ରଙ୍ଗ ଦ୍ୱାରା ଆଚ୍ଛାଦିତ କରାଯାଏ, ତେବେ ଖାଲିଥିବା ପ୍ଲେଟତଳେ ଲିଖିତ ଉତ୍ତର ମିଳିଲେ ଏବଂ ଠିକ୍ ଥିଲେ ଏହି ଉତ୍ତରକୁ ଗଣତି କରାଯାଏ ଏବଂ ସମସ୍ତ ଉତ୍ତରକୁ ଦେଖିବା ପରେ ଗଣନ କଲେ ପ୍ରତ୍ୟେକ ଖାତାର ମୋଟ ମାର୍କ ମଧ ଜଣାପଡ଼ିଯାଏ । ଏହି ପ୍ରଣାଳୀରେ ଗୋଟିଏ ଉତ୍ତର ଖାତାକୁ ୫ ସେକେଣ୍ଡ ଲାଗିଲେ ମିନିଟ୍‌କୁ ୧୨ଟି ଲେଖାଏଁ ପୃଷ୍ଠାକୁ ଏବଂ ଘଣ୍ଟାକୁ ୧୨X୬୦ = ୭୨୦ ଖଣ୍ଡ ଅର୍ଥାତ୍ ଦେଢ ଘଣ୍ଟାରେ ସମସ୍ତ ଏକହଜାର ଖଣ୍ଡ ଉତ୍ତର ଖାତା ଯାଞ୍ଚ କରାଯାଇ ପାରିବ ।

ପ୍ରସ୍ତାବର ବର୍ଣ୍ଣନା ସମସ୍ତଙ୍କ ମନକୁ ଆସିଲା । ସେହି ଅନୁସାରେ ପ୍ଲାଷ୍ଟିକ୍ ପ୍ଲେଟ୍ ତିଆରି କରାଗଲା । ଜଣେ ପରୀକ୍ଷକ ଖାତାଗୁଡ଼ିକ ଯାଞ୍ଚ କରି ଶେଷ କଲେ ଏବଂ ନିର୍ଦ୍ଧାରିତ ସମୟରେ କାର୍ଯ୍ୟ ସମ୍ପାଦିତ ହେଲା । ଏହା ହେଉଛି କୌଶଳର ଅନ୍ୟ ଏକ ଉଦାହରଣ ।

**ବିରାଟ ଶିଳାଖଣ୍ଡକୁ ଭାଙ୍ଗିବା**

ରାସ୍ତା ତିଆରି କାର୍ଯ୍ୟ ଯୋରସୋରରେ ଆଗେଇ ଚାଲିଛି । ରାସ୍ତା ମଝିରେ ବଡ଼ ବଡ଼ ପଥର ଖଣ୍ଡ ହାତୀ ଆକାରରେ ଜମା ହୋଇ ରହିଛି । ଠିକାଦାରଙ୍କ ପାଇଁ ନିର୍ଦ୍ଦିଷ୍ଟ ସମୟ ନିର୍ଘଣ୍ଟ । ଏତେ ବଡ଼ ଶିଳାଖଣ୍ଡଗୁଡ଼ିକୁ ଭାଙ୍ଗିବାକୁ ପଡ଼ିବ । ଦୁର୍ଯୋଗକୁ ଏହି ସମୟରେ ବ୍ଲାଷ୍ଟିଂ କରିବାକୁ ଆବଶ୍ୟକ ବିସ୍ଫୋରକ ଦ୍ରବ୍ୟ ଏବଂ ବିସ୍ଫୋରକ କର୍ତ୍ତାଙ୍କର ଘୋର ଅଭାବ । ଇଂଜିନିୟର ମହାଶୟ ଚିତ୍କାର କରି ଚାଲିଛନ୍ତି । ବ୍ୟସ୍ତ ହୋଇ ଗୋଡ଼ କଚାଡୁଛନ୍ତି ଏବଂ ସମସ୍ତ ରାଗ-କନିଷ୍ଠ ଇଞ୍ଜିନିୟରଙ୍କ ଉପରେ ଝାଡୁଛନ୍ତି । ରାସ୍ତା ନିର୍ମାଣ ଯେକୌଣସି ଉପାୟରେ ଶେଷ କରିବାକୁ ହେବ । ଏ ସବୁ ଦୃଶ୍ୟ ହରି ଗୁମାସ୍ତା ଦେଖୁଥିଲେ । ସେ କହିଲେ, 'ଆଜ୍ଞା ବ୍ୟସ୍ତ ହୁଅନ୍ତୁ ନାହିଁ । କାମଟି ମୋ ଉପରେ ଛାଡ଼ି ଦିଅନ୍ତୁ । ଆଜି ଶନିବାର, ଆସନ୍ତା ସୋମବାର ସକାଳୁ ପଥର ସବୁ ଭାଙ୍ଗି ଚୂନା ହୋଇଯିବ । ବିସ୍ଫୋରକ ଦ୍ରବ୍ୟର ଆବଶ୍ୟକତା ନାହିଁ । ଅନ୍ୟ କିଛି ଉପାୟ ନଥିଲା । ତେଣୁ ସମସ୍ତେ ତାଙ୍କ ପ୍ରସ୍ତାବରେ ହଁ ଭରିଲେ ।

ସେହି ସମୟରୁ ଗୁମାସ୍ତାଏ ଶୁଖିଲା ମୋଟା ଗଡ଼ କାଠ ଯୋଗାଡ଼ ଆରମ୍ଭ କରିଦେଲେ । ତା ଉପରେ ଶୁଖିଲା ତାଳପତ୍ର ଓ ସବା ଉପରେ କୁଟା ଥାକ କରି ସଜାଇ ଦେଲେ । ଶନିବାର ସନ୍ଧ୍ୟାରେ କାଠରେ ନିଆଁ ଲାଗିଗଲା । ରାତି ସାରା ନିଆଁ ଜଳିଲା । ରବିବାର ଦିନ ପାଣି ବୁହାହୋଇ ରଖାଗଲା । ଦଶଟି ଡ୍ରମ୍‌ରେ ପାଣି ଭର୍ତ୍ତି କରି ୨୦ ଜଣ ଲୋକ ବାଲ୍ଟି ଧରି ପ୍ରସ୍ତୁତ ରହିଲେ । ସନ୍ଧ୍ୟା ବେଳକୁ ହରିବାବୁ ନିର୍ଦ୍ଦେଶ ଦେଲେ ପାଣି ଢାଳ । ଏକ ସଂଗରେ ବାଲ୍ଟି ବାଲ୍ଟି କରି ୧୦୦ ବାଲ୍ଟି ପାଣି ଢଳା ଗଲା । ନିଆଁ ଲିଭିଗଲା । ଶେଷ ଅବସ୍ଥାକୁ 'କୁଡୁକ୍' 'କୁଡୁକ୍' ହୋଇ ତିନି ଚାରି ଥର ଶବ୍ଦ ଶୁଣାଗଲା । ପଥରଗୁଡ଼ିକ ଫାଳ ଫାଳ ହୋଇ ଫାଟିଗଲା । ରବିବାର ରାତି ସାରା ଥଣ୍ଡା ହେବାକୁ ଛାଡ଼ି ଦିଆଗଲା ।

ସୋମବାର ଦିନ ଠିକାଦାର ବାବୁ ଆସିଲେ । ଇଞ୍ଜିନିୟର ଆସିଲେ । ପରିବର୍ତ୍ତିତ ଦୃଶ୍ୟ ଦେଖି ସେମାନଙ୍କର ଆଖି ଖୋସି ହୋଇଗଲା । କଉଶଳର ଏ ଚମତ୍କାର ପାଇଁ ହରିବାବୁଙ୍କୁ ଯଥାଯୋଗ୍ୟ ପୁରସ୍କାର ମିଳିଲା ।

ପରିଶେଷରେ ପାଠକମାନଙ୍କୁ ଅନୁରୋଧ ଯେ ଚତୁଃପାର୍ଶ୍ୱରେ ଏ ପ୍ରକାର କଉଶଳପୂର୍ଣ୍ଣ କାର୍ଯ୍ୟଗୁଡ଼ିକୁ ଲକ୍ଷ୍ୟ କରନ୍ତୁ ଏବଂ ଶିକ୍ଷାଲାଭ କରନ୍ତୁ ।



# ଅନ୍ଧୁଣୀର ସ୍ୱର

ଶୀତୁଆ ସକାଳ, ଚାରିଆଡ଼େ କୁହୁଡ଼ି ଆଛନ୍ନ । ହାବଡ଼ା ରେଳ ଷ୍ଟେସନ୍‌ରୁ ନିର୍ଦ୍ଧାରିତ ସମୟରେ ଧଉଳି ଏକ୍ସପ୍ରେସ୍ ଛାଡ଼ି ଦେଇଛି ।

ଟ୍ରେନ୍‌ରେ ଆଜି ଭାରି ଭିଡ଼ । ରିଜର୍ଭେସନ୍ କମ୍ପାର୍ଟମେଣ୍ଟରେ ଜାଗା ନାହିଁ । ସାଧାରଣ ବଗିରେ ବସିବା ଲୋକ ଯେତିକି, ଠିଆ ହେବା ଲୋକ ସେତିକି, ସିଟ୍ ଖଣ୍ଡିଏ ପାଇବା ପାଇଁ ରେଳବାଇ କୁଲିକୁ ହାତଗୁଞ୍ଜା ୨୦ଟଙ୍କା ଦେବାକୁ ପଡ଼ିଲା । ଶୀତ ଛୁଟି କଟାଇବା ପାଇଁ ପୁରୀ ଯାତ୍ରୀଙ୍କର ସଂଖ୍ୟା ଅଧିକ । ତା ସହିତ ରବିବାର ଥିବାରୁ, ଭିଡ଼ ଆଉ ଟିକିଏ ବଢ଼ିଯାଇଛି । ଭିଡ଼ ଭିତରେ କାହା ବ୍ୟାଗ୍ କାହା ମୁଣ୍ଡରେ ବାଜିଯାଇଛି ତ କାହା ପାଦ ଉପରେ କିଏ ଠିଆ ହୋଇଗଲାଣି । ଗାଡ଼ି ଠିଆ ହୋଇଥିବା ସମୟର ଭିଡ଼ ଗାଡ଼ି ଚାଲିବା ପରେ ହାଲୁକା ହୋଇଗଲା ।

କେତେ ଜଣ ଅନ୍ୟକୁ ଛାଡ଼ିବାକୁ ଆସି ଫେରିଗଲେ । କିଏ କାହା ପାଖରେ କୁହାବୋଲା କରି ଗେଞ୍ଜି ଗେଞ୍ଜି ହୋଇ ବସିଗଲେ । ଗାଡ଼ି ଚାଲିବା ପରେ କିଏ ଖବରକାଗଜ ବାହାର କରୁଛି ତ କିଏ ଜଳଖିଆ ପୁଡ଼ିଆ ଖୋଲୁଛି । କଥାବାର୍ତ୍ତା, ଡକାଡକି, ହସ ପାଟି ଦ୍ୱାରା ବଗିସାରା ଚହଳ ଲାଗିଥାଏ । ବୁଲା ବିକାଳୀମାନେ ତାରି ଭିତରେ ଭିଡ଼କାଟି ଏ ପାଖରୁ ସେ ପାଖକୁ ଆରାମରେ ଯିବା ଆସିବା କରୁଥାନ୍ତି । ଏକେ ତ ସବୁଦିନର ଅଭ୍ୟାସ ଦ୍ୱିତୀୟରେ ଯାତ୍ରା ଅଧିକ ଥିବାରୁ ବିକ୍ରି ମଧ ଅଧିକ ହେଉଥାଏ ।

ସାଧାରଣ ବଗିରେ ଯାତ୍ରା କରୁଥିବା ବେଳେ ଏହି ପ୍ରକାର ଜନଜୀବନର ଯେଉଁ ସାମୟିକ ଦୃଶ୍ୟ ଦେଖିବାକୁ ମିଳେ ଏହା ଅନ୍ୟତ୍ର ବିରଳ । ଜନ ସମୁଦ୍ରରେ ସ୍ନାନଭଳି ଏକ ଅହେତୁକ ଅନୁଭବ । ବନ୍ଦ ଗାଡ଼ି ଭିତରଟି ଆଲୋକ ଓ ପବନର ଧାରା ମଧ୍ୟରେ ଗୋଟିଏ ଚଳନ୍ତି ମେଳା । ଟ୍ରେନ୍ ଭଳି ଜଳଜାହାଜ ବୋଧେ ଏ ପ୍ରକାର ଅନୁଭବ ଦେଇ ପାରିବ । ଧଉଳି ଏକ୍ସପ୍ରେସ୍ ସୁପରଫାଷ୍ଟ ଟ୍ରେନ୍ ହୋଇଥିବାରୁ ବଗିର ଭିତରପାଖ ପରିଚ୍ଛନ୍ନ ମଧ ରହିଛି । ଯାତ୍ରୀଗଣ ସମସ୍ତେ ପ୍ରାୟ ମଧ୍ୟବିତ୍ତ ଶ୍ରେଣୀ ଅନ୍ତର୍ଭୁକ୍ତ ଥିବାରୁ ପରିବେଶ ବେଶ ରୁଚିକର ।

ଏହି ସମୟରେ ଲେଖକ ବସିଥିବା ସିଟ୍‌ର ପଛପାଖ କବାଟ ଆଡୁ ହାରମୋନିୟମର ସୁର ବାଜି ଉଠିଲା । ଯନ୍ତ୍ର ସଙ୍ଗୀତର ସୁର ସହିତ ତାଳ ଦେଇ ଗଳାସଫା କରି ଗୀତର ଧାଡ଼ିଟିଏ ଶୁଣାଗଲା । ଗୀତଟି ଦୁଇଜଣଙ୍କର ମିଳିତ ସ୍ୱରରେ ଶୁଭୁଥାଏ । ଜଣେ ମହିଳାଙ୍କ ସ୍ୱର ଓ ଅନ୍ୟଟି ଜଣେ ଛୋଟ ପିଲାର । ଗାଡ଼ି ଭିତରେ ଗାୟିକାର ସ୍ୱର ଶୁଭୁଥାଏ ସିନା ରୂପ ଦିଶୁନଥାଏ । କ୍ରମେ

ସୁରର ଧାରା ବଢ଼ିବାକୁ ଲାଗିଲା । ଗୀତରେ ସାନ୍ଦ୍ରତା ବୃଦ୍ଧି ହେଲା । ପ୍ରାୟ ଅଧ ମିନିଟ୍ ପରେ ସମସ୍ତ ଯାତ୍ରୀଙ୍କର କାନ ସେଇ ଗୀତର ସୁର ଆଡ଼କୁ ଟାଣି ହୋଇଗଲା । ପରସ୍ପର କଥାବାର୍ତ୍ତା ବନ୍ଦ ହୋଇଗଲା । ସତେ ଅବା ମନ୍ତ୍ରମୁଗ୍ଧ ହୋଇଗଲେ ।

ଗାୟିକା ଆଗକୁ ପାଦ ବଢ଼ାଇ ଚାଲି ଆସୁଥାଏ । ପରେ ଦେଖିବାକୁ ମିଳିଲା, ଗାୟିକା ଜଣେ ମଧ୍ୟବୟସୀ ଗ୍ରାମ୍ୟ ମହିଳା । ବେଶଭୂଷା ପରିଚ୍ଛନ୍ନ ମାତ୍ର ଆଡମ୍ବର ନାହିଁ । ସାଜସଜ୍ଜା ରୁଚିକର ମାତ୍ର ଦେଖାଇବାର ଭାବ ନାହିଁ । ଗୀତ ବୋଲିବା ସଙ୍ଗେ ସଙ୍ଗେ କାନ୍ଧରୁ ଝୁଲିଥିବା ହାରମୋନିୟମଟିରୁ ସଙ୍ଗୀତର ମୂର୍ଚ୍ଛନା ଉଠୁଥାଏ । ୧୦-୧୧ ବର୍ଷର ଝିଅଟିଏ ସାଙ୍ଗରେ ଥାଏ । ବୋଧେ ଗାୟିକାର ଝିଅ । ସେ ମାଆ ସଂଗୀତକୁ ପାଳି ଧରିବା ସହିତ ଦୁଇ ପାଖରେ ବସିଥିବା ଯାତ୍ରୀମାନଙ୍କ ପାଖରୁ ଦାନ ସଂଗ୍ରହ କରୁଥାଏ । ଲକ୍ଷ୍ୟକରି ଦେଖାଗଲା ଆମ ବେଞ୍ଚରେ ଏବଂ ସାମ୍ନା ବେଞ୍ଚରେ ବସିଥିବା ମୋଟ ୮ ଜଣ ଯାତ୍ରୀ ପ୍ରତ୍ୟେକ କିଛି ନା କିଛି ସେ ଝିଅଟିର ହାତରେ ଦେଲେ । ଗୀତକୁ ତନ୍ମୟ ହୋଇ ଶୁଣିବା ଏବଂ ଝିଅକୁ ନିଶ୍ଚିତ ଭାବେ ଦାନ ଦେବାକୁ ଲକ୍ଷ୍ୟକରି ବିଶ୍ୱାସ ହେଲା ଯେ ଏ ଗୀତର ସ୍ୱର କେବଳ ଲେଖକଙ୍କୁ ନୁହେଁ ବଗିର ଅନ୍ୟ ସମସ୍ତ ଯାତ୍ରୀଙ୍କୁ ମୁଗ୍ଧ କରିଛି ଏବଂ ହୃଦୟରେ ସହାନୁଭୂତି ଜନ୍ମାଇ ପାରିଛି ।

ଗାୟିକା ବଗିର ମଝି ଭାଗରେ ଗୀତ ଗାଇ ଗାଇ ଆଗକୁ ବଢ଼ି ଚାଲିଥାଏ । ଗୋଟିଏ ଗୀତ ଶେଷ ହେବା ପରେ ଆଉ ଗୋଟିଏ । ଦୂରକୁ ଆଗେଇଯିବା ପରେ ଗୀତର ସ୍ୱର କ୍ଷୀଣ ହେବାକୁ ଲାଗିଲା । ଏହି ସମୟରେ ଆଗରୁ ତା ଗୀତ ଶୁଣିଥିବା ଜଣେ ଯାତ୍ରୀ କହି ଉଠିଲେ, 'ବିଚାରୀ ଅନ୍ଧୁଣୀ, ଗୋଟିଏ ସାଧାରଣ ଗୃହିଣୀ । ପିଲାଦିନ ଖେଳକୁଦର ସଂସାର ଭିତରେ କେବେ ଖୁଦୁରୁକୁଣୀ ପୂଜା ଗୀତ, ପୁଚିଖେଳ ବା ଦୋଳି ଗୀତ ବୋଲିବା ଶିଖିଥିବ । ବିବାହ କରି ବୋହୂ ହେବା ପରେ ମାଣବସା ଗୀତ, ସାବିତ୍ରୀ ବ୍ରତ ଗୀତ ସୁର କରି ବୋଲିଥିବ । ହଠାତ୍ କୌଣସି ଏକ ରୋଗରେ ପଡ଼ି ସ୍ତ୍ରୀ ଲୋକଟିଏ ତା'ର ଦୃଷ୍ଟି ଶକ୍ତି ହରାଇ ବସିଛି । ସେହି ସମୟକୁ ତା'ର ତିନୋଟି ପିଲା ଓ ତିନୋଟି ଯାକ ଝିଅ । ଶାଶୁଘରୁ ତାକୁ ଅଲକ୍ଷଣୀ, ହତଭାଗୀ କହି ଘରୁ ବାହାର କରିଦେଇଛନ୍ତି । ହତାଦରରେ ଓ ଗାଳି ମାଡ଼ ସହି ନିଜ ବାପ ଘରକୁ ଚାଲି ଆସି ନିଜ ଭାଗ୍ୟକୁ ଆଦରି ରହିଥିବା ବେଳେ ଜଣେ ସାଧୁବାବାଙ୍କ ସଂଗରେ ଭଜନ ଗାଇବାର ସୁଯୋଗ ପାଇଛି । ତା ଭଜନ ଗାଇବାରେ ମୁଗ୍ଧ ହୋଇ ଅନ୍ୟମାନେ ବହୁ ପ୍ରଶଂସା କରନ୍ତି । ତା'ପରେ ଅନ୍ୟମାନେ ତାକୁ ଗୀତ ଭଲଭାବେ ଶିଖିବାକୁ ହାରମୋନିୟମ ବଜାଇବାକୁ କହିଛନ୍ତି ଓ ସେ ଶିଖିଛି । ଭଲଭାବେ ଗୀତ ଓ ବାଜା ବଜାଇବା ଶିଖିବା ପରେ ସେହି କଳାକୁ ସାହାରା କରି ସେ ପେଟ ପୋଷିବାକୁ ଆରମ୍ଭ କରିଛି ଓ ରାଜରାସ୍ତାକୁ ଓହ୍ଲାଇ ଆସିଛି । ଲୋକ ଗହଳୀର ସ୍ଥଳୀ ହିସାବରେ ରେଳଗାଡ଼ିର ବଗିକୁ ସେ ନିଜର କଳାପ୍ରଦର୍ଶନର କ୍ଷେତ୍ର ହିସାବରେ ବାଛି ନେଇଛି । ନିଜର ଛୋଟ ଝିଅକୁ ଓ ହାରମୋନିୟମ ଧରି ଦିନ ପରେ ଦିନ ସକାଳୁ ସଂଜଯାଏ କରୁଣ ରାଗିଣୀର ଭଜନ, ଜଣାଣ ଗାଇ ଚାଲିଛି ଏବଂ ଆମ ଭଳି ଅସଂଖ୍ୟ ଯାତ୍ରୀ ଗଣକୁ ମୁଗ୍ଧ କରି ଚାଲିଛି ଏଇ ଅନ୍ଧୁଣୀର ସ୍ୱର ।

◆◆◆

# ବନ୍ଧୁ ଘର ଖୋଜା

ବନ୍ଧୁତା ଅନାବିଳ ସ୍ନେହ ସମ୍ପର୍କର ନିଦର୍ଶନ । ଜଣେ ବନ୍ଧୁର ସାହଚର୍ଯ୍ୟ ପାଇବା ପାଇଁ, ବନ୍ଧୁର ଦୁଃଖରେ ସମବେଦନା ଜଣାଇବା ପାଇଁ, କିମ୍ବା ସୁଖରେ ସହଭାଗୀ ହେବା ପାଇଁ ମନ ଆକୁଳ ହୋଇଉଠିବା ସ୍ୱାଭାବିକ । ଏହିପରି ଏକ ବନ୍ଧୁଙ୍କୁ ସାକ୍ଷାତ କରିବା ପାଇଁ ବିଶେଷ ଭାବେ ବନ୍ଧୁଙ୍କର ଦୁଃଖ ସମୟରେ ସହଭାଗୀ ହେବା ଲାଗି ଆକୁଳ ମନରେ ନିଷ୍ଠାର ସହିତ ଯେଉଁ ଉଦ୍ୟମ ହୋଇଥିଲା ତା'ର ଚିତ୍ର ତଳେ ଦିଆଗଲା । ଏ ଚିତ୍ରରେ ଆଧୁନିକ ସହର ଜୀବନର କେତୋଟି ଦିଗ ପ୍ରତି ପାଠକମାନେ ଧ୍ୟାନ ଦେବାକୁ ଅନୁରୋଧ ।

ବନ୍ଧୁ ଜଣକ ଖୁବ୍ ଘନିଷ୍ଠ ପରିଚୟ ହେବା ଦିନରୁ ପରସ୍ପରକୁ ପସନ୍ଦ କରି ଆସିଛୁ । ଗତ ୫ ବର୍ଷ ସମୟ କ୍ରମରେ ଆମ ଭିତରେ ଅନେକ ସୁଖ ଦୁଃଖର ବଣ୍ଟା ବଣ୍ଟି ହୋଇଯାଇଛି । ହଠାତ୍ ଖବର ମିଳିଲା ବନ୍ଧୁ ନିଜର କାର୍ଯ୍ୟକ୍ଷେତ୍ର ଛାଡ଼ି ଭୁବନେଶ୍ୱର ଯାଇଛନ୍ତି । ଉଭୟ ବନ୍ଧୁ ଓ ବନ୍ଧୁ ପତ୍ନୀ ନିଜର ଛୋଟ ଝିଅକୁ ଧରି ଜରୁରୀ ଖବର ପାଇ ଅନ୍ୟ ସମସ୍ତ କାମ ଛାଡ଼ି ଭୁବନେଶ୍ୱର ବାହାରି ଗଲେ ଏ ସମ୍ବାଦ ମିଳିଲା ଯେତେବେଳେ ଆମେମାନେ ନିକଟସ୍ଥ ଅନ୍ୟ ଏକ ନଗରୀରେ ସେମାନଙ୍କ ପାଇଁ ଅପେକ୍ଷାରତ ଥିଲୁ ।

ପରେ ଜଣାପଡ଼ିଲା ଯେ ବନ୍ଧୁଙ୍କର ପୁଅର (ଏକମାତ୍ର ଏବଂ ପ୍ରଥମ ସନ୍ତାନ ବୟସ ୧୦ ବର୍ଷ) ଦେହ ବହୁତ ଖରାପ । ଭୀଷଣ ଜ୍ୱର ତାତି ୧୦୫ ଡିଗ୍ରିକୁ ଉଠିଯାଇଛି । ପୁଅ ରହୁଥାଏ ବନ୍ଧୁଙ୍କର ବଡ଼ଭାଇ ଓ ଭାଉଜଙ୍କ ପାଖରେ, ଭୁବନେଶ୍ୱରର ଶହୀଦ ନଗର ଅଞ୍ଚଳରେ ପ୍ରାୟ ୧୦ ଦିନ ପରେ ଖବର ମିଳିଲା ବନ୍ଧୁ ତାଙ୍କର ଛୁଟି ବଢ଼ାଇଛନ୍ତି । ଅର୍ଥାତ୍ ୭ ଦିନ ପରେ କାର୍ଯ୍ୟକ୍ଷେତ୍ରକୁ ନ ଫେରିବାରୁ ଦରଖାସ୍ତ ଅଧିକ ଛୁଟି ପାଇଁ ଲେଖି ଜଣାଇଛନ୍ତି । ଦ୍ୱିତୀୟ ଖବର ହେଲା ତାଙ୍କ ପୁଅର ଦେହ ଆଗଭଳି ଏବେଯାଏଁ ଅସୁସ୍ଥ ଅଛି ।

ଏ ଖବର ଶୁଣିବା ପରେ ମନରେ ଅଧିକ ଦୁଃଖ ଆସିଲା । ସ୍ୱତଃ ମନେହେଲା ଏବେ ଚାଲିଯାଆନ୍ତି କି ? ବନ୍ଧୁଙ୍କର ପାଖରେ ଠିଆ ହୋଇ ତାଙ୍କ ପୁଅର ମୁଣ୍ଡରେ ହାତ ବୁଲାଇ ଆଣନ୍ତି । ପିଲାର ମୁଣ୍ଡରେ ପାଣି ପଟି ରଖନ୍ତି ଓ ବନ୍ଧୁଙ୍କୁ କୁହନ୍ତି ଯାଅ ଯାଅ ତୁମେ ଟିକେ ବିଶ୍ରାମ କର । ରାତି ସାରା ଟିକେ ହେଲେ ଶୋଇପାରିନ । ବନ୍ଧୁଙ୍କର ଦୁଃଖଭରା ମୁହଁଟି ଦିଶିଯାଉଥାଏ । ବନ୍ଧୁପତ୍ନୀଙ୍କର ହସ ହସ ମୁହଁ ବଦଳରେ କାନ୍ଦ କାନ୍ଦ ମୁହଁ ଦିଶୁଥାଏ ।

ତା'ପରଦିନ ଭୁବନେଶ୍ୱର ଯିବାର ଯୋଜନା ତିଆରି ହେଲା । ଘରୁ ଶ୍ରୀମତୀ ମଧ୍ୟ ବାହାରୁଥିଲେ । ତେବେ ପିଲାଙ୍କର ସ୍କୁଲ୍ ପାଠପଢ଼ା, ଘରର ଅନ୍ୟାନ୍ୟ କାମ ଛାଡ଼ି ଯିବା ପାଇଁ ତାଙ୍କ ଯିବା ସମ୍ଭବ ହେଲା ନାହିଁ । ଯିବା ଆଗରୁ ଭୁବନେଶ୍ୱରରେ ଅନ୍ୟାନ୍ୟ କାମ ସହିତ କାମ ତାଲିକାରେ ପ୍ରଥମ ନମ୍ବର ହେଲା ବନ୍ଧୁଙ୍କୁ ଭେଟିବା । କିନ୍ତୁ ଭୁବନେଶ୍ୱରର ଶହୀଦ୍ ନଗରର ସ୍ଥାନ ଛଡ଼ା ବନ୍ଧୁଙ୍କ ଘର ନମ୍ବର, ବାପାଙ୍କ ନାଁ, ଘରର ଅବସ୍ଥିତି କିଛି ଜଣା ନଥିଲା । ମନରେ ଦମ୍ଭ ଓ ଆଶାକୁ ପାଥେୟ କରି କ'ଣ କରିବା, କିମିତି ଘର ପାଇବା ଭାବୁ ଭାବୁ ବସ ଆସି ଭୁବନେଶ୍ୱରରେ ପହଞ୍ଚିଗଲା ।

ଘର ଜଣା ନଥିବାରୁ ପ୍ରଥମେ ଗୋଟିଏ ହୋଟେଲ୍‌କୁ ଯାଇ ସକାଳର ନିତ୍ୟକର୍ମ ଶେଷ କରି ପଦାକୁ ବାହାରି ଆରମ୍ଭ ହେଲା ବନ୍ଧୁଙ୍କ ଘର ଖୋଜା । ଏ ଉଦ୍ୟମରେ ପ୍ରଥମେ ଭେଟ ହେଲା ଛକର ପାନ ଦୋକାନୀ ସହିତ । ପ୍ରଶ୍ନର ଉତ୍ତର ଦେଇ କହିଲେ, ''ଦାସବାବୁ ? ବହୁତ ଦାସ ଅଛନ୍ତି ।'' ମାର୍କେଟ ପାଖରେ ଘର ? ମାର୍କେଟ ଓ ରାସ୍ତାର ଦୁଇ ପାଖେ ଲାଗିଛି । ପୁରୀର ଲୋକ ? ଦେଖନ୍ତୁ ଏଇ ପଛ ପାଖ କୋଠାରେ ପୁରୀର ଆଚାର୍ଯ୍ୟ ବାବୁ ଅଛନ୍ତି, ସେ ତ ୪୦ ବର୍ଷ ହେଲା ଏଠାରେ ଘର କରି ରହିଲେଣି । ପୁରୀ ଖବର ରଖିଛନ୍ତି କି ନାହିଁ କିଏ ଜାଣେ ।'' ସେକେଟ୍ରେରିଆଟ୍ରୁ ରିଟାୟାର କରିଛନ୍ତି ? ରାସ୍ତା ଆର ପାଖରେ ଇଲେକ୍ଟ୍ରି ଦୋକାନର ମାଲିକ ପରିଡ଼ାବାବୁ ହେଉଛନ୍ତି ସେକ୍ରେଟେରିଏଟ୍‌ର ରିଟାୟାର ଲୋକ । ତାଙ୍କୁ ଯାଇ ପଚାରି ବୁଝନ୍ତୁ ।''

ଏତେ ଗୁଡ଼ାଏ ଉତ୍ତର ଏକାବେଳକେ ପାଇଯିବାରୁ ମନରେ ଟିକିଏ ବଳ ଆସିଲା । ଦୋକାନରୁ ସାଦା ପାନ ଖଣ୍ଡିଏ ପାଟିରେ ପୂରାଇ ଭାବିବାକୁ ଲାଗିଲି, ଯାହା ହେଉ ବ୍ୟୋମକେଶ ଭଳି ଜଣେ ଗୁପ୍ତଚର ବିଭାଗ କର୍ମଚାରୀ ଭାବରେ ଏ ପ୍ରକାର ଖବର ସୂତ୍ରକୁ ହାତରେ ଧରି ମୋତେ ବନ୍ଧୁଙ୍କ ଘର ଠାବ କରିବାକୁ ପଡ଼ିବ ।

ପୁରୀ ଲୋକ ହିସାବରେ ଆଚାର୍ଯ୍ୟ ବାବୁଙ୍କ ଘର ଆଗରେ ପହଞ୍ଚନ୍ତେ ଜଣାଗଲା ବାବୁ ଘରେ ନାହାଁନ୍ତି । ଘରେ କେବଳ ଜଣେ ଚାକର ଥାଏ । ସେ କାହା ବିଷୟରେ କିଛି ଜାଣିନାହିଁ । ସେଠାରୁ ଫେରି-ପରବର୍ତ୍ତୀ ସମ୍ପର୍କ ସ୍ଥାନ ଭାବେ ରାସ୍ତା ଆରପାଖ ପରିଡ଼ା ବାବୁଙ୍କ ଦୋକାନ ଠାବ କରାଗଲା । ପରିଡ଼ାବାବୁ ଦୋକାନରୁ ବାହାରି ଆସିଲେ । ସେକ୍ରେଟାରିଏଟ୍ରୁ ରିଟାୟର କରିବା ପାଞ୍ଚବର୍ଷରୁ ଊର୍ଦ୍ଧ୍ୱ ହେଲାଣି । ଭ୍ରୂକୁଞ୍ଚନ କରି ଭାବିବାକୁ ଲାଗିଲେ । ତାଙ୍କର ସ୍ମରଣ କରିବାରେ ଦାସବାବୁ ନାମରେ ଦୁଇ ଜଣଙ୍କ ନାଁ ମନେପଡ଼ିଲା । ଜଣେ ଅନ୍ୟତ୍ର ରହୁଛନ୍ତି । ଆଉ ଜଣେ ଦାସବାବୁ ଅଛନ୍ତି ଯେ ସେ ପୁରୀ ଜିଲ୍ଲାର ଲୋକ ନୁହଁନ୍ତି, ଗଞ୍ଜାମର ।

ମୋ ମନରେ ସନ୍ଦେହ ହେଲା ଯେ ମୋର ସ୍ମୃତିରେ ଭୁଲ୍ ହୋଇନି ତ ? ପରେ ଅନ୍ୟ କେତେକ ଘଟଣା ମନେ ପକାଇ ନିଶ୍ଚିନ୍ତ ହେଲି ଯେ ବନ୍ଧୁ ଆମର ପୁରୀ ଜିଲ୍ଲାର ଲୋକ । ଏକଥା ଶୁଣିବାରେ ପରିଡ଼ାବାବୁ ତାଙ୍କର ଅକ୍ଷମତା ପ୍ରକାଶ କଲେ । ତାଙ୍କଠାରୁ ବିଦାୟ ନେଇ ରାସ୍ତା ଉପରକୁ ଆସି ମନେ ମନେ ଭାବିଲି ଏହାପରେ କୁଆଡ଼େ ଯିବି । ମନେପଡ଼ିଲା ଏହି ଶହୀଦନଗରରେ ଜଣେ ସମ୍ପର୍କୀୟ ମଉସା ଅଛନ୍ତି । ସେ ମଧ୍ୟ ଏଠାକାର ପୁରୁଣା ବାସିନ୍ଦା ହେବା ପରେ ମୋ ଉଦ୍ଦିଷ୍ଟ ଘର ବିଷୟରେ ତାଙ୍କୁ ଜଣାଥିବ ।

ମଉସାଘର ନମ୍ବର ଆଗରୁ ଜଣାଥିଲା । ପକେଟ୍ ବୁକ୍‌ରେ ଲେଖି ରଖିଥିଲି । ତେଣୁ ତାଙ୍କ ଘରେ ଅଳ୍ପ ଖୋଜିବା ପରେ ପହଞ୍ଚିଗଲି । ମଉସା ମୋତେ ଦେଖି ଖୁସି ହେଲେ । ରିଟାୟର ପରେ ଘରେ ଏକୁଟିଆ । ଜଣେ ବୁଢ଼ା ଚାକର ସାଥିରେ ଅଛି । ମାଉସୀ ଅନେକ ଦିନହେଲା ସ୍ୱର୍ଗକୁ ଗଲେଣି, ପୁଅମାନେ ନିଜ ନିଜ କର୍ମକ୍ଷେତ୍ରରେ ବାହାରେ । ଝିଅମାନେ କେବେଠାରୁ ବାହାସାହା ହୋଇ ଶାଶୁଘରେ । ଏ ଅବସ୍ଥାରେ ମଉସା ଅତ୍ୟଧିକ ଧାର୍ମିକ ହୋଇ ପଡ଼ିଛନ୍ତି ।

ଦୁଃଖ ସୁଖ କଥା ହେଉ ହେଉ ଦଶ ମିନିଟ୍ ସମୟ ଲାଗିଲା । ତା ପରେ ବେଳ ଉଣ୍ଡି ମୋ ଆସିବାର ଉଦ୍ଦେଶ୍ୟ ଜଣାଇଲି । ସେ ଏବେ ବାହାର ଲୋକଙ୍କ ସହିତ ସମ୍ପର୍କ କମ୍ ରଖୁଛନ୍ତି । ଅଧିକ ସମୟ ଠାକୁର ଘରେ । ପ୍ରାର୍ଥନା, କୀର୍ତ୍ତନ ଆଦିରେ ଅଥବା ଘରପାଖ ମନ୍ଦିର ପରିସରରେ । ତେଣୁ ସେ କହିଲେ ବାବା ମୋର ଏବେ କମ୍ କଥା ମନେରହୁଛି । ତେବେ ମୁଁ ତୁମକୁ କାଲି ସକାଳେ ବୁଝି ଆସି କହିଦେବି । ଯେତେବେଳେ ଜାଣିଲେ ଯେ କାଲି ମୋ ପାଇଁ ବହୁତ ସମୟ, ଏସମୟରେ ଆମ କଥୋପକଥନ ଶୁଣି ତାଙ୍କ ଚାକର ହରିନନା କହିଲା, ହୁଜୁର, ଆଗ ଲାଇନ୍ ଉପର ଘରେ ଜଣେ ଦାସବାବୁ ରହନ୍ତି, ତାଙ୍କର ପୁଅ ଜଣେ ଇଞ୍ଜିନିୟର ଅଛନ୍ତି ଓ ବାହାରେ ରହନ୍ତି । ସେ ମଧ୍ୟ ସେକ୍ରେଟାରୀଏଟ୍‌ରୁ ରିଟାୟାର ହୋଇଛନ୍ତି ଓ ପୁରୀର ଲୋକ ।

ଏକଥା ଶୁଣି ଆମ ମଉସା କହିଲେ, ହଁ ପୁଅ ହଁ, ହରି ଠିକ୍ କହୁଛି । ସେ ଯାଇ ଦେଖିଆସୁ ହରିନନା ଦୌଡ଼ିଲା ଭଳି ଚାଲିଗଲେ । ଏହା ଭିତରେ ମଉସାଙ୍କ ଦୁଃଖ ଶୁଣୁଥିଲି । କିପରି ବଡ଼ପୁଅ ଜମା ଘରକୁ ଆସୁନାହିଁ । ସାନ ଆସି ମଝିରେ ବେଳେବେଳେ ଭଲମନ୍ଦ ବୁଝୁଛି । ମଝିଆଁ ପୁଅର ବୋହୂଟି ଭଲ । ଏବେ ବସିବାରୁ ଉଠିଲେ ମୁଣ୍ଡ ବୁଲାଉଛି ଓ ସନ୍ଧ୍ୟାପରେ ଆଖିକୁ ଭଲ ଦିଶୁନି । ହରିନନାଟା ପାଖରେ ରହିଛି ବୋଲି, ନହେଲେ ଦୁଇବେଳା ଖାଇବାକୁ ମିଳନ୍ତା ନାହିଁ । ଘରଛାଡ଼ି ମଉସାଙ୍କୁ ପୁଅମାନଙ୍କ ପାଖକୁ ଯିବାକୁ ଇଚ୍ଛା ନାହିଁ । କାରଣ ସମୟ କଟାଇବାକୁ ଏଇଠି ଅନେକ ସମବୟସ୍କ ପୁରୁଣା ପରିଚିତ ରିଟାୟାର ଲୋକ ଅଛନ୍ତି ଓ ଭୁବନେଶ୍ୱର ପାଗ ଦେହକୁ ଭଲ ସୁହାଉଛି ।

ଏହି ସମୟରେ ହରିନନା ଫେରି ଆସିଲେ ଓ କହିଲେ, ବାବୁ ତାଙ୍କ ଘର ଦାସ ନୁହଁନ୍ତି, ମହାପାତ୍ର ଆଉ ତାଙ୍କର ପୁଅ କେହି ଇଂଜିନିୟର ନାହାନ୍ତି ।

କାଳବିଳମ୍ବ ନକରି ମଉସାଙ୍କ ପାଖରୁ ବିଦାୟ ନେବାକୁ ମେଲାଣି ମାଗିଲି । ଫେରିବା ବେଳେ ମଉସା ଗୋଟିଏ ନୂଆ 'କ୍ଲୁ' ବତାଇଲେ । କହିଲେ ଆଗ ଛକରେ ଗୋଟିଏ ଷ୍ଟେସନାରୀ ଦୋକାନ ଅଛି, ସେଠାରେ ତାଙ୍କର ଜଣେ ପୁତୁରା ବସେ ଓ ସେ ଅନେକ ଲୋକଙ୍କୁ ଏଠାରେ ଚିହ୍ନିଛି । ଯାଅ ଥରେ ତାଙ୍କୁ ପଚାରି ଦେଖ ।

ମୁଁ ଯାଇ ଷ୍ଟେସନାରୀ ଦୋକାନରେ ପହଞ୍ଚିଗଲି । ଚିହ୍ନା ଦେଇ ଦୋକାନ ଭିତରେ ବସିଲି । ମୋ ସନ୍ଧାନର ପ୍ରଶ୍ନ ପଚାରିଲି । ସେ ସବୁ ଶୁଣିଲେ । ଏ ସମୟରେ ତାଙ୍କର ଜଣେ ପାର୍ଟନର ମଧ ଦୋକାନରେ ବସିଥିଲେ । ମୋର ସମସ୍ତ ବର୍ଣ୍ଣନା ଶୁଣିବା ପରେ, ସେ ତାଙ୍କ ଆତୁ ଉତ୍ସୁକତା ଦେଖାଇବା ଜଣାଗଲା ଏବଂ ପଚାରିଲେ ଆଚ୍ଛା ତାଙ୍କ ଘର ବଡ଼ପୁଅ ସେକ୍ରେଟାରୀଏଟ୍‌ରେ କାମ କରନ୍ତି ? ତାଙ୍କ ଭାଉଜ ବାଣୀବିହାରରେ କାମ କରନ୍ତି ? ତାଙ୍କ ଭାଉଜଙ୍କ ନାମ ରମା ?

ସମସ୍ତ ପ୍ରକାର ଉତ୍ତର ମୋ ପାଖରେ ନଥିଲା । ମାତ୍ର ଭାଉଜ ଚାକିରି କରନ୍ତି ଓ ବୋଧହୁଏ ବାଣୀବହାରରେ ବୋଲି ଜଣାଇଲି । ବଡ଼ ଭାଇ ମଧ ଚାକିରି କରନ୍ତି । କିନ୍ତୁ ଚାକିରି ସ୍ଥାନ ବିଷୟରେ ଅଜ୍ଞତା ପ୍ରକାଶ କରିଥିଲି ।

ଭଦ୍ରଲୋକ ଅଧିକ ଉତ୍ସୁକ ହେଲେ । କହିଲେ ରୁହନ୍ତୁ ମୁଁ ଗୋଟିଏ ଫୋନ୍ କରି ବୁଝେ । ଯଦି ରମାର ଶ୍ୱଶୁର ଘର ହୋଇଥିବ, ତେବେ ଆପଣ ଘର ପାଇଯିବେ । ଏକ ମିନିଟ୍ ଭିତରେ ଫୋନ୍ କରି ଜାଣିଲେ ଯେ ମୁଁ ଖୋଜୁଥିବା ଘରର ବୋହୂ ହେଲେ ଶ୍ରୀମତୀ ରମା ଏବଂ ଫୋନରେ ଉତ୍ତର ଦେଇଥିବା ମହିଳା ଜଣକ ତାଙ୍କ ଘର ସହିତ ସମ୍ପୂର୍ଣ୍ଣ ପରିଚିତ । ତେବେ ଘର ନମ୍ବର ଜଣାନାହିଁ । ଫୋନ୍‌ରେ ଜବାବ ଦେଇଥିବା ମହିଳାଙ୍କ ଘରର ଅବସ୍ଥିତି ଭଦ୍ର ଲୋକଙ୍କୁ ଜଣାଥିଲେ ସୁଦ୍ଧା, ଘର ନମ୍ବର ଜଣାନାହିଁ ।

ଏତେ ସମୟ ଖୋଜିବା ପରେ ବନ୍ଧୁଙ୍କ ଘରର ସୁରାକ ପାଇବା ପରେ ମୁଁ କ'ଣ ଆଉ ଛାଡ଼ିବା ଲୋକ । ଭଦ୍ରଲୋକଙ୍କୁ ବିନତି କରି କହିଲି, ''ଆପଣ ଏତେ କଷ୍ଟ କରି ସନ୍ଧାନ ବାହାର କରିଲେଣି । ଚାଲନ୍ତୁ ଆପଣଙ୍କ ବାନ୍ଧବୀଙ୍କ ଘର ଦେଖାଇ ଦିଅନ୍ତୁ ଏବଂ ତାଙ୍କଠାରୁ ସନ୍ଧାନ ପାଇ ମୁଁ ମୋର ବନ୍ଧୁଙ୍କ ଘରେ ପହଞ୍ଚିଯିବି । ମୋର ଏକ ଲମ୍ବା ପରିଶ୍ରମର ଫଳ ମିଳିବ ।''

ମୋ ସିହତ ମିଶି ମଉସାଙ୍କ ପୁତୁରା ମଧ ଅନୁରୋଧ ଜଣାଇଲେ । ଭଦ୍ରଲୋକଙ୍କର ଅନ୍ୟତ୍ର ଜରୁରୀ କାମ ଥିଲେ ସୁଦ୍ଧା ଆଗ ଅନୁରୋଧ ରକ୍ଷା କଲେ ।

ସାଥି ହୋଇ ବାହାରିଲୁ । ତାଙ୍କ ବାନ୍ଧବୀଙ୍କ ପାଖରେ ପହଞ୍ଚି ପରେ ବନ୍ଧୁଙ୍କ ନାଁ, ଭାଇଙ୍କ ନାଁ, ଘର ବିଷୟରେ ଅଧିକ ନିଶ୍ଚିତ ଖବର ପାଇଗଲି ଏବଂ ମନ ଆନନ୍ଦରେ ପୂରି ଉଠିଲା । ବନ୍ଧୁଙ୍କ ଘରକୁ ଯିବା ପାଇଁ ମହିଳା ଜଣକ ତାଙ୍କ ପୁଅକୁ ସାଥିରେ ପଠାଇ ଦେଲେ । ତା ପୂର୍ବରୁ ଆଜିକାଲିର ସାମାନ୍ୟ ଆତିଥ୍ୟ ଚା'ପାନ ସତ୍କାର କରାଇ ଛାଡ଼ିଲେ । ଛୋଟ ପିଲାଟି ମୋ ସହିତ ଦୌଡ଼ି ଦୌଡ଼ି ଆଗକୁ ଚାଲୁଥାଏ । କହୁଥାଏ ମଉସା ପୁପୁନ ଭାଇ ଘରକୁ ଯିବା ତ ? ଚାଲନ୍ତୁ । ଏଇ ଆଗ ମୋଡ଼ ପାଖରେ ଲିମ୍ବଗଛ ମୂଳେ ତାଙ୍କ ଘର ।



ଘର ପାଇଗଲି । ଘର କଲିଂବେଲ୍ ବଜାଇ ଘର ଭିତରକୁ ଗଲି, ଘରେ ବନ୍ଧୁ ନାହାଁନ୍ତି କି ତାଙ୍କ ପତ୍ନୀ ନାହାଁନ୍ତି । ଅନ୍ୟ ସମସ୍ତେ ଅପରିଚିତ । ଭାଉଜଙ୍କୁ ମୋର ପରିଚୟ ଦେଲି । ମା'ଙ୍କୁ ପ୍ରଣାମ ଜଣାଇଲି । ଜାଣି ଆଶ୍ୱସ୍ତ ହେଲି ଯେ ବନ୍ଧୁଙ୍କ ପୁଅ ଟାଇଫଏଡ୍‌ରୁ ସମ୍ପୂର୍ଣ୍ଣ ଭଲ ହୋଇଯାଇଛି । ତାକୁ ନେଇ ଦୁଇଦିନ ତଳେ ସମସ୍ତେ ତାଙ୍କ କର୍ମକ୍ଷେତ୍ର ରାଉରକେଲାକୁ ଫେରି ଯାଇଛନ୍ତି । ମୋର ପରିଚୟ ଏବଂ ଆସିବାର ଉଦ୍ଦେଶ୍ୟ ଜାଣିବା ପରେ ଘରର ସଦସ୍ୟମାନେ ଖୁସି ପ୍ରକଟ କଲେ । ନାଁରୁ ପରିଚିତ ଅଛନ୍ତି ବୋଲି ଜଣାଇଲେ । ସାଧାରଣ ଆତିଥ୍ୟ ପରେ ବନ୍ଧୁ ଘରୁ ବିଦାୟ ନେଲି ଏଡମଣ୍ଡ ହିଲାରୀଙ୍କ ମାଉଣ୍ଟ ଏଭେରେଷ୍ଟ ଆରୋହଣ ଭଳି ସକାଳ ୯ଟା ସମୟରୁ ଆରମ୍ଭ କରି ଦିନ ୧୨ଟା ଯାଏଁ ବନ୍ଧୁଘର ଖୋଜାର୍ଜ ଅଭିଯାନର ଅଭିଜ୍ଞତାକୁ ମନେ ପକାଇ ବିହ୍ୱଳିତ ହେଲି । ଏ ଅଭିଯାନ ଅନେକ ଦିନ ଯାଏଁ ମନ ଭିତରେ ଅଭୁଲା ସ୍ମୃତି ହୋଇ ରହିଯିବ ।



# ଆମ ପ୍ରଗତିର ଦୁର୍ବଳ ନମୁନା

ଆମର ପ୍ରଗତି ହୋଇଛି । ସ୍ୱାଧୀନତା ପରେ ଆମ ଦେଶର ଶିକ୍ଷା, ସ୍ୱାସ୍ଥ୍ୟ, ରାସ୍ତାଘାଟ, ଯାନବାହନ୍, ଡାକତାର ଇତ୍ୟାଦି ବିଭିନ୍ନ ଦିଗରୁ ଉନ୍ନତି ହୋଇଛି । ବାହାରକୁ ଚକ୍‌ଚକ୍ ଦିଶୁଥିବା ଆମ ଆଧୁନିକ ସମାଜ ଜୀବନ ମଧ୍ୟରେ ଏପରି ଦୃଷ୍ଟାନ୍ତ ନଜରକୁ ଆସୁଛି ଯାହା ଆମ ଭିତରେ ଥିବା ଦୁର୍ବଳତାକୁ ପ୍ରକାଶ କରୁଛି । ତା'ରି ଭିତରୁ କେତୋଟି ଉଦାହରଣ ପ୍ରସ୍ତୁତ କରାଯାଇଛି ।

## ନ୍ୟୁନମାନର ଉତ୍ତୀର୍ଣ୍ଣାଙ୍କ

ସ୍କୁଲ ଓ କଲେଜମାନଙ୍କରେ ବିଭିନ୍ନ ପ୍ରକାର ପରୀକ୍ଷା ହେଉଛି । ପରୀକ୍ଷାଦ୍ୱାରା ଛାତ୍ରର ଜ୍ଞାନର ସ୍ତର ଜଣା ପଡ଼ିଥାଏ ଏବଂ ପରବର୍ତ୍ତୀ ଶିକ୍ଷା ପାଇଁ ଯୋଗ୍ୟତାର ପ୍ରମାଣ ମିଳିଥାଏ । ଏକ ବିଦ୍ୟାଳୟର ପ୍ରଧାନ ଶିକ୍ଷକଙ୍କ ସହିତ ଆଲୋଚନା କରୁଥିଲି ବାର୍ଷିକ ପରୀକ୍ଷାର ଫଳାଫଳ ବିଷୟରେ । ମହାଶୟ କହି ଚାଲିଥିଲେ, ଏଇ ଗଲାକାଲି ପରୀକ୍ଷା ଫଳ ପ୍ରକାଶ କରିଦେଲୁ । ଏଥର ଅକୃତକାର୍ଯ୍ୟ ଛାତ୍ରଛାତ୍ରୀ ନଗଣ୍ୟ । ଉତ୍ତୀର୍ଣ୍ଣ ହେବାର ମାନଦଣ୍ଡ ବିଷୟରେ ଜାଣିବାକୁ ଚାହିଁଲାରୁ କହିଲେ, ପ୍ରଥମରୁ ତୃତୀୟ ଯାଏଁ ମୋଟ ଅଙ୍କ ୧୦% ରଖିଲେ ପାଶ । ଚତୁର୍ଥରୁ ଷଷ୍ଠ ଯାଏଁ ୧୨% ଏବଂ ଅଷ୍ଟମ-ନବମରେ ୧୫%ରେ ପାଶ୍ କରାଯାଇଛି ।

ପୁଣି ପ୍ରଶ୍ନ କଲି, ଆଚ୍ଛା, ଆମ ବେଳେ ତ ବୋର୍ଡ଼ ପରୀକ୍ଷାରେ ୩୩%ରେ ପାଶ ହେଉଥିଲା । ଏବେ କ'ଣ ବୋର୍ଡର ପାଶ୍ ମାର୍କ ସୀମା କମି ଯାଇଛି । ସେ କହିଲେ ନାଇଁ, ନାଇଁ । ସପ୍ତମ ବୋର୍ଡରେ ୨୫%ରେ ପାଶ୍ ଏବଂ ମାଟ୍ରିକ୍ ବୋର୍ଡରେ ୩୩%ରେ ପାଶ ହେଉଛି । ତେବେ ଆମେ ଶିକ୍ଷକମାନେ ମିଳିତ ଭାବେ ଏହି ନିଷ୍ପତ୍ତି ନେଇଛୁ ।

ପ୍ରଶ୍ନ କଲି, କ'ଣ ପ୍ରଶ୍ନ ପତ୍ର ବହୁତ କଠିନ ଥିଲା । ପିଲାମାନେ କ'ଣ ପାଠ ପଢ଼ିବାରେ ଦୁର୍ବଳ ? ବର୍ଷ ସାରା କ'ଣ ଭଲ ଭାବେ ପଢ଼ାପଢ଼ି ହୋଇ ପାରିଲା ନାହିଁ ? ଶହେରୁ ୩୦ ନମ୍ବର ତ ମାମୁଲି କଥା । ତେବେ କାହିଁକି ହେଲା ନାହିଁ ?

ପ୍ରଧାନ ଶିକ୍ଷକ ଜବାବ ଦେଲେ - ଏ ପ୍ରକାର ସବୁ ସ୍କୁଲରେ ଚାଲିଛି । ଆଉ ଆଜିକାଲି ଫେଲ୍ ହେବା ନାହିଁ । କେବଳ ମାଟ୍ରିକ ବୋର୍ଡ ପରୀକ୍ଷାରେ ଯାହା କଟକଣା । ଫେଲ କଲେ ଅଭିଭାବକମାନେ ପ୍ରତିବାଦ କରୁଛନ୍ତି । ଯେନତେନ ପ୍ରକାରେଣ ପିଲାକୁ ପାଶ କରିବା ଦରକାର । ସମସ୍ତେ କହୁଛନ୍ତି, ଏଁଥର ଯାଉ ଆର ଥରକୁ ଦେଖାଯିବ ।

ନିଜକୁ ପ୍ରଶ୍ନ କଲି, ବାଲ୍ୟ କାଳର ବିଦ୍ୟାଧ୍ୟୟନ ସମୟରେ ଯେଉଁ ବାଳକ ପାଠ ନ ପଢ଼ି ପାଶ କରୁଛି ସେ ତା'ର ଜୀବନ ସଂଗ୍ରାମରେ ସଂଘର୍ଷ କରି ଉତ୍ତୀର୍ଣ୍ଣ ହେବାର ମାନସିକ ଯୋଗ୍ୟତା କେଉଁଠୁ ପାଇବ ଓ କିପରି ପାଇବ ?

## ଜବାବରେ ଜୋର୍ ନାହିଁ

ଭଦ୍ରଲୋକ ୩୦ ବର୍ଷ ଚାକିରି ପରେ ଅବସର ନେଲେ । ସ୍ତ୍ରୀଙ୍କ ଚାକିରି ଥିବାରୁ ବାସଗୃହ ସ୍ତ୍ରୀଙ୍କ ନାଁରେ ହୋଇଗଲା । ସ୍ତ୍ରୀ କିନ୍ତୁ ଚାକିରି କରିବା ମନସ୍ଥିତିରେ ନଥିଲେ । ସ୍ୱାମୀ ସ୍ତ୍ରୀ ଉଭୟେ ପୁଅ ପାଖକୁ ଯାଇ ଅଧିକାଂଶ ସମୟ ରହୁଥିଲେ । ସେତେବେଳେ କଲୋନୀରେ କ୍ୱାର୍ଟର ସମସ୍ୟା ଦେଖା ଦେଇଥିଲା । ପ୍ରସଙ୍ଗକ୍ରମେ ଭଦ୍ରଲୋକଙ୍କୁ ପ୍ରସ୍ତାବ ଦିଆଗଲା ଆପଣ କାହିଁକି ଏତେ ବଡ଼ କ୍ୱାର୍ଟର ଖାଲି ରଖିଛନ୍ତି । ଗୋଟିଏ ଛୋଟ କ୍ୱାର୍ଟର ନିଅନ୍ତୁ ।

ଭଦ୍ରଲୋକ ନିଜର ନିର୍ଭର ଜବାବ ଦେଲେ । ସେହି ଅନୁସାରେ ଅର୍ଡର ବାହାରିଲା । ନୂଆ ହୋଇ ଘର ପାଇଥିବା ବ୍ୟକ୍ତିଙ୍କର ମନ ଭାରି ଖୁସି । ହଠାତ୍ ସନ୍ଧ୍ୟା ସମୟକୁ ଭଦ୍ରଲୋକ ଆସି ଜଣାଇଲେ । ଆଜ୍ଞା, ସବୁ ଅଡୁଆ ହୋଇଗଲା । ସ୍ତ୍ରୀଙ୍କର ଭୀଷଣ ମନଦୁଃଖ । ସେ କ୍ୱାର୍ଟର ଛାଡ଼ିବାକୁ ରାଜି ନୁହଁନ୍ତି । ତାଙ୍କରି କଥାରେ ଅର୍ଡର ପୁଣି କ୍ୟାନସେଲ୍ ହେଲା । ଖୁସି ହୋଇ ଆସୁଥିବା ଲୋକଟି ଦୁଃଖରେ ଭାଙ୍ଗି ପଡ଼ିଲା । ଏ ବିଷୟରେ ଆଗ୍ରହ ନେଇ ମନେଇଥିବା ବ୍ୟକ୍ତି ହିସାବରେ ନିଜକୁ ପ୍ରଶ୍ନ କଲି, ଆମ ଜବାବର କ'ଣ ଜୋର୍ ନାହିଁ ?

ଅନ୍ୟ ଏକ ବ୍ୟକ୍ତିଙ୍କର ଉଦାହରଣ । ଖଣି ଅଞ୍ଚଳରୁ ବଦଳି ହୋଇ ସହରକୁ ଚାଲି ଯିବାକୁ ଶିକ୍ଷିତ ଯୁବ ଗୋଷ୍ଠୀର ଏକ ବଳିଷ୍ଠ ଆନ୍ତରିକ ଇଚ୍ଛା । ତେବେ କେତେ ଜଣ ସ୍ୱତଃପ୍ରବୃତ୍ତ ହୋଇ ଖଣି ସହରରେ ରହିଯିବା ପାଇଁ ମଧ୍ୟ ଆଗ୍ରହୀ । ଜଣେ କର୍ମଚାରୀ ନିଜ ମନକୁ ସ୍ଥିର କରିପାରୁ ନଥିଲେ । ମୁହଁରେ ସମସ୍ତଙ୍କୁ କହିବାକୁ ଲାଗିଲେ, ମୁଁ ରହିଯିବି । ମାଇନ୍ସ ଠିକ୍ ଅଛି । ସହରରେ କ'ଣ ଅଧିକ ମିଳିବ ? ତାଙ୍କ ମନୋଭାବର ସୂଚନା ପାଇ ଖଣି କର୍ତ୍ତୃପକ୍ଷ ଖୁସି ହୋଇଗଲେ । ତାଙ୍କୁ କୁହାଗଲା ଲିଖିତ ଆକାରରେ ଜଣାଇବା ପାଇଁ । ତାଙ୍କ ପାଖରୁ ନିଶ୍ଚିତ ରୂପେ ସକାରାତ୍ମକ ଉତ୍ତର ମିଳିବ ଏ ଆଶା ରଖାଗଲା ।

ତା' ଆରଦିନ ଦୁଇ ପୃଷ୍ଠାର ଦରଖାସ୍ତ ମିଳିଲା । ଏଆଡୁ ସେଆଡୁ କିଛି ଲେଖା ଯାଇଛି । ଶେଷରେ ଅନୁରୋଧ କି ମୋତେ ଅତିଶୀଘ୍ର ସହରକୁ ବଦଳି କରାଯାଉ । ଦରଖାସ୍ତ ପଢ଼ି କର୍ତ୍ତୃପକ୍ଷଙ୍କର ମନ କ୍ଷୁଣ୍ଣ ହୋଇଗଲା । ଆହା ! ଏହା କ'ଣ ଆମର ଜବାବ । କଥା ଓ କାର୍ଯ୍ୟରେ ଏତେ ତଫାତ ?

## ଶିକ୍ଷିତ ଗୋଷ୍ଠୀର ସହରାଭିମୁଖୀ ସୁଅ

ଯୁବ ଇଞ୍ଜିନିୟର ନିଜର ପ୍ରଥମ ଶିଶୁକନ୍ୟାର ପାଠ ପଢ଼ା ପାଇଁ ଯୋଗାଡ଼ କରି ଫେରିଲେ । କର୍ମ କ୍ଷେତ୍ରରୁ ପ୍ରାୟ ୧୦୦ କି.ମି. ଦୂର ସହରରେ ଏହି ସ୍କୁଲ୍‌ଟି । କନ୍ୟାର ନାଁ ଲେଖା ହେଲା ନର୍ସରୀ ଶ୍ରେଣୀରେ । ମାତ୍ର ନାଁ ଲେଖା ସହିତ ଡ୍ରେସ୍, ଡୋନେସନ ଓ ଅନ୍ୟ ଖର୍ଚ୍ଚ

ମିଶି ମୋଟ ୨୦୦୦ ଖର୍ଚ୍ଚ ହେଲା । ଝିଅ ପାଖରେ ଝିଅର ମା' ରହିବ । ମହାଶୟ ନିଜର କର୍ମକ୍ଷେତ୍ରରେ ଏକାକୀ ରହିବେ । ଏହା ହେଲା ମୋଟାମୋଟି ଯୋଜନା ।

ଏକ ବିଶିଷ୍ଟ ସ୍କୁଲ୍‌ରେ ସିଟ୍ ଖଣ୍ଡିଏ ପାଇଥିବାରୁ ବାପ ଓ ମା' ଉଭୟେ ବହୁତ ଖୁସି । ସେହି ଅବସରରେ ଭେଟ ହେଲା ଯୁବ ବନ୍ଧୁଙ୍କ ସହ । ଦୁଃଖସୁଖ ଆଳାପ ଆଲୋଚନା ଭିତରେ ସେ କହି ବସିଲେ, ଏବେ କିଛିଦିନ ଏକୁଟିଆ ଚଳାଇ ନେବା । ସ୍ତ୍ରୀ ମଧ୍ୟ ସହରରେ ଚଳିବାକୁ ଅସୁବିଧା ହେବ ନାହିଁ । ତା'ଛଡ଼ା ମୋର ଦରଖାସ୍ତ ଖଣ୍ଡକ ପଠାଇ ଦେଇଛି । ଆଜି ନହେଲେ କାଲି ତ ବଦଳି ହୋଇଯିବ । ଉପଦେଶକ୍ରମେ କହିଲି, ଏବେ ଏବେ ଆସିଛନ୍ତି । ବଦଳି ପାଇଁ ଏତେ ଶୀଘ୍ର କ'ଣ ହୋଇପାରିବ ? ତା'ଛଡ଼ା ପିଲାଟି ପାଇଁ ଏତେ ସ୍କୁଲ୍ ଅଛି । ଏବେଠାରୁ ତା'ର ପାଠ ପଢ଼ା ଲାଗି ଏତେ ଖର୍ଚ୍ଚାନ୍ତ ଓ ହଇରାଣ ହେବାଟା କ'ଣ ଠିକ୍ ହୋଇଛି ?

ବନ୍ଧୁ କହିଲେ, ଦେଖନ୍ତୁ ଆଜ୍ଞା, ଏ ଜଙ୍ଗଲ ଭିତରେ ଆଉ ରହି ହେବନି ।

ଶେଷ ବାକ୍ୟଟି ଶୁଣିବା ପରେ ମନରେ ସ୍ୱତଃ କ୍ରୋଧଭାବ ଜାଗି ଉଠିଲା । ପଚାରିଲି, ଆଚ୍ଛା ଆପଣଙ୍କ ନିଜ ଘର କେଉଁଠି ?

ଉତ୍ତର : ଏଇ ଜିଲ୍ଲାର ହାତୀବାଡ଼ୀ ଗାଁରେ ।

ପ୍ରଶ୍ନ : ଆପଣ ନିଜେ ବନବାସୀ ଗୋଷ୍ଠୀର ?

ଉତ୍ତର : ହଁ ତା'ତ ସତ ।

ତେବେ ଆପଣ ନିଜ ଜିଲ୍ଲା ଭିତରେ ଯୋଗ୍ୟତା ଅନୁରୂପ ଉପଯୁକ୍ତ ପାରିଶ୍ରମିକ ସହିତ ଚାକିରି କରି ଯଦି ବୀତସ୍ପୃହ ହୋଇପଡ଼ନ୍ତି; ତେବେ ଓଡ଼ିଶା ବାହାରୁ ଆସିଥିବା, ବଡ଼ ବଡ଼ ସହରରୁ ଆସିଥିବା କର୍ମଚାରୀମାନଙ୍କର କ'ଣ ମନ ସ୍ଥିତି ହେବ ? ଯେତେ କଳ କାରଖାନା, ଖଣି, ଖାଦାନ ଆରମ୍ଭ ହୋଇଛି, ସେ ସମସ୍ତ କର୍ମଚାରୀଙ୍କୁ ସୁହାଇଲା ଭଳି ହେବ ଏହା କ'ଣ ସର୍ବଦା ସମ୍ଭବ ?

ବନ୍ଧୁ ନରମି ଗଲେ । ବୋଧେ କିଛି ଉତ୍ତର ଖୋଜି ପାଇଲେ ନାହିଁ । ଶେଷରେ କହିଲେ, ଛାଡ଼ନ୍ତୁ ଆଜ୍ଞା । ଏବେ ଏସବୁ କଥା ମୁଣ୍ଡରେ ପଶୁନି । ଝିଅର ପାଠ ପଢ଼ା ମୋର ଏକାନ୍ତ ଚିନ୍ତା । ବନ୍ଧୁ ଚାଲିଗଲେ ।

ପରବର୍ତ୍ତୀ ମୁହୂର୍ତ୍ତରେ ଏ ବାକ୍ୟ ବିନିମୟର ଶବ୍ଦ-ଗୁଚ୍ଛ କାନ ଭିତରେ ଅନୁରଣିତ ହେଲା । ଏ କି ପ୍ରକାର ପରିସ୍ଥିତି ? ସମସ୍ତେ ନିଜ ଚିନ୍ତାରେ ବ୍ୟସ୍ତ । ଚତୁର୍ପାର୍ଶ୍ୱ ବିଷୟରେ କୌଣସି ଆଗ୍ରହ ନାହିଁ । ଏ ଅଞ୍ଚଳର କଳ କାରଖାନା ଚଳାଇବାକୁ ରାଜ୍ୟ ବାହାରୁ କର୍ମଚାରୀଙ୍କୁ ଆମନ୍ତ୍ରଣ ଆମଦାନୀ କରାଯିବ । ସେତେବେଳେ ସ୍ଥାନୀୟ ସଂଗଠକମାନେ ଓଲଟା ସ୍ୱର ଉତ୍ତୋଳନ କରି କହିବେ, ସ୍ଥାନୀୟ ଯୁବକମାନଙ୍କୁ ଉପେକ୍ଷା କରାଯାଉଛି ।

ବର୍ଣ୍ଣିତ ପରିସ୍ଥିତି ଏବଂ ଆମ୍ଭମାନଙ୍କର ମନସ୍ଥିତି କେତେ ଦୂର ଯଥାର୍ଥ, ତାହା ବିଚାରଣୀୟ ।

*ଜେନ୍ଦ୍ରସା, ସୁନ୍ଦରଗଡ଼*

◆◆◆

# ବାପାଙ୍କ ସ୍ମୃତି

*ପିତା ଧର୍ମଃ, ପିତା ସ୍ୱର୍ଗଃ,*
*ପିତା ହି ପରମଂ ତପଃ ।*
*ପିତରି ପ୍ରୀତିମାପନ୍ନେ*
*ପ୍ରିୟନ୍ତେ ସର୍ବଦେବତା ।*

ଉପରୋକ୍ତ ଶ୍ଳୋକ ଜଗତର ସମସ୍ତ ପିତୃଗଣଙ୍କ ପାଇଁ ଉଦ୍ଦିଷ୍ଟ । ଆମେ ସମସ୍ତେ ପିତାଙ୍କ ଔରସରୁ ଜନ୍ମ । ଆମ ପ୍ରତ୍ୟେକଙ୍କ ପାଇଁ ପିତା ହିଁ ପୂଜ୍ୟ । ଆମ ସମାଜରେ ଯୁଗେ ଯୁଗେ ପିତାଙ୍କର ଉଚ୍ଚସ୍ଥାନ ରହିଆସିଛି । ଜଣେ ପିତାଙ୍କର ନିଜ ପୁତ୍ର କନ୍ୟାଙ୍କ ପାଇଁ ଯାହା ସବୁ ଅବଦାନ ରହିଛି, ଏହି ଅନୁଭୂତି ଅଳ୍ପେ ବହୁତେ ସମସ୍ତ ପୁତ୍ର କନ୍ୟାଙ୍କର ଏକ ପ୍ରକାରର । ଏହି ପ୍ରବନ୍ଧରେ ମୋର ସ୍ୱର୍ଗତ ପିତାଙ୍କ ସ୍ମୃତି ଚାରଣ କରିବା ଛଳରେ ପାଠକମାନଙ୍କ ନିକଟରେ ନିଜ ନିଜ ପିତାଙ୍କର ସ୍ନେହପୂର୍ଣ୍ଣ ସମ୍ବନ୍ଧର ଅବତାରଣା କରିବାର ଚେଷ୍ଟା କରାଯାଇଛି ।

ମୋ ସ୍ମୃତିର ପ୍ରଥମ ଝଲକରେ ବାପାଙ୍କ ମୁହଁ ମନେ ପଡ଼େ, ଯେତେବେଳେ ପାଲଲହଡ଼ାର ପୋଲିସ୍ ଲାଇନ୍ ସ୍କୁଲରେ ବାପା ମୋତେ ନେଇ ଶିଶୁ ଶ୍ରେଣୀରେ ନାମ ଲେଖାଇଲେ । ସେ ସ୍କୁଲରେ ବେଶି ସଂଖ୍ୟାରେ ଝିଅ ଥିଲେ ଏବଂ ସେହି କାରଣରୁ ସ୍କୁଲ ନ ଯିବାକୁ କହିବାରୁ, ବାପା ମୋ କଥା ଶୁଣି ହସି ହସି ବୁଝାଇ ଦେଇଥିଲେ ଯେ ପୁଅ ଓ ଝିଅ ଏକାଠି ବସି ଏମିତି ପାଠ ପଢନ୍ତି ।

ତାହା ପରେ ମନେପଡ଼େ ବାପାଙ୍କ ଅଫିସ୍‌କୁ ଯାଇ ଖାଇବା ପାଇଁ ଡାକି ଆଣିବା । ଏହା ବାରିପଦାର କଥା । ବାପା ଅଫିସ୍‌ରୁ ବାହାରିବା ଡେରିହେଲେ, ତାଙ୍କ

ଟେବୁଲ୍‌ର ଦୁଆତ କଲମ ଧରି କାଗଜ ଉପରେ ଲମ୍ବା ଲମ୍ବା ଗାର ଟାଣିଥାଏ । ବାପାଙ୍କ ନଜର ପଡ଼ିଲେ ସେ ବ୍ୟସ୍ତ ହୋଇ ଉଠିପଡନ୍ତି ଏବଂ ବାପ ପୁଅ ଚାଲି ଚାଲି ଘରକୁ ଆସୁ । ପରବର୍ତ୍ତୀ ସ୍ମୃତି ବାପାଙ୍କ ସାଇକେଲ୍‌ରେ ବସି ବଜାରକୁ ଯିବା । ବଜାରରେ ସବୁ ଜିନିଷ କିଣିନେବା ପାଇଁ ମୁ ଜିଦ୍ କରେ । ଥାଉ ପଛେ କିଣିବା କହି ନିଜ କାମ ସାରି ବାପା ମୋତେ ସାଙ୍ଗରେ ଧରି ଘରକୁ ଫେରନ୍ତି । ବାପାଙ୍କ ପୁରୁଣା ଇଂଲଣ୍ଡ ହରକୁଲେସ୍ ସାଇକେଲ୍‌ର କ୍ୟାରିୟର ଭିତରେ ଆଙ୍ଗୁଠି ଚାପିନେବା ଘଟଣା ଏବେ ବି ମୋର ମନେ ଅଛି । ସେଦିନ ବାପାଙ୍କ ସ୍ନେହ ମିଶା କଥା ମୋ ଆଙ୍ଗୁଠିର କଷ୍ଟକୁ କମାଇ ଦେଇଥିଲା ।

ଛୁଟି ଦିନରେ ଓ ପର୍ବ ଦିନରେ ଘରେ ଭଲ ଜିନିଷ ତିଆରି ହେଲେ ବାପାଙ୍କ ସାଙ୍ଗରେ ବସି ଖାଇବାରେ ବଡ଼ ଆନନ୍ଦ । ସବୁ ଛୁଆଙ୍କୁ ସାଙ୍ଗରେ ଧରି ନ ଖାଇଲେ ବାପାଙ୍କୁ ଜମା ଭଲ ଲାଗେନା ।

ଶନିବାର ରାତିରେ ଘରକୁ ଯାଇ ରବିବାର ଦିନ ଉପର ବେଳା କଟକ ଫେରି ଆସିବା ବାପାଙ୍କ ଚାକିରି ଜୀବନରେ କିଛି ବର୍ଷର ରୁଟିନ୍ ଥିଲା । ବୈଶାଖର ଧୁମ୍ ଖରାରେ, ଶ୍ରାବଣର ବର୍ଷା ଧାରାରେ, ମା'ର ଅନୁରୋଧକୁ ଏଡ଼ାଇ ଘରୁ ବାହାରି ଚାଲି ଯାଉଥିବା ବାପାଙ୍କ ଦୃଶ୍ୟ ଏବେ ବି ଆଖି ଆଗରେ ନାଚି ଉଠୁଛି ।

ପଞ୍ଚମ ଶ୍ରେଣୀରେ ପଢିଲା ବେଳେ ଥରେ ଅଙ୍କ ବିଷୟରେ ଠିକ୍ ଅଙ୍କକୁ ଭୁଲ୍ କରି ଶିକ୍ଷକ ନମ୍ବର କାଟି ଦେଇଥିଲେ । ସେଦିନ ବାପା ଘରେ ଥିଲେ । ବାପାଙ୍କୁ ଜଣାଇବାରୁ ସେ ସ୍କୁଲ ଯାଇ ଶିକ୍ଷକଙ୍କୁ ଏ ବିଷୟ କହିଲେ ଏବଂ ଶିକ୍ଷକ ତ୍ରୁଟି ସଂଶୋଧନ କରିଥିଲେ । ତା ପରଠାରୁ ଶିକ୍ଷକଙ୍କର ମୋ ପାଠପଢା ପ୍ରତି ସତର୍କ ଦୃଷ୍ଟି ରହିଲା ।

ଷଷ୍ଠ ଶ୍ରେଣୀରେ ପଢିଲା ବେଳେ ମୋତେ ଟାଇଫଏଡ୍ ହୋଇଥିଲା । ଗାଁରେ ରୋଗ ଭଲ ନହେବାରୁ ବାପାଙ୍କ ସାଥିରେ କଟକ ଆସି ପନ୍ଦର ଦିନ ତାଙ୍କ ବସାଘରେ ରହିବାର ସୁଯୋଗ ମିଳିଥିଲା । ବସାଘରେ ମୁଁ ଏକୁଟିଆ ରହିପାରେ ନାହିଁ । ତେଣୁ ତାଙ୍କ ଅଫିସକୁ ଚାଲିଯାଏ । ଅଫିସ୍ ପାଖ ବାରାକ ଘରେ ବହି ପଢେ, ଖେଳେ, ଶୋଇପଡ଼େ । ଅଫିସ୍ ଛୁଟି ହେଲେ ସାଥି ହୋଇ ବସାକୁ ଫେରୁ । ବାପା ରୋଷେଇ କରନ୍ତି । ଦୋକାନରୁ ରୁଟି-ତରକାରୀ ଆଣନ୍ତି । ଏକାଠି ଖାଇ ଶୋଉ ।

ଗାଁ ସ୍କୁଲରୁ ମାଇନର ପଢିବା ପରେ ଗାଁ ପାଖ ସ୍କୁଲରେ ମାଟ୍ରିକ୍ ପଢିବାର ସୁବିଧା ଥିଲେ ମଧ୍ୟ ବାପାଙ୍କ ଇଚ୍ଛା ଅନୁସାରେ ଜିଲ୍ଲା ସ୍କୁଲରେ ନାଁ ଲେଖା ହେଲା । ପିଲା ଦିନରୁ ଏହି ସ୍କୁଲ ନିର୍ଣ୍ଣୟ ଫଳରେ ନିଜ ଜୀବନର ଉଚ୍ଚ ଅଭିଳାଷର ବୀଜ ବପନ ହୋଇ ପାରିଥିଲା ।

ଗାଁରେ ଜଣେ ମହିଳାର ଦୌଡ଼ି ଲଗାଇ ଆତ୍ମହତ୍ୟା କରିବାର ଦୃଶ୍ୟ ଦେଖିବା ପରେ, ବାରବର୍ଷ ବୟସ୍କ ମୋର ମନରେ ଅହେତୁକ ଭୟ ସୃଷ୍ଟି ହୋଇଥିଲା । ଅନ୍ଧାର ଦେଖିଲେ ଭୟ ହେଉଥିଲା । ସେ ଭୟର ଦୂରୀକରଣ ହୋଇପାରିଲା ଯେତେବେଳେ ବାପାଙ୍କ ପ୍ରଦତ୍ତ ଗାୟତ୍ରୀ ମନ୍ତ୍ରକୁ ଜପ କରିଥିଲି । ସେହିଦିନଠାରୁ ଆଜିଯାଏଁ ସେ ମନ୍ତ୍ରର ଜପ କରିଚାଲିଛି ।

ସ୍କୁଲ ଓ କଲେଜରେ ହଷ୍ଟେଲରେ ରହି ପାଠ ପଢିବାକୁ ପଡୁଥିଲା । ବାପାଙ୍କ ପାଖରୁ ଟଙ୍କା ଆସୁଥିଲା ମନିଅର୍ଡର ମାଧ୍ୟମରେ । ପ୍ରତ୍ୟେକ ମାସର ପାଞ୍ଚ ତାରିଖ ଦିନ ମନିଅର୍ଡର ଆସିବା ନିଶ୍ଚିତ ଥିଲା । ପାଞ୍ଚ ତାରିଖ ରବିବାର ପଡୁଥିଲେ, ତା ଆରଦିନ ଅର୍ଥାତ୍ ସୋମବାର ଦିନ ଏହା ଆସିବା ସୁନିଶ୍ଚିତ ଥିଲା । ଡାକ ପିଅନ ମଧ୍ୟ ଜାଣିଥିଲା ଯେ ଆଉ କାହାର ଆସୁ ନ ଆସୁ ମୋର ଟଙ୍କା ପାଞ୍ଚ ତାରିଖରେ ନିଶ୍ଚୟ ଆସିବ ।

ବାପାଙ୍କର ପୋଲିସ୍ ଡିପାର୍ଟମେଣ୍ଟ ଥିବାରୁ ଡିଉଟି ଡ୍ରେସ୍ ଖାକି ପୋଷାକ ଥିଲା । ଅନ୍ୟ ସମୟରେ ଖାକି ପ୍ୟାଣ୍ଟ ସହିତ ଖଣ୍ଡିଏ ସାଦା ସାର୍ଟ ପିନ୍ଧି ସେ ଚଳାଇ ନେଉଥିଲେ । ଏହା ଦେଖି ଆମ ପିଲାଙ୍କୁ ମିତବ୍ୟୟିତାର ଜ୍ୱଳନ୍ତ ଉଦାହରଣ ମିଳୁଥିଲା ।

ସ୍କୁଲ ପଢା ଶେଷ ହେବା ପରେ କଲେଜରେ ପଢିବା ବିଷୟ ବିଚାର ହେଉଥିଲା । ଘର ପାଖ କଲେଜ ନାଆଁ ବିଜେବି କଲେଜ ? ବାପା ଶେଷରେ କହିଲେ ତାର ଯଦି ଇଚ୍ଛା ହେଉଛି ବଡ଼ କଲେଜରେ ପଢିବ, ତେବେ ସେ ଯାଉ । ତାକୁ ମନା କରନାହିଁ । ଶେଷରେ ସେଇଆ ହେଲା ।

ଥରେ ବାପାଙ୍କ ସହିତ ଘର ତିଆରି ଜିନିଷ ସାମଗ୍ରୀ କିଣିବା ପାଇଁ ଅନୁଗୁଳ ଯାଇଥିଲି । ଟଙ୍କାତକ ଗୋଟିଏ ଥଳିରେ ଧରି ଦୋକାନକୁ ଯିବା ବେଳେ ରାସ୍ତାରେ ଥଳିଟି କେଉଁଠି ପଡିଗଲା । ଦୋକାନରୁ ବସାଘରକୁ ଫେରିଲୁ ଓ ବାଟସାରା ଖୋଜି ଖୋଜି ଆସିବାରୁ ତାହା ମିଳିଗଲା । ପିଲା ମନ ମୋର ଭାରି ବ୍ୟସ୍ତ ହେଉଥାଏ । ଥଳିଟି ମିଳିବା ପରେ ବାପାଙ୍କୁ ମୁଁ ପାଚରିଲି ବାପା ! ତୁମେ ତ ଜମା ବ୍ୟସ୍ତ ହେଉନାହଁ । ଏତେଗୁଡ଼ାଏ ଟଙ୍କା ହଜି ଯାଇଥିଲା । ଏହା କଣ କମ୍ କଥା । ତାଙ୍କ ସ୍ୱଭାବ ସୁଲଭ ଭଙ୍ଗୀରେ ବାପା ବୁଝାଇ ଦେଲେ - ଆରେ ! ଟଙ୍କା ତ ଆସିବ ଆଉ ଯିବ । ଏଥିରେ ବ୍ୟସ୍ତ ହେବାର କଣ ଅଛି । ମୋର ଚିନ୍ତା ତୁମେମାନେ । ତୁମେମାନେ ସମସ୍ତେ ଭଲ ମଣିଷ ହେଲେ ମୋର ଖୁସି । ଏଇ କଥାରୁ ମୋର ଏକ ନୂତନ ଜ୍ଞାନ ଉଦୟ ହୋଇଥିଲା । ଅର୍ଥ ପ୍ରତି ମୋ ଜୀବନର ଦୃଷ୍ଟିକୋଣ ସେହିଦିନଠାରୁ ବଦଳି ଯାଇଥିଲା ।

ବାପା ଆମର ନିରାମିଷ ଭୋଜନ କରନ୍ତି । ଆମେ କେବେ କେମିତି ପଚାରିଲେ ମାଆ କହେ ବାପା କହୁଛନ୍ତି ତାଙ୍କ ନାତି ହାତରୁ ଖାଇବେ । ଆମେମାନେ ବୁଝିନେଉ ଏହା

ବାପାଙ୍କର ବିଶେଷ ଇଚ୍ଛା । ସମୟକ୍ରମେ ବଡ଼ ଭାଇଙ୍କର ବିବାହ ହେଲା । ପୁଅଟିଏ ହୋଇ ବଡ ହେଲା । ତାପରେ ପୁଣି ବାପାଙ୍କୁ ପଚାରିଲୁ, ଏଥର ବାପା ଆମିଷ ଖାଇବ ? ବାପା କହିଲେ ନାଇଁମ ଆଉ କଣ ଆମିଷ ଖାଇବା ? ଏବେ ଆଉ ଦିହରେ ଯିବନି । ତା ପରେ ଆମେ ଆଉ ପଚାରି ନାହୁଁ । ଆମେ ଦେଖିବା ଦିନରୁ ବାପା ନିରାମିଷାଶୀ ହିଁ ଥିଲେ ।

ଦେବୀପୂଜା ପ୍ରତି ବାପାଙ୍କର ପ୍ରଗାଢ଼ ନିଷ୍ଠା । ଯେଉଁଆଡ଼େ ଗଲେ ସାଥିରେ ଠାକୁର ଡବା ନେଇଯାଆନ୍ତି । ଗାଧୁଆ ପରେ ଅଧ୍ୟାୟେ ଦେବୀସୂକ୍ତ ପଢି ସାରିଲେ ଆଉ ଯାହା । ଦୁର୍ଗାଷ୍ଟମୀ ଦିନ ଚଣ୍ଡୀପାଠ କରନ୍ତି । ମା ଭଗବତୀ ସହାୟ ହୁଅନ୍ତୁ ଲେଖି ଆଶୀର୍ବାଦ କରନ୍ତି । ମୃତ୍ୟୁର ତିନିଦିନ ଆଗରୁ ଅଚେତ ଅବସ୍ଥାରେ ଥାଇ ମଧ୍ୟ ଚଣ୍ଡୀପାଠ କରିବା ଭଳି ଜପ କରି ଚାଲିଥିଲେ ।

ଚାକିରି ଶେଷ ହେବା ପରେ ବାପାଙ୍କୁ କୁହାଗଲା ଏଥର ଟାଉନ୍ ଘରେ ରହିବା । ଗାଁରେ ରହିଲେ ଯାବତୀୟ ଅସୁବିଧା ହେଉଛି । ସେ କିନ୍ତୁ ଗାଁରେ ରହିବାକୁ ସ୍ଥିର କଲେ ଏବଂ ଗାଁର ବାଡିଘର ପରିବେଶ ତାଙ୍କୁ ଅପାର ଶାନ୍ତି ଦେଉଥିଲା ।

ଆଦ୍ୟ ଯୌବନର ଏକ ଆଦର୍ଶର ଆହ୍ୱାନରେ ମୋତେ ଥରେ ଜେଲ୍ ବରଣ କରିବାକୁ ପଡିଥିଲା । ସେତେବେଳେ ବାପାଙ୍କର ଚାକିରି ଶେଷ ହୋଇଥାଏ ଏବଂ ମୋର ଚାକିରି ଜୀବନର ଆରମ୍ଭ ହୋଇଥାଏ । ଚାକିରି ଚାଲିଯିବାର ଭୟ ମଧ୍ୟ ଥାଏ । ଆମ ପରିବାରରେ ଜେଲ୍ ଯିବା ଘଟଣା ଅଶ୍ରୁତପୂର୍ବ ଥିଲା । ବାପା ମୋତେ ଦେଖିବାକୁ ଜେଲ୍‌ଖାନା ଆସିଥିଲେ । ମୋତେ ଦେଖିଲେ, ମୁଣ୍ଡ ଆଉଁସିଲେ, କୁଣ୍ଢାଇ ଧରି କାନ୍ଦିଲେ । କହିଲେ ଯାହା କରିଛୁ ଠିକ୍ କରିଛୁ, ମା ଭଗବତୀ ସାହା ହେବେ ଓ ଫେରିଗଲେ । ବାପାଙ୍କ ସାମ୍ନାରେ ଦମ୍ଭଧରି କଥା ହେଉଥିଲି । ସେ ଫେରିଯିବା ପରେ ଧାର ଧାର ଲୁହ ବୋହି ଚାଲିଲା । ତେବେ ବାପାଙ୍କ ଆଶୀର୍ବାଦ ଯୋଗୁଁ ଆଦର୍ଶ ପ୍ରତି ନିଷ୍ଠା ଦ୍ୱିଗୁଣିତ ହୋଇଗଲା ।

ବାପାଙ୍କର ହୋମିଓପ୍ୟାଥି ଔଷଧ ବିଷୟରେ ଜ୍ଞାନ ଥିଲା । ଆମ ଘରେ ପ୍ରାଥମିକ ଚିକିତ୍ସା ହେଉଥିଲା ବାପାଙ୍କ ଔଷଧ ଡବାରୁ । ଗାଁର ଛୋଟବଡ଼ ଅନେକ ରୋଗୀ ତାଙ୍କର ଔଷଧ ପୁଡିଆରୁ ଭଲ ହେଉଥିଲେ ।

ଛୋଟ ଛୁଆମାନଙ୍କୁ କାଖକରି ବୁଲାଇବା ବାପାଙ୍କ ପାଇଁ ଗୋଟିଏ ଖୁସିକାମ । ସବୁ ନାତି ନାତୁଣୀ ତାଙ୍କ ପାଖରେ ଜମାହେବେ । ସବୁଠୁ ଛୋଟ ଯିଏ ସେ କୋଳରେ ବସିବ । ରାତି ଅଧରେ କାନ୍ଦିବା ଛୁଆକୁ କାନ୍ଧରେ ପକାଇ ଦୁଆରେ ନେଇ ବୁଲାଇବା ବାପା ଅନେକବାର କରିଛନ୍ତି । ଘରେ ବୋହୂମାନେ କାନ୍ଦୁରା ଛୁଆକୁ ଆଣି ବାପାଙ୍କ ପାଖରେ ଛାଡ଼ିଦେଲେ ସେ ଅନାୟାସରେ ତୁନି କରିଦିଅନ୍ତି ।

ଘର କାମରେ କୌଣସି ତ୍ରୁଟି ହେଲେ, ଜିନିଷ ନଷ୍ଟ ହେଲେ, କେହି କିଛି ଭୁଲ୍ କରିଦେଲେ ମା ବ୍ୟସ୍ତ ହୋଇପଡ଼େ । ରାଗିଯାଇ ଗାଳି କରିପକାଏ । ବାପା ମାଙ୍କୁ ବୁଝାଇ ଦିଅନ୍ତି - ପିଲା ଲୋକ, ଭୁଲ କରିଦେଲେ ରାଗ କାହିଁକି କରୁଛ ? ସେମାନେ ଆପେ ବୁଝିଯିବେ । ଘରର ଦାୟିତ୍ୱ ନିଅନ୍ତୁ । ନିଜ କାନ୍ଧରେ ପଡିଲେ ନିଜେ ବଢାଇ ଶିଖିଯିବେ ।

ସାଧାରଣ ପରିବାରରେ ଜନ୍ମ ହୋଇ ନିମ୍ନ ମଧ୍ୟବିତ୍ତ ସ୍ତରରୁ ଏକ ସମ୍ପନ୍ନ ପରିବାର ଗଢି ତୋଳିବାରେ ବାପାଙ୍କର ଯେଉଁ ସାଧନା ଥିଲା ତାହା ପ୍ରଣିଧାନ ଯୋଗ୍ୟ । ନିଜର ତ୍ୟାଗ, ସାଧନା, ପରିଶ୍ରମ ଓ ଉଚ୍ଚ ଅଭିଳାଷ ଫଳରେ ଆମେ ତାଙ୍କର ପୁତ୍ର କନ୍ୟାମାନେ ଆଜି ସମାଜ ମଧ୍ୟରେ ସୁପ୍ରତିଷ୍ଠିତ । ଆଜି ତାଙ୍କର ସ୍ମୃତିକୁ ସ୍ମରଣ କରି ତାଙ୍କର ଜୀବନଧାରାକୁ ଅନୁକରଣ କରିବା ସଂଗେ ସଂଗେ ଆଶୀର୍ବାଦ ଭିକ୍ଷା କରୁଛନ୍ତି, ଯେପରି ତାଙ୍କରି ଉତ୍ତର ଦାୟାଦ ଭାବେ ଆମେମାନେ ଜଣେ ଜଣେ ସଫଳ ନାଗରିକ ହୋଇପାରୁ ।

ସ୍ୱର୍ଗ ରାଜ୍ୟରୁ ଆମ ସମସ୍ତଙ୍କୁ ସେ ଆଶୀର୍ବାଦର ପୁଷ୍ପ ପ୍ରଦାନ କରନ୍ତୁ ଏହା ହିଁ ବିନମ୍ର ପ୍ରାର୍ଥନା ।

*ରାଉରକେଲା*
*ମାର୍ଚ୍ଚ, ୧୯୯୯*



# ପାଣିକୋଇଲି

କେନ୍ଦୁଝର, ଭଦ୍ରକ ଓ ଯାଜପୁର - ଏଇ ତିନୋଟି ଜିଲ୍ଲାକୁ ସଂଯୋଗ କରୁଥିବା ଜାଗାଟି ପାଣିକୋଇଲି ଛକ ନାଁରେ ଏକ ପରିଚିତ ସ୍ଥାନ । ଜାତୀୟ ରାଜପଥ ଉପରେ ଅବସ୍ଥିତ ଏହି ଛକଟି ଦିନେ ଗୋଟିଏ ସାଧାରଣ ସ୍ଥାନ ଥିଲା । ସମୟର ସ୍ରୁଅରେ ଆଜି ଏହା ଏକ ବିଶେଷ ସ୍ଥାନର ମର୍ଯ୍ୟାଦା ହାସଲ କରିବାକୁ ଯାଉଛି । ପ୍ରଗତିର ପ୍ରତିଦ୍ୱନ୍ଦ୍ୱିତାରେ ଏହି ସ୍ଥାନ ଏହାର ପୂର୍ବଜ ଯାଜପୁରରୋଡ଼ ଏବଂ ସମବୟସ୍କ ଚଣ୍ଡୀଖୋଲ, କୁଆଖିଆ ଏବଂ ଜାରକା ଆଦି ସ୍ଥାନକୁ ପଛରେ ପକାଇବାକୁ ବସିଲାଣି ।

ରାସ୍ତାଘାଟର ଉନ୍ନତି ସହିତ ଗାଡି ଚଳାଚଳର ସଂଖ୍ୟାବୃଦ୍ଧି କାରଣରୁ ଏହି ସ୍ଥାନର ମହତ୍ତ୍ୱ ଦିନକୁ ଦିନ ବଢିବାରେ ଲାଗିଛି । ନୂତନ ଭାବେ ଗଠିତ ଯାଜପୁର ଜିଲ୍ଲାର କେତୋଟି ମୁଖ୍ୟ ଦପ୍ତର ଏହି ଛକରେ ସ୍ଥାପିତ ହେବା ପରେ ଲୋକ ବସତି ମଧ ବୃଦ୍ଧି ପାଇବାରେ ଲାଗିଛି । ଚତୁଃପାର୍ଶ୍ୱରେ ଚାଷଜମି ଗୁଡ଼ିକ ଏବେ ଘର ଡିହରେ ପରିବର୍ତ୍ତିତ ହେବାରେ ଲାଗିଛି । ଏହି ପ୍ରକାର ବୃଦ୍ଧି ଲାଗି ରହିଲେ ଏଇ ସ୍ଥାନଟିର ଆକାର ଓ ମହତ୍ତ୍ୱ ବହୁଗୁଣିତ ହୋଇଯିବ ଏଥିରେ ସନ୍ଦେହ ନାହିଁ ।

ବର୍ତ୍ତମାନ ଆସନ୍ତୁ ଏଇ ଜାଗାର କେତୋଟି ବିଶେଷ ଦିଗ ବିଷୟରେ ଆଲୋଚନା କରିବା । ପାଣିକୋଇଲି ସମ୍ପର୍କରେ ଲୋକମାନେ ସେତେବେଳେ ଆସିଥାଆନ୍ତି, ଯେତେବେଳେ ମଧ୍ୟରାତ୍ରି କିମ୍ବା ଦୂରଯାତ୍ରା ସମୟରେ ବସ୍ କିମ୍ବା ଯାନଗୁଡ଼ିକ ଆସି ସେହି ସ୍ଥାନରେ ଅଟକି ଥାଆନ୍ତି । ଲମ୍ବା ରାସ୍ତାର ମଧ ଭାଗରେ ଅଳ୍ପ ସମୟ ବିଶ୍ରାମ ନେଇ ପାଣି ପିଇବା, ଚା ଜଳପାନ କରିବା, ଅଣ୍ଟା-ଗୋଡ଼ ସିଧା କରିବା, ପରିସ୍ରା କରିବା, ଗନ୍ତବ୍ୟସ୍ଥଳ ପାଇଁ କିଛି ମିଠା ଫଳ ଆଦି କିଣିନେବା ଆଦି କ୍ରିୟାର ସମ୍ପାଦନ ପାଇଁ ଯାତ୍ରୀଗଣ ଏଇଠି ଓହ୍ଲାଇ ଥାଆନ୍ତି ।

ଗାଡ଼ିରୁ ଓହ୍ଲାଇବା ପରେ ଆପଣଙ୍କ ଦୃଷ୍ଟି ଆକର୍ଷଣ କରିବ ଦୋକାନିମାନଙ୍କର ଆଲୋକସଜ୍ଜା । ଉଚ୍ଚ ସ୍ୱରରେ ବାଜୁଥିବା କ୍ୟାସେଟ୍ ଗୀତ ଏବଂ ଭଳିକି ଭଳି ଜଳଖିଆ, ଫଳ ଓ ଷ୍ଟେସନାରୀ ଦୋକାନ । ଆଧୁନିକତାର ଆବଶ୍ୟକତାକୁ ଆଖିରେ ରଖି ସ୍ଥାନୀୟ ବ୍ୟବସାୟୀ ଶ୍ରେଣୀ ଦିବାରାତ୍ର ଦୋକାନ ଖୋଲା ରଖିବାର ଅଭ୍ୟାସ କରି ସାରିଛନ୍ତି । ସମତଳ ଅଞ୍ଚଳର ଜଳବାୟୁରେ ଗୋସମ୍ପଦର ସଫଳ ବିନିଯୋଗ ଫଳରେ ଏ ସ୍ଥାନରେ ଦୁଧ ଛେନାର ବହୁଳତା ଦେଖାଯାଏ । ସେହି ଅନୁସାରେ ଛେନା ତିଆରି ସ୍ୱାଦିଷ୍ଟ ମିଠା ଜିନିଷ ମଧ୍ୟ ସୁଲଭ ଓ ଶସ୍ତା ଦରରେ ପ୍ରାପ୍ତ ହୋଇଥାଏ । ଜଳ ସ୍ତରର ନିକଟତ୍ୱ କାରଣରୁ ଏ ସ୍ଥାନରେ ପାଣିର ପ୍ରାଚୁର୍ଯ୍ୟ ରହିଛି । ଚାରି ପାଖରେ ଦୀର୍ଘ ସମତଳ ଅଞ୍ଚଳ ରହି ଥିବାରୁ ବାୟୁ ସଞ୍ଚାଳନର ବାଧା ନାହିଁ । ଗାଁ ଓ ସହରର ଏକ ସମିଶ୍ରିତ ବାତାବରଣର ଅନୁଭବ ଦେଇ ପାଣିକୋଇଲି ଯାତ୍ରୀଗଣଙ୍କର ମନମୁଗ୍ଧ କରିଥାଏ ।

ଏହା ସହିତ ଏ ସ୍ଥାନଟିରେ କେତୋଟି ଦିଗ ଯାତ୍ରୀମାନଙ୍କର କଟୁ-ତିକ୍ତ ଅନୁଭୂତିର କାରଣ ହୋଇଥାଏ ।

ପ୍ରଥମ ତିକ୍ତତା ମିଳେ ଉଚ୍ଚ ସ୍ୱରରେ ବାଜୁଥିବା ଏକାଧିକ କ୍ୟାସେଟ୍ ଦୋକାନର ମାଇକ୍‌ରେ ଗୀତ-ସଂଗୀତର ମୂର୍ଚ୍ଛନା । ସେ କୋଳାହଳ ଭିତରେ ନା ଗୀତ ବୁଝିହୁଏ ନା ସଂଗୀତର ଆନନ୍ଦ ମିଳିଥାଏ । ରାତ୍ରିର ନିସ୍ତବ୍ଧତାକୁ ଭାଙ୍ଗି ଏବଂ ଦିନ ବେଳାର କୋଳାହାକୁ ବୃଦ୍ଧି କରି ଏକ ଚଳମାନ ବଜାରର ଭାବନା ସୃଷ୍ଟି କରିବା ଛଡ଼ା ଶ୍ରୋତାମାନଙ୍କର ମାନସିକ ଶାନ୍ତି ବ୍ୟାହତ କରି ବିରକ୍ତିର କାରଣ ହୋଇଥାଏ ।

ଦ୍ୱିତୀୟ ବିରକ୍ତି ମିଳିଥାଏ ଶୌଚାଳୟର ଅଭାବ କାରଣରୁ । ରାସ୍ତା କଡ଼ର ଦୋକାନ ପଛରେ ଅପରିଚ୍ଛନ୍ନ, ପୂତିଗନ୍ଧମୟ ଜାଗାରେ ଆପଣ ନିଜର ଆବଶ୍ୟକ କ୍ରିୟା ସମାପନ କରିବାକୁ ବାଧ୍ୟ ହୁଅନ୍ତି । ସ୍ତ୍ରୀ-ପୁରୁଷ ମଧ୍ୟରେ ସ୍ୱାଭାବିକ ଲଜ୍ଜାର ବିଭାଜିକା ଦୂର କରି ଅଜଣା ଲୋକ ଗହଳିରେ ନିଜର ଶୌଚକ୍ରିୟା କରିବା ପାଇଁ ସମସ୍ତେ ବାଧ୍ୟ ଓ ନିରୁପାୟ ହୋଇ ପଡନ୍ତି । ଅତ୍ର ତତ୍ର ଏହି କାର୍ଯ୍ୟ ହେଉଥିବାରୁ ଏହାର ଦୁର୍ଗନ୍ଧ ଦୋକାନ ଆଡ଼କୁ, ରାସ୍ତା ଉପରକୁ ଆସିବା ମଧ୍ୟ ସ୍ୱାଭାବିକ ।

ତୃତୀୟ ବିରକ୍ତିଭାବ ଜନ୍ମିଥାଏ ଦୋକାନଗୁଡ଼ିକର ଆକୃତି, ବିକ୍ରେତାର ପୋଷାକ ଓ ମୁଖମଣ୍ଡଳର ପ୍ରସ୍ଫୁଟିତ ଅନିଚ୍ଛାଭାବର ଦର୍ଶନରେ । ରାସ୍ତା କଡ଼ରେ ଝୁମ୍ପୁଡ଼ି ଦୋକାନ ମାଳ ମାଳ ହୋଇ ଠିଆ ହୋଇଛି । ଦୋକାନ ଗୁଡ଼ିକର ଆସବାସ ପତ୍ର, ସାଜସଜ୍ଜା, ଗ୍ଲାସ୍, ପ୍ଲେଟ୍ ଓ ଚାମଚ ଆଦିର ରକ୍ଷଣାବେକ୍ଷଣ, ବିକ୍ରେତାମାନଙ୍କର ପୋଷାକ ପରିଚ୍ଛଦ ସହିତ ସେମାନଙ୍କର ମୁଖମଣ୍ଡଳର ଭାବଭଙ୍ଗୀରୁ ଏପରି ମନେହୁଏ, ଯେପରି ନିଜର ଅନିଚ୍ଛା ସତ୍ତ୍ୱେ ବାପା ବା ବଡ଼ଭାଇର ନିର୍ଦ୍ଦେଶ ପାଳନ ପାଇଁ ଅଥବା ମାଲିକ ପାଖରେ ଚାକିରି କରୁଥିବାରୁ ଏ ପ୍ରକାର କଷ୍ଟକର କାର୍ଯ୍ୟ କରିବାକୁ ସେମାନେ ବାଧ୍ୟ ହୋଇଥାଆନ୍ତି ।

ତେବେ ଏ ସମସ୍ତ ବିରକ୍ତି ବା ଅଶାନ୍ତିର ନିରାକରଣ ନିମିତ୍ତ ବିଚାରହେବା ଆବଶ୍ୟକ । ଏ ବିଚାର କେବଳ ପାଣିକୋଇଲି ନୁହେଁ ବରଂ ସମସ୍ତ ଅଞ୍ଚଳ ପାଇଁ ପ୍ରଯୁଜ୍ୟ । ସମାଜ ଓ ଶାସନର ମୂଳ ବିନ୍ଦୁ ବ୍ୟକ୍ତି ବା ଜନଗଣଙ୍କର ଆବଶ୍ୟକତାକୁ ଆଖିରେ ରଖି ସମାଜର ସଂଗଠନ ଗୁଡ଼ିକୁ ଏବଂ ସମୂହ ସ୍ୱାର୍ଥର ସୁରକ୍ଷାକୁ ଧ୍ୟାନ ଦେଇ ଶାସନ କଳର ଅଧିକାରୀବୃନ୍ଦ ଆଗେଇ ଆସିବା ଦରକାର ।

ସମାଜ ବ୍ୟବସ୍ଥା ଏକ ପରିବର୍ତ୍ତନଶୀଳ କ୍ଷେତ୍ର । ସମୟର ଆହ୍ୱାନକୁ ଗ୍ରହଣ କରି ସଚେତନ ସମାଜ ହିସାବରେ ଆମମାନଙ୍କୁ ଏହି ସ୍ଥାନର ସାମଗ୍ରିକ ବିକାଶ ପ୍ରତି ଧ୍ୟାନ ଦେବାକୁ ହେବ । ଏଥିପାଇଁ ପଞ୍ଚାୟତ ବ୍ୟବସ୍ଥା, ରାସ୍ତାଘାଟ ବିଭାଗ, ଜନସ୍ୱାସ୍ଥ୍ୟ ବିଭାଗ, ପରିବହନ ବିଭାଗ ଏବଂ ନଗର ଉନ୍ନୟନ ବିଭାଗ ସହିତ ବିଭିନ୍ନ ସାମାଜିକ ସଂଗଠନ ଯଥା - ବ୍ୟବସାୟୀ ସଂଘ, ଗାଡ଼ି ମାଲିକ ସଂଘ, ଯୁବକ ସଂଘଗୁଡ଼ିକ ମଧ୍ୟ ସକ୍ରିୟ ଅଂଶଗ୍ରହଣ କରିବା ଆବଶ୍ୟକ ହୋଇ ପଡିଛି । ସର୍ବୋପରି ଜିଲ୍ଲା ପ୍ରଶାସନ ମଧ୍ୟ ସମାଜର ପ୍ରଗତି ମୂଳକ କାର୍ଯ୍ୟ ପ୍ରତି ବିଶେଷ ଧ୍ୟାନ ଦେବା ଆବଶ୍ୟକ ।

*ଫେମ୍ବସା, ସୁନ୍ଦରଗଡ଼*
*ଅଗଷ୍ଟ, ୧୯୯୯*



# ମହାବାତ୍ୟାରୁ ମହାଶିକ୍ଷା

ଓଡ଼ିଶାରେ ମହାବାତ୍ୟା ସଂଘଟିତ ହୋଇଯାଇଛି । ହଜାର ହଜାର ନରନାରୀ ମୃତ୍ୟୁମୁଖରେ ପଡଛନ୍ତି । ଲକ୍ଷାଧିକ ଗୋରୁଗାଈଙ୍କର ପ୍ରାଣ ହାନି ଘଟିଛି । ଶତାଧିକ ଗାଁ ନିଶ୍ଚିହ୍ନ ହୋଇଯାଇଛି । ଦିଗନ୍ତ ବିସ୍ତାରୀ ଚାଷ ଜମିରେ ଲୁଣିପାଣି ମାଡିଯାଇଛି । ଅଗଣିତ ବୃକ୍ଷରାଜି ଲୋପ ପାଇଛନ୍ତି । ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ଜନଜୀବନ ବିଧ୍ୱସ୍ତ ହୋଇଯାଇଛି । ଏକ ଭୟଙ୍କର ଦୁର୍ବିପାକ ଘଟିଯାଇଛି ।

ଏବେ ସମଗ୍ର ଓଡ଼ିଶା ଏହି ଦୁଃସମୟର ସମ୍ମୁଖୀନ ହୋଇ ଥଇଥାନ କାର୍ଯ୍ୟରେ ଲାଗି ପଡିଛି । ସାରା ଭାରତର ପ୍ରତ୍ୟେକ କୋଣରୁ ଦେଶବାସୀ ଏହି ପରିସ୍ଥିତିର ମୁକାବିଲା କରିବାକୁ ଆଗେଇ ଆସିଛନ୍ତି । ପୂର୍ବାବସ୍ଥା ଫେରାଇ ଆଣିବାକୁ ଏକ ଯୁଗ ଲାଗିଯିବ ଏପରି ଅନୁମାନ ହେଉଛି ।

ଏତେବଡ଼ ଦାରୁଣ ପ୍ରାକୃତିକ ବିପର୍ଯ୍ୟୟରୁ ଦେଶବାସୀ ବିଶେଷ ଭାବେ ଓଡ଼ିଶାବାସୀ କିଛି ମହତଶିକ୍ଷା ଲାଭ କରନ୍ତୁ ଏହା ଆଶା କରାଯାଉଛି । ଏ ସମ୍ପର୍କରେ କେତୋଟି ବିଷୟ ନିମ୍ନରେ ଆଲୋଚନା କରାଯାଉଛି ।

### ସମୁଦ୍ର ସହିତ ସମ୍ପର୍କ

ଓଡ଼ିଶାର ପୂର୍ବଦିଗରେ ଦୀର୍ଘ ପ୍ରାୟ ୪୦୦ କି.ମି.ର ସମୁଦ୍ର ଉପକୂଳ ରହିଛି । ସମୁଦ୍ର ପଥରେ ବାଣିଜ୍ୟ ଯାତ୍ରା କରି ଏ ପ୍ରଦେଶର ଅଧିବାସୀ ଦିନେ ସୁନାମ ଅର୍ଜ୍ଜନ କରିଥିଲେ । ଏବେ ସମୟର ସ୍ରୋତରେ ଓଡ଼ିଆ ଜାତିର ସମ୍ପର୍କ ସମୁଦ୍ରଠାରୁ ଛିନ୍ନ ହୋଇଯିବାରେ ଲାଗିଛି । ସମୁଦ୍ରରେ ଡଙ୍ଗାବାହିବା, ମାଛଧରିବା କାର୍ଯ୍ୟ ଓଡ଼ିଆମାନେ ଏବେ କ୍ୱଚିତ୍ କରୁଛନ୍ତି । ଦକ୍ଷିଣଭାଗ ଉପକୂଳରେ ତେଲୁଗୁ ନୋଳିଆମାନେ ଏବଂ ଉତ୍ତରଭାଗ ଉପକୂଳରେ ବଙ୍ଗଳାଦେଶୀ ଧୀବରମାନେ ସମୁଦ୍ରର ଯାବତୀୟ କାର୍ଯ୍ୟରେ ନିଯୁକ୍ତ ଅଛନ୍ତି ।

ମାଛଧରା, ଜାଲବୁଣା, ଡଙ୍ଗାବୁହା, ମାଛ ବ୍ୟବସାୟ, ଲୁଣମରା ଆଦି ସାମୁଦ୍ରିକ କାର୍ଯ୍ୟାବଳୀରେ ଓଡ଼ିଆ ଲୋକମାନେ ସାମିଲ୍ ହେବା ସ୍ୱାଭାବିକ, ମାତ୍ର ତାହା ହେଉନାହିଁ ।

ଏ ଦିଗ ପ୍ରତି ଧ୍ୟାନ ଦେବା ଏବେ ଜରୁରୀ କାର୍ଯ୍ୟ ବୋଲି ମନେହୁଏ । ଉପକୂଳବର୍ତ୍ତୀ ବନ୍ଦରଗୁଡ଼ିକ ମଧ୍ୟ ସକ୍ରିୟ କରାଇବା ଆବଶ୍ୟକ । ସମୁଦ୍ର ସହିତ ସମ୍ପର୍କ ଯେତିକି ବୃଦ୍ଧି ହେବ ଆମ ସମାଜର ଆର୍ଥିକ ମେରୁଦଣ୍ଡ ସେତିକି ସବଳ ହେବ । ଏହା ସହିତ ଆମ ଜନଜୀବନ ସମୁଦ୍ର ଜନିତ ଦୁଃଖକୁ ଦେହସୁହା କରିବାରେ ଅଭ୍ୟାସ କରିନେବ ଏବଂ ବିପର୍ଯ୍ୟୟକୁ ପାର କରିବା ପାଇଁ ମାନବିକ୍ ଏବଂ ଶାରୀରିକ ଦୃଷ୍ଟିରୁ ପ୍ରସ୍ତୁତ ହୋଇ ରହିପାରିବ ।

## ସମୁଦ୍ର କୂଳର ସୁରକ୍ଷା

ସମୁଦ୍ରରୁ ଜୁଆର ମାଡ଼ି ଆସିବା, ସମୁଦ୍ର ବକ୍ଷରୁ ସ୍ଥଳଭାଗକୁ କ୍ଷିପ୍ରଗତିରେ ପବନ ବହିବା ଇତ୍ୟାଦି ସ୍ୱାଭାବିକ ଘଟଣା । ମାତ୍ର ଏହାର ବେଗକୁ ରୋକିବା ପାଇଁ କିଛି ପ୍ରତିବନ୍ଧକ ଆବଶ୍ୟକ । ଯଥା - ଜଙ୍ଗଲ ବଳୟ, ମାଟିର ବନ୍ଧ । ଏସବୁ ଆଗେ ରଖାଯାଇଥିଲା । ପରବର୍ତ୍ତୀ କାଳରେ ଏସବୁ ଲୋପ ହେବାରେ ଲାଗିଛି ଏବଂ ଚାଷ ଜମିରେ ପରିଣତ କରାଯାଉଛି । ଆଗାମୀ ଦିନରେ ଏହି ସୁରକ୍ଷାଜନିତ ବ୍ୟବସ୍ଥାର ପୁନଃନିର୍ମାଣ ସହିତ ଉପଯୁକ୍ତ ରକ୍ଷଣାବେକ୍ଷଣ ଉପରେ ଗୁରୁତ୍ୱ ଦେବା ଆବଶ୍ୟକ ହୋଇପଡିଛି । ଏହି କାର୍ଯ୍ୟକୁ ଏକ ସାମାଜିକ କର୍ତ୍ତବ୍ୟ ମନେକରି ସବୁ ସ୍ତରରେ ଜାଗରଣ ଅଣାଯାଉ, ଯାହା ଫଳରେ ଆମ ପ୍ରଦେଶର ଭବିଷ୍ୟତ ମଙ୍ଗଳମୟ ହୋଇପାରିବ । ସମୁଦ୍ର କୂଳରେ ଏକ ଉଚ୍ଚ ସଡ଼କର କଳ୍ପନା ମଧ୍ୟ କରାଯାଉଛି । ଏହା ଦୁଇ ପ୍ରକାର ବ୍ୟବହାର ହେବ । ପ୍ରଥମରେ ଗମନାଗମନର ସୁବିଧା ଏବଂ ଦ୍ୱିତୀୟରେ ଜଳ ପ୍ଲାବନ ସମୟରେ ଉଚ୍ଚସ୍ଥାନକୁ ଆଶ୍ରୟସ୍ଥଳ ଭାବେ ବ୍ୟବହାର ହୋଇପାରିବ । ବିଶେଷକରି ବନ୍ଧ ବା ସଡ଼କପଥଗୁଡ଼ିକ ଗୋରୁ ଗାଈଙ୍କର ଆଶ୍ରୟସ୍ଥଳ ହୋଇପାରିବ ।

## ବାତ୍ୟା ନିରୋଧକ ଗୃହ ନିର୍ମାଣ

ବାତ୍ୟା ଓ ବନ୍ୟାର ପ୍ରକୋପରୁ ରକ୍ଷା ପାଇବା ପାଇଁ ସ୍ୱତନ୍ତ୍ର ପ୍ରକାରର ଗୃହ ନିର୍ମାଣ କରାଯିବା ଆବଶ୍ୟକ । ଜାପାନରେ ବାରମ୍ବାର ଭୂମିକମ୍ପ ହେଉଥିବା କାରଣରୁ ବାଉଁଶ ଓ କାଗଜ ପଟିର ଘର ତିଆରି ହେଉଥିବା ବିଷୟ ଆମେ ଜାଣିଥାଉ । ସେହିପରି ଓଡ଼ିଶାର ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ବାତ୍ୟା ନିରୋଧର ଉଦ୍ଦେଶ୍ୟକୁ ଆଖି ଆଗରେ ରଖି ଗୃହ ନିର୍ମାଣ କରିବା ପାଇଁ ଯୋଜନା ପ୍ରସ୍ତୁତ କରାଯିବା ଆବଶ୍ୟକ । ଏଥିପାଇଁ ସ୍ୱତନ୍ତ୍ର ଭାବେ ଗବେଷଣା କରାଯାଇ ଏକ ସ୍ୱତନ୍ତ୍ର ଡିଜାଇନ୍‌ର ଆବିଷ୍କାର କରାଯାଇପାରେ ।

### ଗ୍ରାମ ଏକତା

ଗ୍ରାମ ବହୁଳ ଓଡ଼ିଶା ପ୍ରଦେଶରେ ସମାଜ ଜୀବନର ମୂଳ ସ୍ତର ଭାବେ ପ୍ରତ୍ୟେକ ଗ୍ରାମର ନିଜସ୍ୱ ସଂଗଠନ ଓ ଶକ୍ତିର ପରିଚୟ ରହିଛି । ସ୍ୱାଧୀନତା ପରବର୍ତ୍ତୀ କାଳରେ ଦଳୀୟ ରାଜନୀତିର କୁପ୍ରଭାବ ଫଳରେ ରାଜନୈତିକ ଦଳକୁ ନେଇ ଗ୍ରାମ ଜୀବନ ଖଣ୍ଡ ବିଖଣ୍ଡ ହେବାରେ ଲାଗିଛି । ଏହାର ସମାପ୍ତି କରିବାକୁ ହେବ । ଗାଁ ଗୁଡ଼ିକରେ ଆକସ୍ମିକ ଦୁର୍ବିପାକକୁ ସାମ୍ନା କରିବାକୁ ସାମୂହିକ ଭାବେ ପ୍ରସ୍ତୁତରହିବା ଆବଶ୍ୟକ ।

ଦୁର୍ବିପାକ ପରବର୍ତ୍ତୀ କାଳରେ ଜନଜୀବନର ସୁରକ୍ଷା, ଘରବାଡ଼ିର ଥଇଥାନ, ରିଲିଫ୍ ସାମଗ୍ରୀର ସୁବଣ୍ଟନ ଆଦି କାର୍ଯ୍ୟ ଗ୍ରାମ ସଂଗଠନ ଦ୍ୱାରା ସହଜରେ ହୋଇପାରିବ । ଲୋଭ ଓ ଇର୍ଷାର ବଶବର୍ତ୍ତୀ ହୋଇ କେତେକ ସ୍ଥାନରେ ଉଦ୍‌ଭ୍ରାନ୍ତ ଯୁବଗୋଷ୍ଠୀ ବିଶୃଙ୍ଖଳ ଆଚରଣ କରିଛନ୍ତି । ବାହାରୁ ଯାଉଥିବା ରିଲିଫ୍ ଦଳ ପ୍ରତି ଲୋକମାନଙ୍କର ଅସଦ୍ ବ୍ୟବହାର ଘଟଣା ଲୋକଲୋଚନକୁ ଆସିଛି । ଏ ପ୍ରକାର ବିଶୃଙ୍ଖଳା ଦୂରୀକରଣର ଏକମାତ୍ର ଉପାୟ ଗ୍ରାମ ଏକତା ।

### ସ୍ୱାଭିମାନ ଜାଗରଣ :

ଦୁଃଖ ସମୟରେ ଧୈର୍ଯ୍ୟ ଓ ସାହସର ପ୍ରଦର୍ଶନ ହେଉଛି ମଣିଷପଣିଆର ପରିଚୟ । ସ୍ଥାନେ ସ୍ଥାନେ ଏହାର ଉଦାହରଣ ଗତ ଦୁର୍ବିପାକ ସମୟରେ ଏବଂ ପରବର୍ତ୍ତୀ ସମୟରେ ଦେଖିବାକୁ ମିଳିଛି । ମାତ୍ର ପ୍ରତ୍ୟକ୍ଷଦର୍ଶୀମାନେ ବର୍ଣ୍ଣନା କରିଛନ୍ତି ଯେ, ଗାଁର ପିଲା ବୁଢ଼ା, ସ୍ତ୍ରୀ ପୁରୁଷ ସକାଳୁ ସନ୍ଧ୍ୟାଯାଏ ରାସ୍ତା ପାଖରେ ରିଲିଫ୍ ପାଖରେ ରିଲିଫ୍ କେନ୍ଦ୍ରରେ ଧାଡ଼ି ଲଗାଇ ଠିଆ ହେଉଛନ୍ତି ଏବଂ ହାତ ପତାଇ ଦିଅ ଦି ବୋଲି ମାଗି ଚାଲିଛନ୍ତି ।

ଏପରିକି କାମ ପାଇଁ ଖାଦ୍ୟ ଯୋଜନା ମାଧ୍ୟମରେ ମିଳୁଥିବା କାର୍ଯ୍ୟ ପାଇଁ ଲୋକମାନଙ୍କର ଆଗ୍ରହ ଦେଖାଯାଉ ନାହିଁ । ଦୁର୍ବିପାକର ମୁକାବିଲା କରିବା ପାଇଁ ଧନବଳ ଅପେକ୍ଷା ମନୋବଳର ଆବଶ୍ୟକତା ଅଧିକ । ଏହି ମନୋବଳ ଆସିବ ସ୍ୱାଭିମାନରୁ । ଦୁଃଖୀ ଲୋକର ଏହି ସୂକ୍ଷ୍ମ ଗୁଣରାଜିର ଜାଗରଣ କରାଇବା ଏକ ମହତ କିନ୍ତୁ କଷ୍ଟକର କାର୍ଯ୍ୟ । ଏ କ୍ଷେତ୍ରରେ କାର୍ଯ୍ୟରତ ସମସ୍ତ ସଂଗଠନ ଯତ୍ନବାନ ହେବା ଜରୁରୀ ହୋଇପଡିଛି ।

### ନବନିର୍ମାଣର ଦୂରଗାମୀ ଲକ୍ଷ୍ୟ

ବାତ୍ୟା ବିଧ୍ୱସ୍ତ ଅଞ୍ଚଳରେ ଥଇଥାନ ଯୋଜନା ଭିତରେ ଦୂରଗାମୀ ଲକ୍ଷ୍ୟର ପ୍ରାଧାନ୍ୟ ରହୁ, ଏହା ମଧ୍ୟ ଏକ ଆବଶ୍ୟକ ଦିଗ । ଗୃହ ନିର୍ମାଣ, ଚାଷ ଜମିର ଉଦ୍ଧାର, ବୃକ୍ଷରୋପଣ, ରାସ୍ତାଘାଟ ମରାମତି ସମୟରେ ଦୀର୍ଘକାଳୀନ ଲାଭକୁ ବିଚାରକୁ ନିଆଗଲେ

ସାମୟିକ ସମସ୍ୟା ସମାଧାନ ସହିତ ଭବିଷ୍ୟତ ପାଇଁ ଦୃଢ ସମାଜ ବ୍ୟବସ୍ଥାର ମୂଳଦୁଆ ପଡିପାରିବ ।

ପରିଶେଷରେ ଗତ ମହାବାତ୍ୟା ଆମ ସମସ୍ତଙ୍କ ପାଇଁ ଯେଉଁ ମହାଶିକ୍ଷା ଆଣି ଦେଇଛି ତାହାର ଅନୁଧ୍ୟାନ କରିବା ପାଇଁ କେତୋଟି ସରକାରୀ ଏବଂ ବେସରକାରୀ ସଂସ୍ଥା ଗଢି ଉଠୁ ଏବଂ ସକ୍ରିୟ ହୋଇ ଉଠୁ, ଯାହା ସମଗ୍ର ସମାଜର ଜାଗ୍ରତ ପ୍ରହରୀ ଭାବେ କାର୍ଯ୍ୟ କରି ଚାଲିବ ଏବଂ ଭବିଷ୍ୟତରେ ବୃହତ୍‌ରୁ ବୃହତ୍ତର ଦୁର୍ବିପାକକୁ ମୁକାବିଲା କରିବା ପାଇଁ ଆମ ସମାଜ କ୍ଷମ ଓ ପ୍ରସ୍ତୁତ ହୋଇ ରହିବ ।

*ଡେମ୍ନେସା, ସୁନ୍ଦରଗଡ଼*
*ଜାନୁଆରୀ, ୨୦୦୦*



# ବସ ଯାତ୍ରୀ

ବସ୍‌ରେ ଯାତ୍ରା କରିବାର ଅନୁଭୂତି ଆମ ସମସ୍ତଙ୍କର ଅଳ୍ପ ବହୁତ ଅଛି । ସବୁ ଅନୁଭୂତି ସମାନ ନୁହେଁ । ତେବେ ଯାତ୍ରା ସମୟର କଟୁ-ତିକ୍ତ-ମଧୁର ଘଟଣାବଳୀ ବେଳେ ବେଳେ ବିଶେଷ ଧରଣର ଥାଏ, ଯାହା ବହୁଦିନ ଯାଏଁ ସ୍ମରଣୀୟ ହୋଇ ରହିଥାଏ । ଘଟଣାକୁ ଅନୁଧ୍ୟାନ କଲେ ତାହାର ପୃଷ୍ଠଭୂମିରେ ଥିବା ଅନେକ ବିଷୟ ସାମ୍ନାକୁ ଆସିଥାଏ । ତଳେ କେତୋଟି ସ୍ମରଣୀୟ ଘଟଣା ବର୍ଣ୍ଣନା କରାଯାଉଛି । ପାଠକମାନେ ନିଜ ନିଜର ଅନୁଭୂତି ସହ ମିଳାଇ ଦେଖିବେ ।

**ପ୍ରଥମ ଦୃଶ୍ୟ**

ଖରାଦିନର ଦ୍ୱିପ୍ରହ ବେଳ । କଟକରୁ ବସ୍‌ଟି ଛାଡ଼ିଛି । ଯାତ୍ରୀରେ ବସ୍‌ଟି ଭରପୂର । କେତେ କ'ଣ ଠିଆ ହୋଇ ଯାଉଛନ୍ତି । ବସ୍ ଯିବ ବଣେଇ । ଦୂର ବାଟ । ସେତେ ବେଳକୁ ବସ୍‌ର ଏକ ଘଣ୍ଟା ବିଳମ୍ବ ହୋଇ ସାରିଥାଏ । କଣ୍ଡକ୍ଟର ବ୍ୟସ୍ତ ଥାଏ । କେମିତି ଶୀଘ୍ର ଯାଇ ଖାଇବା ଜାଗାରେ ପହଞ୍ଚିବ । ଦିନ ବେଳାର ବସ୍ ଥିବାରୁ ବାଟ ପାସେଞ୍ଜର ମଧ ବସ୍‌ରେ ଉଠୁଥାନ୍ତି । ତେବେ କଣ୍ଡକ୍ଟର ଜଣ ଜଣ କରି ପଚାରୁଥାଏ - ଆପଣ ସିଧା ଖୁଣ୍ଟୁଣି ଯିବେ ତ, ଢେଙ୍କାନାଳ ଯିବେ ତ । ମଝିରେ ବସ୍ ରହିବନି ।

ଚୌଦ୍ୱାର ପାଖରୁ ତିନି ଜଣ କଲେଜ ପଢୁଆ ଝିଅ ବସ୍‌ରେ ଉଠିଲେ । ସେମାନଙ୍କୁ ମଧ କଣ୍ଡକ୍ଟର ସେହି ପ୍ରଶ୍ନ ପଚାରିଲା । ଉତ୍ତରରେ ସେମାନେ ସ୍ପଷ୍ଟ ଭାଷାରେ କହିଲେ ଆମେ ଯିବୁ ଖୁଣ୍ଟୁଣି । ବସ୍ ଦ୍ରୁତଗତିରେ ଚାଲିଥାଏ । କିଛି ବାଟ ଯିବା ପରେ ହଠାତ୍ ସେ ଝିଅଙ୍କ ଭିତରୁ ଜଣେ ବଡ଼ ପାଟିରେ କହିଲା ରଖନ୍ତୁ, ରଖନ୍ତୁ । ପାଖ ଯାତ୍ରୀମାନେ ଭାବିଲେ ବୋଧେ କିଛି ଅସୁବିଧା ହେଲା । ଝିଅଟି କିଛି ଜିନିଷ ଛାଡ଼ି ଆସିଛି । ତେଣୁ ବସ୍‌ରୁ ଓହ୍ଲାଇ ପଛକୁ ଫେରିବାକୁ ଚାହୁଁଛି । ବସ୍‌ର କ୍ଲିନର୍ ହ୍ୱିସିଲ୍ ବଜାଇ ବସ୍‌କୁ ରଖିଲା । କଣ୍ଡକ୍ଟର ତା'ର ବିରକ୍ତିଭାବ ପ୍ରକାଶ କରି କହିଲା ଯେ ଯେଉଁଠି ପାରିଲେ ଓହ୍ଲାଇବେ । ଚଢ଼ିଲା ବେଳେ ପଚାରିଲେ ସତ କଥା କହିବେନି । ଅଧା ବାଟରେ ରଖ ରଖ ବୋଲି କହିବେ । ଆଶ୍ଚର୍ଯ୍ୟ ଲୋକ !

ଯାତ୍ରୀଙ୍କ ଭିତରୁ ଜଣେ କଣ୍ଡକ୍ଟରଙ୍କୁ ବୁଝାଇ କହିଲେ, ହଉ ଛାଡ଼ ଛାଡ଼ । ଝିଅପିଲା ଗୁଡ଼ା । କଲେଜରେ ପଢୁଛନ୍ତି ବୋଧେ । ଖରା ବେଳଟାରେ ଘରକୁ ଫେରିବା ଲାଗି ଟିକିଏ ମିଛ କହିଦେଲେ ।

ଦଳ ଭିତରୁ ଗୋଟିଏ ଝିଅ ପଛକୁ ବୁଲିପଡ଼ି ଯାତ୍ରୀଙ୍କୁ ଚାହିଁ ଚିହିଁକି ଉଠି କହିଲା, ମୁହଁ ସମ୍ଭାଳି କଥା କୁହନ୍ତୁ । ଆମ ବିଷୟରେ କହିବାକୁ ଆପଣ କିଏ ? ମିଛ କହିଲି, ସତ କହିଲି ଆପଣଙ୍କର କ'ଣ ଗଲା ? ଆମକୁ କ'ଣ ମୂର୍ଖ ପାଇଛନ୍ତି ? ଆମେ ଜଣେ ଜଣେ ଗ୍ରାଜୁଏଟ୍ । ଏଇବାଟେ ଯେତେ ବସ୍ ଯିବେ ସମସ୍ତେ ଆମକୁ ଉଠାଇବେ । ଆମେ ଯେଉଁଠି କହିବୁ ସେଇଠି ରଖିବେ । ନହେଲେ ବସ୍ ଚାଲି ପାରିବନି । ବୁଝିଲେ, ଚୁପ୍‌ଚାପ୍ ବସନ୍ତୁ ।

ସେତିକି ବେଳେ କଣ୍ଡକ୍ଟର ହାତ ପତାଇ କହିଲା, ହଉ ଭଉଣୀ ! ପଇସାଟା ଦିଅ । ଝିଅଟି ଉତ୍ତର ଦେଲା, ଏତକ ବାଟକୁ ପଇସା କ'ଣ ? ଏତେ ବଡ଼ ବସ୍‌ବାଲା ଟଙ୍କେ ଦି' ଟଙ୍କା କ'ଣ ମାଗୁଛ ? ଭିକାରୀ ଭଳି ହାତ ପତାଉଛ ଲାଜ ଲାଗୁନି । ଏତକ କହି ଜଣ ଜଣ କରି ତିନି ଜଣ ଝିଅ ଓହ୍ଲାଇ ଗଲେ ।

ଝିଅମାନଙ୍କର ଏତାଦୃଶ୍ୟ ବ୍ୟବହାର ସମସ୍ତ ଯାତ୍ରୀଙ୍କୁ ମୁହୂର୍ତ୍ତକ ପାଇଁ ତାଟକା କରିଦେଲା । ପର ମୁହୂର୍ତ୍ତରେ ବସ୍ ପୁଣି ଚାଲିଲା ।

କଣ୍ଡକ୍ଟର କହୁଥିଲା, ଆଜ୍ଞା ଏହା ଆମ ପାଇଁ ନିତିଦିନିଆ ଘଟଣା । ଗାଳି ଶୁଣିବା ଆମର ଦେହସୁହା ହୋଇ ଗଲାଣି । କେବଳ ପୁଅ ପିଲା ନୁହେଁ, ଝିଅମାନେ ମଧ୍ୟ ଏ ପ୍ରକାର ଜୋର ଜବରଦସ୍ତି କରିବା ଆରମ୍ଭ କଲେଣି । ପେଟ ପୋଷିବା କଥା । ତେଣୁ ଚାକିରି ଖଣ୍ଡକ କରିଛୁ । ହେଲେ ବେଳେବେଳେ ଭାରି କଷ୍ଟ ହେଉଛି ଆଜ୍ଞା ।

### ଦ୍ୱିତୀୟ ଦୃଶ୍ୟ

ରାତି ସେତେବେଳକୁ ୧୦ଟା । ଏକ୍ସପ୍ରେସ୍ ବସ୍‌ଟି ରାଉରକେଲାରୁ ଛାଡ଼ିଛି । ଯିବ ଭୁବନେଶ୍ୱର । ଯାତ୍ରୀ ଭର୍ତ୍ତି । ବସ୍ ଆସି ରହିଲା ବଣେଇ ଛକ ବ୍ରାହ୍ମଣୀ ଚେକ୍‌ଗେଟ୍ ପାଖରେ । କେତେ ଜଣ କଟକ ଯାତ୍ରୀ ଅପେକ୍ଷା କରି ରହିଥିଲେ । କ୍ଲିନର ଚେକ୍‌ଗେଟ୍‌ରେ ଟୋଲ ଦେଇ ଆସିବା ଭିତରେ କଣ୍ଡକ୍ଟର ପଚାରିଲା - କଟକ ଯିବେ କି ? ଦୁଇ ଜଣଙ୍କ ପାଇଁ ସିଟ୍ ହେବ । ଲେଖକ ଓ ଅନ୍ୟ ଜଣେ ବସ୍‌ରେ ଉଠିଲେ । ବସ୍ ଆଗକୁ ଆଗକୁ ମାଡ଼ି ଚାଲିଲା ।

ଖରା ଦିନର ଥଣ୍ଡା ପବନ ଲାଗି ଯାତ୍ରୀ ସବୁ ଶୋଇ ପଡ଼ିଥାଆନ୍ତି । ଅଳ୍ପ କେତେ ଜଣ ଯାତ୍ରୀ ନିଜ ଭିତରେ କଥାବାର୍ତ୍ତା କରୁଥାନ୍ତି । କଣ୍ଡକ୍ଟର ଆସି ଟିକେଟ ପଇସା ସଂଗ୍ରହ କରିନେଲା । ବସ୍ ଭିତରେ ନୀଳ ବତୀର ହାଲକା ଲାଇଟ୍ ଥାଏ । ନୋଟ୍‌ଟିଏ ବଢ଼ାଇ କଣ୍ଡକ୍ଟରକୁ ଦେଲି । କହିଲି ଦେଖି ନିଅନ୍ତୁ । ଏହା ପାଞ୍ଚଶହ ଟଙ୍କିଆ ନୋଟ୍ । ସମସ୍ତଙ୍କ ପାଖରୁ ଟିକଟ ପଇସା ଅସୁଲ କରିବା ପରେ କଣ୍ଡକ୍ଟର ତା'ର ଟଙ୍କା ହିସାବ କରି ବସିଲା । ପ୍ରାଇଭେଟ୍ ବସ୍ । ପିଲାଳିଆ କଣ୍ଡକ୍ଟର ।

ବେଶଭୂଷା ଏବଂ କଥାବାର୍ତ୍ତାରୁ ଜଣା ଯାଉଥିଲା ଯେପରି ବସ୍ ମାଲିକର ଘର ଲୋକ । ଟଙ୍କା ଧରିବାର ଢଙ୍ଗ ମଧ୍ୟ ସ୍ୱତନ୍ତ୍ର । ପ୍ୟାଣ୍ଟର ଦୁଇ ପକେଟ୍‌ରେ ଟଙ୍କା, ପୁଣି ସାର୍ଟର ଦୁଇ ପକେଟ୍‌ରେ ଟଙ୍କା, ଟିକଟ ବହି ଦରକାର ନାହିଁ । ବସ୍ ଟିକଟ କେତେ ଲାଗେ ଯାତ୍ରୀମାନେ ଜାଣନ୍ତି । ତେଣୁ ଟଙ୍କା ଦେଇ ଦେଲେ କାମ ସରିଗଲା । ଟିକଟ କାଟିବା ବା ବାଣ୍ଟିବା ବ୍ୟବସ୍ଥା ନାହିଁ ।

ହଠାତ୍ କଣ୍ଡକ୍ଟର ନିଜ ସିଟ୍‌ରୁ ଉଡ଼ିପଡ଼ି ବ୍ୟସ୍ତ ବିବ୍ରତ ଦେଖାଗଲା । ଟଙ୍କା ଫେରାଇବା କଥା । ସେ ଆସି ପଚାରିଲା - ଆପଣ ପାଞ୍ଚଶହ ଟଙ୍କିଆ ଦେଇଛନ୍ତି ତ ? କହିଲି, ଆଶ୍ଚର୍ଯ୍ୟ କଥା ! ଦେଲାବେଳେ କହି କରି ଦେଲି, ମୁଣ୍ଡ ହଲାଇ ନେଲେ । ଏବେ ପୁଣି ପଚାରୁଛନ୍ତି ?

ପାଖ ଯାତ୍ରୀମାନେ ସମର୍ଥନ କରି କହିଲେ - ହଁ ହଁ ଆମ ଆଗରେ ତ ନେଲେ ? ଏ କି କଥା ! ଭଦ୍ରଲୋକଙ୍କୁ ଅପମାନ କରୁଛ ? କଣ୍ଡକ୍ଟର କହିଲା, ଆଜ୍ଞା ଦୁଇଜଣ କହିଲେ ଗୋଟିଏ ପାଞ୍ଚଶହ ଟଙ୍କିଆ ଦେଲେ । ମାତ୍ର ମୋ ହାତରେ ଗୋଟିଏ ପାଞ୍ଚଶହ ଟଙ୍କିଆ ନୋଟ୍ ଅଛି । ତେଣୁ ଜଣେ କେହି ଭୁଲ୍ ଦେଇଛନ୍ତି ।

ଯାତ୍ରୀ ଜଣେ ପୁଣି କହିଲେ, ଦେଖ ଭଲ କରି ଦେଖ । କେଉଁଠି ପଡ଼ି ଯାଇଥିବ ।

ସିଟ୍ ତଳ, ଗେଟ୍ ପାଖ, ଡ୍ରାଇଭର କ୍ୟାବିନ୍, ସବୁଆଡ଼େ ଖୋଜାଗଲା । ନୋଟ୍ ମିଳିଲା ନାହିଁ । ଶେଷରେ କଣ୍ଡକ୍ଟର ଆସି ଚାରିଶହ ଟଙ୍କା ଫେରାଇ ଦେଲା । କହିଲା, ଛାଡ଼ନ୍ତୁ ଆଜ୍ଞା ମୋର ତ ଭୁଲ୍ । ନେଲାବେଳେ ଠିକ୍ ଭାବେ ଦେଖିପାରି ନାହିଁ ।

କଣ୍ଡକ୍ଟର ପାଖରୁ ଅନୁତାପସୂଚକ ସ୍ୱଗତୋକ୍ତି ଶୁଣିବା ପରେ ଭାବିଲି, ମୋ ତରଫରୁ ଭୁଲ୍ ହୋଇନି ତ ? ଘରୁ ଦୁଇ ଖଣ୍ଡ ପାଞ୍ଚଶହଟଙ୍କିଆ ନୋଟ୍ ଆଣିଥିଲି । ପ୍ୟାଣ୍ଟର ଚୋରା ପକେଟ୍‌ରେ ରଖିଥିଲି । ଖଣ୍ଡିଏ ଦେଲି, ଆଉ ଗୋଟିଏ ଅଛି । ସେଇଟା ଦେଖିଲେ ହୁଅନ୍ତା । ତେବେ ଭିଡ଼ରେ ଉଠି ପକେଟ୍‌ରୁ ବାହାର କରିବ ଦେଖିବାକୁ ଇଚ୍ଛା ହେଲା ନାହିଁ । ମନରେ ଏକ ପ୍ରକାର ଶଙ୍କା ଭାବ ଆସିଲା । କାଳେ ଘରେ ଭୁଲ୍ ନୋଟ୍ ଦେଇଦେଲେ କି ! ଆଣିବା ବେଳେ ତ ନୋଟ ଦୁଇଖଣ୍ଡ ମୋଡ଼ା ହୋଇ ରଖା ହୋଇଥିଲା । ଶହେ ଟଙ୍କିଆ ନୋଟ୍ ତ ଦେଖିବାକୁ ପାଞ୍ଚଶହ ଟଙ୍କା ଭଳିଆ । ସେଇ ମୋଡ଼ା ନୋଟକୁ ଉଠାଇ ପକେଟ୍‌ରେ ଭର୍ତ୍ତି କରିଛି । ନିଜ ଆଖିରେ ତ ପାଞ୍ଚଶହଟଙ୍କିଆ ବୋଲି ଦେଖିନାହିଁ । ଏତେ ଜୋର୍‌ରେ ନିଜ କଥା ସାବ୍ୟସ୍ତ କରିବା ପରେ ବି ଯଦି ଏହା ଭୁଲ୍ ବୋଲି ଜଣାପଡ଼ିବ, ତେବେ ତ ବଡ଼ ଅପମାନ ହେବ । ହଉ ଛାଡ଼, କଟକରେ ଓହ୍ଲାଇ ଦେଖିବା । ଏମିତି ଭାବୁ ଭାବୁ ନିଦ ହୋଇଗଲା ।

ସକାଳେ ନିଦ ଭାଙ୍ଗିଲା କଟକରେ । ନୋଟ୍ କଥା ଭୁଲି ହୋଇଗଲା । ସେଦିନ ସନ୍ଧ୍ୟାରେ ଫେରିବାର ଥିଲା । ଆଡଭାନ୍ସ ଟିକେଟ ପାଇଁ କାଉଣ୍ଟରକୁ ଯାଇ ପର୍ସରୁ ଟଙ୍କା କାଢ଼ି ନେଲା ବେଳେ ସ୍ଥିର କଲି ଯେ ପାଞ୍ଚଶହଟଙ୍କିଆ ନୋଟ୍‌ଟି ଏଇଠି ଭଙ୍ଗାଇ ନେବା । କିନ୍ତୁ ଏ କ'ଣ ? ନୂଆ ନୋଟ୍‌ଟି, ପ୍ୟାଣ୍ଟର ଚୋରା ପକେଟ୍‌ରୁ ବାହାରିଲା । ମୋଡ଼ା ହୋଇ ରହିଛି । ଖୋଲି ଦେଖିଲା ବେଳକୁ

ଏହା ତ ଶହେ ଟଙ୍କିଆ । ଅନ୍ୟ ନୋଟ୍ ଭିତରେ ଏହା ନୂଆଁ ଥିବାରୁ ଏବଂ ସ୍ୱତନ୍ତ୍ର ସ୍ଥାନରେ ରଖାଯାଇଥିବାରୁ ସନ୍ଦେହ ବାକି ରହିଲା ନାହିଁ ଯେ ଗଲା ରାତିରେ ଯେଉଁ ନୋଟଟି କଣ୍ଡକ୍ଟର ନେଇଥିଲା, ତାହା ପାଞ୍ଚଶହ ନୁହେଁ, ଶହେଟଙ୍କିଆ ନୋଟ୍ ଥିଲା । ନିଜର ଭୁଲ୍ ବୁଝିବାରେ ବିଳମ୍ବ ହେଲା ନାହିଁ । ତେବେ ମନରେ ଗ୍ଲାନି ରହିଗଲା । ବସ୍‌ବାଲା ପାଖରେ ଚାରିଶହ ଟଙ୍କାର ଧାରୁଆ ରହିଗଲି । ପୁଣି କେବେ ସେହି ବସ୍ ଭେଟ ହେଲେ ଏବଂ ବସ୍‌ରେ ସେହି କଣ୍ଡକ୍ଟର ଥିଲେ, ଏ ଉଧାର ଶୁଝାଯାଇ ପାରିବ ।

### ତୃତୀୟ ଦୃଶ୍ୟ

ଏ ଘଟଣାଟି ଦିନ ବେଳର । ସକାଳ ୮ଟା ସମୟ ହେବ । ଲହୁଣୀପଡ଼ାରୁ ରାଉରକେଲା ଭିତରେ ଏକ ଜଙ୍ଗଲିଆ ଜାଗା । ରାସ୍ତା କାମ ଚାଲିଛି । ନେସନାଲ ହାଇୱେ ଘୋଷଣା ହେବା ପରେ ରାସ୍ତା ଚଉଡ଼ା ହେଉଛି । ପୁରୁଣା ପୋଲକୁ ଭାଙ୍ଗି ନୂଆ ପୋଲ ହେଉଛି । ସେ ଜାଗାରେ ଅଧା ରାସ୍ତା ବନ୍ଦ, ବାକି ଅଧା ରାସ୍ତାରେ ଗାଡ଼ି ପାର ହେଉଥାଏ ।

ସେହି ରାସ୍ତାରେ ସକାଳୁ ସକାଳୁ ରାଉରକେଲା ଯିବା ବେଳେ ହଠାତ୍ ଦେଖାଗଲା ଆଗରେ ଗାଡ଼ି ସବୁ ଅଟକି ରହିଛି । ଏ ପାଖରେ ଦଶ ପନ୍ଦର ଗାଡ଼ି ଓ ଆର ପାଖରେ ମଧ୍ୟ ସେତିକି ଗାଡ଼ି । ପାହାଡ଼ିଆ ରାସ୍ତା । ଦୁଇପଟେ ଖାଲ ଓ ଜଙ୍ଗଲ । ମଝିରେ ପୋଲ ତିଆରି କାମ ଚାଲିଛି । ଲୋକେ କାମରେ ଲାଗିଛନ୍ତି । ଗାଡ଼ିମାନଙ୍କରୁ ଓହ୍ଲାଇ ଲୋକମାନେ ମଧ୍ୟ ପୋଲ ପାଖରେ ଠିଆ । ଆମ ଡ୍ରାଇଭର ଯାଇ ଦେଖିଆସିଲା ଓ କହିଲା - ଆଜ୍ଞା ଘଣ୍ଟାଏ ସମୟ ଲାଗିବ ।

ସେଦିନ ରାଉରକେଲାରେ ଜରୁରୀ କାମ ଥାଏ । ଶୀଘ୍ର ପହଞ୍ଚିବାକୁ ପଡ଼ିବ । କୌତୂହଳବଶତଃ ଗାଡ଼ିରୁ ଓହ୍ଲାଇ ପୋଲ ପର୍ଯ୍ୟନ୍ତ ଚାଲି ଚାଲି ହୋଇ ଯାଇ ଦେଖିଲି ଯେ ଯେଉଁ ଛୋଟିଆ ରାସ୍ତା ଅଛି ସେଥିରୁ ମାଟି ଅତଡ଼ା ଧସି ଯାଇଛି । ସେଥିପାଇଁ ରାସ୍ତା କଡ଼ରେ ବାଲି ବସ୍ତା ପକାଇ ମଜବୁତ କରାଯାଉଛି । ତଳେ ଉପରେ ମିଶି କୋଡ଼ିଏ ଜଣ ଶ୍ରମିକ ବାଲି ବସ୍ତା ସଜାଇ ରଖୁଛନ୍ତି । ରାସ୍ତା ଯେତିକି ଠିକ୍ ଅଛି, ଛୋଟ ଗାଡ଼ି ପାର ହୋଇ ପାରନ୍ତା । ଠିକାଦାର ସେଇଠି ଠିଆ ହୋଇ କାମ ତଦାରଖ କରୁଥିଲେ । ତାଙ୍କୁ ପଚାରିଲି, ଛୋଟ ଗାଡ଼ିକୁ ଛାଡ଼ି ଦେଉନାହାନ୍ତି । ସେ କହିଲେ କେହି ମାନିବେନି ଆଜ୍ଞା। ଟ୍ରକ୍, ବସ୍, ସବୁ ଧସେଇ ପଶିବେ । ଯାହା ଅଛି ସେତକ ମଧ୍ୟ ଭୁଷୁଡ଼ି ଯିବ । ତେଣୁ ସମସ୍ତଙ୍କୁ ବନ୍ଦ କରାଯାଉଛି । ରାସ୍ତା ଠିକ୍ ହେବ, ଗାଡ଼ି ଛାଡ଼ିବ ।

ପଛ ଆଡୁ କିଏ ଜଣେ କହୁଥିବା ଶୁଣାଗଲା - ପୋଲ କାମ କରୁଛନ୍ତି । ତଳ-ପଟେ ବାଇପାସ୍ ହେବା କଥା । ପଇସା ଖାଇ ରାସ୍ତା କରୁ ନାହାଁନ୍ତି । ପବ୍ଲିକ୍ କଥା କିଏ ବୁଝୁଛି ? ଠିକାଦାର କଥାଟି ଶୁଣି ପାରିଲେ । କହିଲେ, ଦେଖୁନାହାଁନ୍ତି ଏଠି ଜାଗା ନାହିଁ । ଦୁଇ ପାଖେ ଖାଲ ଖବଣା, ପାହାଡ଼ ପଥର । ତେଣୁ ବାଇପାସ୍ ହୋଇପାରିଲା ନାହିଁ । ଆଉ ଅଳ୍ପ ସମୟ ରୁହନ୍ତୁ । ଏବେ ରାସ୍ତା ଖୋଲା ହୋଇଯିବ ।

ଦେଖୁ ଦେଖୁ ବାଲି ବନ୍ଧ କାମ ଶେଷ ହେଲା । ଠିକାଦାରଙ୍କ ଗୁମାସ୍ତା ପୋଲ ଦୁଇ ପାଖରୁ ପଥର, କାଠ ହଟାଇ ଦେଲେ । ସଙ୍ଗେ ସଙ୍ଗେ ଏକ ଦିଗର ବଡ଼ ବସ୍‌ଟିଏ ମାଡ଼ି ଆସିଲା ଓ ଅପର ଦିଗରୁ ଗୋଟିଏ ଜିପ୍ ଆଗେଇ ଆସିଲା । ଅଣ ଓସାରିଆ ପୋଲ ଉପରେ ଦୁଇ ପଟୁ ଦୁଇଟି ଗାଡ଼ି ମୁହାଁମୁହିଁ । ଜିପ୍ ଡ୍ରାଇଭର କହୁଛି ଆମେ ସବୁ ଛୋଟ ଗାଡ଼ି ଆଗେ ଯିବୁ । ବସ୍ ଲୋକ କହୁଛନ୍ତି ଛାଡ଼ ଛାଡ଼ ଆମର ବହୁତ ଡେରି ହେଲାଣି । କେହି କାହାକୁ ରାସ୍ତା ଛାଡ଼ିବାକୁ ନାରାଜ ।

ଠିକଦାର ଭ୍ରଦଲୋକ ବିରକ୍ତ ହୋଇ କହିଲେ, ଦିଅ ବନ୍ଦ କର ରାସ୍ତା, ଆଣ ପଥର କାଠ ପକା । ଆସନ୍ତୁ ପୋଲିସ୍‌ବାଲା ରାସ୍ତା ଖୋଲିବ । କେହି କାହାକୁ ଶୁଣୁ ନାହାଁନ୍ତି । ଦୁଇପଟର ଲୋକଙ୍କ ଭିତରେ ମୁହାଁମୁହିଁ ବାକ୍‌ଯୁଦ୍ଧ ଆରମ୍ଭ ହୋଇ ଯାଉଥାଏ । ଅବସ୍ଥା ଧୀରେ ଧୀରେ ସରଗରମ ହେଉଥାଏ ।

ଭିଡ଼ ଭିତରୁ ଦୁଇ ଜଣ ଭଦ୍ର ଲୋକ ବାହାରି ଜିପ୍ ଡ୍ରାଇଭରକୁ ବୁଝାଇ କହିଲେ, ଛାଡ଼ି ଦେ ଭାଇ, କାହିଁକି ଜିଦ୍ କରୁଛ । ଯାଆନ୍ତୁ ବସ୍‌ବାଲା । ତାଙ୍କର ବଡ଼ ଲୋକ ହୁଅନ୍ତୁ । କ'ଣ ଅଛି ଏ କଥାରେ । ସମସ୍ତେ ତ ଯିବା । ଦୁଇ ମିନିଟ୍, ପାଞ୍ଚ ମିନିଟ୍ ଭିତରେ କ'ଣ ଥାଏ । ଚାଲ ଚାଲ । ଦିଅ ଛାଡ଼ି ଦିଅ ।

ଜିପ୍ ବାଲା ଟିକେ ଥଣ୍ଡା ପଡ଼ିଲା । ଗାଡ଼ିକୁ ପଛକୁ ଫେରାଇଲା । ପଛକୁ ପଛ ଗାଡ଼ି ସବୁ ଲାଗି ରହିଥାନ୍ତି । ତାହାରି ଭିତରେ ଟିକିଏ ଜାଗା ମିଳିଗଲାରୁ ବସବାଲା ପାରି ହୋଇଗଲା । ତା'ପରେ ଗୋଟିଏ ପରେ ଗୋଟିଏ ଗାଡ଼ି ଠିକାଦାର ଲୋକଙ୍କ କଥା ଅନୁସାରେ ପାର ହୋଇ ଚାଲିଲେ । ମୋଟ ଏକ ଘଣ୍ଟା ସମୟ ସେହି ଜାଗାରେ କଟିଲା । ଅଚାନକ ଭିଡ଼ ଭିତରୁ ଜଣେ ପୁରୁଣା ବନ୍ଧୁ ପ୍ରାୟ ଦଶ ବର୍ଷ ପରେ ଭେଟ ହୋଇଗଲେ । ମୋର ସମୟ ନଷ୍ଟର କ୍ଷତି ଭରଣା ହୋଇଗଲା ।



# ନିର୍ବାଚନର ବ୍ୟଥା

ଆମ ଦେଶରେ ନିର୍ବାଚନରୂପୀ ଘଟଣା ଆଉ ନୂଆ ହୋଇନାହିଁ । ନିର୍ବାଚନ ହେବ; ଅର୍ଥାତ ଟିଭି, ଖବରକାଗଜ, ରେଡ଼ିଓ ଆଦି ସମସ୍ତ ଗଣମାଧ୍ୟମ ବ୍ୟସ୍ତ ହୋଇ ପଡ଼ିବେ । ସମଗ୍ର ଦେଶବାସୀ ଉତ୍‌କର୍ଣ୍ଣ ହୋଇ ଚାହିଁ ରହିବେ । ନିର୍ବାଚନ କମିଶନଙ୍କଠାରୁ ଆରମ୍ଭ କରି ପୁଲିଂ ଅଫିସର ପର୍ଯ୍ୟନ୍ତ ଏଥି୍ ସହିତ ସମ୍ପୃକ୍ତ ସମଗ୍ର ସରକାରୀ କଳ ସକ୍ରିୟ ହୋଇ ପଡ଼ିବ । ଜାତୀୟ ସ୍ତରର ଦଳ, ପ୍ରାଦେଶିକ ଦଳ ଏବଂ ସ୍ୱାଧୀନଭାବେ ରହୁଥିବା ପ୍ରାର୍ଥୀଗଣ ନିଜର ସଜବାଜରେ ଲାଗି ରହିବେ । ଖିଆପିଆ ଭୁଲି ଘରଦ୍ୱାର ଛାଡ଼ି ସମସ୍ତେ ଠିଆ ନିର୍ବାଚନ ରୂପକ ରଣାଙ୍ଗନରେ । କାନ୍ଥବାଡ଼ରେ ଛପା ହୋଇଥିବା ପ୍ରାର୍ଥୀର ଫଟୋ, ଚିହ୍ନ ଓ ନିବେଦନ । ମାଇକଗୁଡ଼ିକରେ ଶୁଣିବାକୁ ମିଳେ ଭୋଟ ଦିଅ, ଭୋଟଦିଅ । ଆମର ପ୍ରାର୍ଥୀ ଏହା ଆଉ ସେୟା । ବିନା କାମରେ ଘୂରି ବୁଲୁଥିବା ଯୁବକ ଓ ଯୁବତୀଙ୍କ ପୁଷମାସ । ସରକାରୀ କାମର ସବୁ ଯୋଜନା ବନ୍ଦ । ସବୁଆଡ଼ୁ ଗୋଟିଏ ଜବାବ ଇଲେକ୍‌ସନଟା ସରିଯାଉ ।

ସବୁ କ୍ଷେତ୍ରରେ ଗୋଟିଏ ଅନିଶ୍ଚିତତାର ଆବହାଓ୍ୱା । କ'ଣ ହେବ ? କେଉଁ ଦଳ ଜିତିବେ ? କିଏ କେଉଁ ମନ୍ତ୍ରୀହେବ ? ଆଗାମୀ ଦିନର ଲାଭକ୍ଷତିର ମିଶାଣ ଫେଡ଼ାଣ ସହିତ ପ୍ରତ୍ୟେକ ନିଜ ନିଜର ସ୍ୱପ୍ନକୁ ନେଇ ମସଗୁଲ । ନିଜ ଦଳର, ନିଜ ପ୍ରାର୍ଥୀଙ୍କର ଭବିଷ୍ୟତର ଅନିଶ୍ଚତତାକୁ ନେଇ ସମସ୍ତ ମହଲରେ ଗୁଞ୍ଜରଣ ।

ପାଞ୍ଚ ବର୍ଷକୁ ଥରେ ହେଉଥିବା ନିର୍ବାଚନ ଏବେ ପ୍ରାୟ ପ୍ରତ୍ୟେକ ବର୍ଷ ଥରେ ଲେଖାଏଁ ହେବାକୁ ଲାଗିଛି । କେବେ ଲୋକସଭା ପାଇଁ ଓ କେବେ ବିଧାନସଭା ପାଇଁ । କେବେ ପୁଣି ବାଇ ଇଲେକ୍‌ସନ ଓ କେବେ ମିଡ୍‌ଟର୍ମ ପୁଲ୍ । ସରକାରୀ କଳର ଜିଲ୍ଲା ଅଧିକାରୀଙ୍କଠାରୁ ଆରମ୍ଭ କରି ପୂରା ରାଜସ୍ୱ ବିଭାଗ, ପୁଲିସ ବିଭାଗ, ଶିକ୍ଷା ବିଭାଗ ଇତ୍ୟାଦିର କର୍ମଚାରୀଗଣ, ଭୋଟ ଗ୍ରହଣ, ଭୋଟ ଗ୍ରହଣ ପାଇଁ ଟ୍ରେନିଂ, ଭୋଟ ଗଣନା, ଭୋଟ ସମୟର ସୁରକ୍ଷା ଆଦି କାମ ପାଇଁ ନିଯୁକ୍ତ ।

ଶିକ୍ଷାନୁଷ୍ଠାନଗୁଡ଼ିକ ଦୁଇଦିନ ଆଗରୁ ଓ ଦିନକ ପର ଯାଏଁ ବନ୍ଦ । ଟ୍ରକ୍, ଜିପ୍, କାର ଆଦି ସାଧାରଣରେ ଚଳାଚଳ କରୁଥିବା ଯାନଗୁଡ଼ିକ ନିର୍ବାଚନ କାମଲାଗି ଅଧିଗୃହୀତ । ନ ହେବାକୁ ବାଟ ନାହିଁ । ସରକାରଙ୍କ ନିର୍ଦ୍ଦେଶ, ନିର୍ବାଚନ ଏମରଜେନ୍‌ସି । ଇଲେକ୍‌ସନ ଡ୍ୟୁଟିରୁ ମୁକ୍ତି ନାହିଁ । ଘରର କାମ ହେଉ ଡ୍ୟୁଟି ଛାଡ଼ି ଯିବା ଅସମ୍ଭବ । ଭଡ଼ାରେ ଗାଡ଼ିଟିଏ ମିଳିବ ନାହିଁ । ମାଇକ୍‌ଟିଏ ମିଳିବ ନାହିଁ । ଗେଷ୍ଟହାଉସଗୁଡ଼ିକ ମଧ୍ୟ ଇଲେକ୍‌ସନ ପ୍ରଚାର ପାଇଁ ବୁକ୍ ।

## ନିର୍ବଚନର ନିଶା

ଆମ ଦେଶର ନିର୍ବାଚନ ବୋଧହୁଏ ସାରା ବିଶ୍ୱରେ ନିଆରା । ଏଠି ସମସ୍ତ ସାବାଳକ ନାଗରିକ ଭୋଟ ଦେବେ । ଗୁପ୍ତ ଭୋଟ । ଭୋଟ ଦେବାବାଲାର ଚିନ୍ତା ନାହିଁ । ନିଜଆଡୁ ଖର୍ଚ୍ଚ ନାହିଁ, ଭୁଲ୍‌ପାଇଁ ଦଣ୍ଡନାହିଁ । ଭୋଟ ମାଗିବାବାଲାର ମଧ୍ୟ ରିସ୍କ ନାମକୁ ମାତ୍ର । ଅମାନତ ଟଙ୍କା ବହୁତ ଅଳ୍ପ । ପ୍ରଚାର ଖର୍ଚ୍ଚର ପରିମାଣ ନିଜ ଉପରେ ନିର୍ଭର କରେ । ନିର୍ବାଚନ ଜିତିଗଲେ କିନ୍ତୁ ମୁଣ୍ଡରେ ରାଜାଙ୍କ ହାତୀ କଳସ ଢାଳିଲା ଭଳି ।

ଲଟେରୀରେ ଯେପରି ଡାକ ଦିଆଯାଏ । ଗଲେ ଯିବ ଗୋଟିଏ ଟଙ୍କା । ପାଇଲେ ମିଳିବ ଦଶଲକ୍ଷ । ସୁବର୍ଣ୍ଣ ସୁଯୋଗ ହରାନ୍ତୁ ନାହିଁ । ଆଜି ଏଇ ମୁହୂର୍ତ୍ତରେ ଲଟେରୀ ଟିକେଟ କିଣି ଲକ୍ଷପତି ହେବାର ସୁଯୋଗ ନିଅନ୍ତୁ । ସେହିପରି ସରକାରୀ ଚାକିରି ଛାଡ଼ି ଠିକାଦାରୀ ଧନକୁ ବାଜି ଲଗାଇ, ନିଜର ପରିଚୟ, ଭାଷଣ ଚାତୁରୀ ଓ ଲୋକବଳକୁ ସାଥିରେ ଧରି ପ୍ରାର୍ଥୀଗଣ ରାଜରାସ୍ତାକୁ ଓହ୍ଲାଇ ଆସନ୍ତି । ଗୋଟିଏ ସିଟ୍ ପାଇଁ ୫ରୁ ୧୦ ଜଣ ପର୍ଯ୍ୟନ୍ତ ପ୍ରାର୍ଥୀ । ଏହା ଦେଶର ବର୍ଦ୍ଧିତ ଲୋକସଂଖ୍ୟାର ଅନ୍ୟ ଏକ ଉଦାହରଣ । ଇଞ୍ଜିନିୟରିଂ, ଡାକ୍ତରୀ କଲେଜରେ ନାଁଲେଖା ଏବଂ ସରକାରୀ ଓ ବେସରକାରୀ ସଂସ୍ଥାରେ ଚାକିରି ପାଇଁ ଯେପରି ୫ଟି ସ୍ଥାନ ପାଇଁ ୫୦ ଜଣ ପ୍ରାର୍ଥୀଙ୍କର ପ୍ରତିଯୋଗିତା । ୧୦ ଜଣ ପ୍ରାର୍ଥୀରୁ ଜଣେ ନିର୍ବାଚିତ ହେବେ । ଅନ୍ୟ ନଅଜଣ ହାରିବେ । ଏହା ଧ୍ରୁବସତ୍ୟ ହେଲେ ସୁଦ୍ଧା ନିର୍ବାଚନ ଲଢ଼େଇ ଶେଷ ହୋଇ ଭୋଟ ଗଣନା ପର୍ଯ୍ୟନ୍ତ ଅନିଶ୍ଚିତତା ଲାଗି ରହୁଛି ।

ଆମେ ଜିତିବୁ ଅପର ପକ୍ଷକୁ ଚିତ୍‌ପଟାଙ୍ଗ କରିବୁ । ଏଥର ସରକାର ଆମର । ଏ ପ୍ରକାର ବାହାସ୍ଫୋଟ ମାରୁଥିବା ପ୍ରାର୍ଥୀଗଣ ନିର୍ବାଚନର ଫଳାଫଳ ପ୍ରକାଶ ହେବା ପରେ ପରେ ସେଇ ମୁହଁରେ କହିବା ଆରମ୍ଭ କରିବେ । ଅପର ପକ୍ଷ, ବହୁତ ଟଙ୍କା ଖର୍ଚ୍ଚ କଲେ, ଲୋକଙ୍କୁ କିଣି ନେଲେ । ଭୋଟ୍ କେନ୍ଦ୍ରରେ ଜାଲିଆତି କଲେ ଇତ୍ୟାଦି ଅନେକ ଦୋଷାରୋପ । ପୁଣି ଆସନ୍ତା ନିର୍ବାଚନକୁ ଦେଖିବେ ସେହି ପ୍ରାର୍ଥୀ ରଣାଙ୍ଗନରେ ଅବତୀର୍ଣ୍ଣ । ଭବିଷ୍ୟତରେ ରଙ୍ଗିନ୍ ସ୍ୱପ୍ନରେ ବୁଡ଼ି ରହିବା ଭାଗ୍ୟବାଦୀ ହେବା ଡବଲ ଜମ୍ପର ଫାଇଦା ନେବା ଆଦିର ଲୋଭ ବୋଧହୁଏ ମଣିଷ ମନକୁ ବିଶେଷ ଭାବେ ଉଚ୍ଚାଭିଳାଷୀ ଲୋକମାନଙ୍କୁ ଚୁମ୍ବକ ପରି ଆକର୍ଷଣ କରିଥାଏ ।

## ନିର୍ବାଚନରେ ଖର୍ଚ୍ଚ

ନିର୍ବାଚନର ଚାକଚକ୍ୟ ବହୁ ଆଡମ୍ବର ଶେଷହେବା ପରେ ହିସାବ ହୁଏ କେତେ ଖର୍ଚ୍ଚ ହେଲା । କେଉଁ ପ୍ରାର୍ଥୀ କେତେ ଖର୍ଚ୍ଚ କଲେ, କେଉଁ ଦଳ କେତେ ଖର୍ଚ୍ଚ କଲା ଏବଂ ଦେଶକୁ କେତେ ଖର୍ଚ୍ଚର ବୋଝ ବହନ କରିବାକୁ ହେଲା । ବ୍ୟକ୍ତି ବିଶେଷ ପାଇଁ ନିର୍ବାଚନରେ ପ୍ରାର୍ଥୀ ହୋଇ ଖର୍ଚ୍ଚଭାର ବହନ କରିବା କମ୍ କଥା ନୁହେଁ । ରାଜନୈତିକ ଦଳଗୁଡ଼ିକ ମଧ୍ୟ ବ୍ୟବସାୟୀ ଗୋଷ୍ଠୀଠାରୁ ତଥା ବିଭିନ୍ନ ସୂତ୍ରରୁ ଏ ନିର୍ବାଚନ ଖର୍ଚ୍ଚ ସଂଗ୍ରହ କରିଥାନ୍ତି ।

ଦେଶ ପାଇଁ ତ ଅସରନ୍ତି ଭଣ୍ଡାର ରହିଛି । ବାର୍ଷିକ ବଜେଟ୍ ନିଅଣ୍ଟିଆ ବଜେଟ୍ ତିଆରି ଆମ ଦେଶର ଏକ ଧରାବନ୍ଧା ବ୍ୟବସ୍ଥା । ଆମେ ବିଦେଶୀ ଋଣ ନେବୁ । ତାକୁ ଦେଶର ବିକାଶରେ ଖର୍ଚ୍ଚ କରିବୁ । ବିକାଶର ଅର୍ଥ ତେଲଲୁଣର ଖର୍ଚ୍ଚ । ପେଟ ପାଇଁ ଖର୍ଚ୍ଚ । ସେ ସମସ୍ତ ଖର୍ଚ୍ଚରୁ ଫେରନ୍ତା ରାଶି ପରିମାଣ ନଗଣ୍ୟ । ତେଣୁ ଋଣ ଶୁଝାଯାଇ ପାରିବ ନାହିଁ । ଋଣ ଓ ଋଣ ଉପରେ ସୁଧ ଏପରି ଦେଶର ଋଣଭାର ବଢ଼ି ବଢ଼ି ଚାଲିଛି । ତା ଭିତରେ ଆଉ ଏକ ବଡ଼ ଅଟକଳର ଖର୍ଚ୍ଚ ହେଉଛି ନିର୍ବାଚନର ଖର୍ଚ୍ଚ । ଏହାକୁ ଟିକସ ଆକାରରେ ସାଧାରଣ ଲୋକଙ୍କ ପାଖରୁ ଆଦାୟ କରାଯିବ । ନହେଲେ ଋଣ ବୋଝ ହୋଇ ରହିଥିବ । ଟିକସ ବଢ଼ିଲେ ଦରଦାମ ବଢ଼ିବ । ପ୍ରଗତିମୂଳକ କାମ ପାଇଁ ଦେଶର ପାଣ୍ଠି ରହିବ ନାହିଁ । ଆର୍ଥିକ ଦୁର୍ଗତି ସୃଷ୍ଟି ହେବ । ଦେଶର ଆର୍ଥିକ ଅବସ୍ଥା ଦୁର୍ବଳ ହେବ ।

## ନିର୍ବାଚନର ଆହ୍ୱାନ

ଏ ପ୍ରକାର ବିପର୍ଯ୍ୟୟ ଆଣୁଥିବା ନିର୍ବାଚନ ଆମକୁ କି ପ୍ରକାର ସୁଖ ଦେଇଛି ? ଆମେ ସବୁ ଗଣତନ୍ତ୍ରର ବାନା ଧରି ଏ ପ୍ରକାର ଖର୍ଚ୍ଚବହୁଳ ନିର୍ବାଚନକୁ ଏବଂ ବାରମ୍ବାର ଘଟୁଥିବା ନିର୍ବାଚନକୁ ବୋହି ଚାଲିଛେ । ଦେଶ କେତେଦିନ ଏପରି ବୋଝକୁ ବହନ କରି ଚାଲିଥିବ ? ଝଡ଼ି, ବାତ୍ୟା, ମରୁଡ଼ି ଭଳି ନିର୍ବାଚନ ମଧ୍ୟ ଦେଶର ଆର୍ଥିକ ମେରୁଦଣ୍ଡକୁ ଦୋହଲାଇ ଚାଲିଛି । ନିର୍ବାଚନ କିନ୍ତୁ ମନୁଷ୍ୟକୃତ । ଏହାର ନିରାକରଣ ଉପାୟ ଚିନ୍ତାକରିବା ସମୟ ଏବେ ଆସିଯାଇଛି ।



# ବୃତ୍ତି ଏ ମୋ ପୋଷେ କୁଟୁମ୍ବ

ବୈଦେହୀଶ ବିଳାସ କାବ୍ୟରେ ପ୍ରଭୁ ଶ୍ରୀରାମଙ୍କର ଗଙ୍ଗାରେ ନୌଯାତ୍ରା ସମୟରେ, ନାଉଁରୀ ମୁହଁରେ କବିସମ୍ରାଟ ଉପେନ୍ଦ୍ରଭଞ୍ଜ ଯେଉଁ ପଦାବଳୀ ଖଞ୍ଜିଥିଲେ, ତହିଁରେ ଏ ପଦଟି ପାଠକଙ୍କ ମନକୁ ସର୍ବଦା ଛୁଇଁଥାଏ । ସମୟ ସମୟରେ ଏହି ପଦକୁ ଉଦାହରଣ ଦିଆଯାଏ- ''ବୃତ୍ତି ଏ ମୋ ପୋଷେ କୁଟୁମ୍ବ'', ଅପର ପଦଟି ହେଲା-''ବସାଇ ନ ଦେବି ପାଦ ନ ଧୋଇ ନାବ ।''

ନାଉରୀର ବୃତ୍ତି ନାଆ ବାହିବା ଭଳି, ଜଣେ କୃଷକର ବୃତ୍ତି କୃଷିକାର୍ଯ୍ୟ କରିବା ଏବଂ କୃଷିଲବ୍ଧ ସଂପଦକୁ ନେଇ କୁଟୁମ୍ବ ପରିପୋଷଣ କରିବା । ଏହି କୃଷିବୃତ୍ତି ବର୍ତ୍ତମାନ ଅନେକ ସମସ୍ୟାର ସମ୍ମୁଖୀନ ହେଉଛି ।

**ଚାଷ କାର୍ଯ୍ୟ ପ୍ରତି ହେୟଭାବ**

ପିଲାଟି ଦିନରୁ ମା'- ବାପା ପୁଅ ଝିଅଙ୍କୁ ବିଶେଷତଃ ପୁଅମାନଙ୍କୁ ତାଗିଦ୍ କରନ୍ତି, ଭଲକରି ପାଠ ପଢ । ପାଠ ପଢିଲେ ଚାକିରି କରିବୁ । ପାଠ ନ ପଢିଲେ ଚାଷ କରିବୁ । ଏହି କଥା ଶୁଣି ପିଲା ମନରେ ଏକ ବଦ୍ଧମୂଳ ଧାରଣା ଜନ୍ମ ନିଏ ଯେ ଚାକିରି କରିବା ସମ୍ମାନଜନକ କାର୍ଯ୍ୟ ଏବଂ ଚାଷ କରିବା ଏକ ନୀଚ କାର୍ଯ୍ୟ । ଏହି ମନସ୍ତତ୍ତ୍ୱକୁ ନେଇ ଶିଶୁଟି ଯେତେବେଳେ ଯୁବକ ହୁଏ, ସେତେବେଳେ ଚାଷକାର୍ଯ୍ୟ ପ୍ରତି ସ୍ୱତଃ ନିଜର ବୀତସ୍ପୃହଭାବ ଦେଖାଇଥାଏ ଏବଂ ଚାଷ କ୍ଷେତ୍ରକୁ ପରିତ୍ୟାଗ କରି ଚାକିରି ଅନ୍ୱେଷଣରେ ମନ ଲଗାଇଥାଏ ।

**ଚାଷ କ୍ଷେତ୍ରର ବୈଷୟିକ ଦିଗ ପ୍ରତି ଅବହେଳା:**

ଶିଳ୍ପ କ୍ଷେତ୍ରରେ ପ୍ରତ୍ୟେକ ବୈଷୟିକ ଜ୍ଞାନ ଯଥା- ଫିଟର, ୱେଲ୍ଡର, ମେସିନିଷ୍ଟ, ଇଲେକ୍ଟ୍ରିସିଆନ ଆଦି ପ୍ରତ୍ୟେକ ବିଭାଗର ସ୍ୱତନ୍ତ୍ର ପରିଚୟ ଅଛି । ସେହିପରି ଚାଷ କ୍ଷେତ୍ରରେ

ଜମି ଚିହ୍ନଟ କରିବା, ହଳ କରିବା, ଧାନ ବେଉଷଣ କରିବା, ଅମଳ କରିବା ଇତ୍ୟାଦି ଅନେକ ବୈଷୟିକ ଜ୍ଞାନ ସଂପୃକ୍ତ ଥିଲେ ମଧ୍ୟ ଏହାକୁ କୌଣସି ଗୁରୁତ୍ୱ ଦିଆଯାଉ ନାହିଁ । ଫଳ ସ୍ୱରୂପ ୧ ବର୍ଷରୁ ୨ ବର୍ଷ ପର୍ଯ୍ୟନ୍ତ ଆଇ.ଟି.ଆଇ. କୋର୍ସ କରିଥିବା ଯୁବକକୁ ଟେକ୍‌ନିସିଆନ କୁହାଯାଏ ଏବଂ ୧୦ ବର୍ଷ ପର୍ଯ୍ୟନ୍ତ ଚାଷର ଅଭିଜ୍ଞତା ଥିବା ଯୁବକକୁ କୁହାଯାଏ ''ଚଷାଟାଏ'' ।

## ଚାଷଜାତ ଦ୍ରବ୍ୟର ମୂଲ୍ୟ ନିର୍ଦ୍ଧାରଣରେ ପକ୍ଷପାତ

କ୍ଷେତରୁ ଫସଲ ଅମଳ କରିବା ପାଇଁ ଜଣେ ଚାଷୀକୁ ଜମିର କର, ଜମି ଚାଷ, ବିହନ, ସାର, ଜଳସେଚନ, ଶ୍ରମଦାନ, ରକ୍ଷଣାବେକ୍ଷଣ ଅମଳ ଆଦି ଅନେକ କାର୍ଯ୍ୟ କରିବାକୁ ପଡ଼ିଥାଏ । ଏ ସମସ୍ତ କାର୍ଯ୍ୟକୁ ବିଚାର କରି ଯଦି ଫସଲର ମୂଲ୍ୟ ନିର୍ଦ୍ଧାରଣ କରାଯାଏ ତେବେ ବର୍ତ୍ତମାନ ଧାନର ମୂଲ୍ୟ କ୍ୱିଣ୍ଟାଲ ପିଛା ୫୦୦ଟଙ୍କା ପରିବର୍ତ୍ତେ ଅତି କମ୍‌ରେ ୧୦୦୦ଟଙ୍କା ହେବ । ମାତ୍ର ସରକାରଙ୍କ କୃଷିଜାତ ଦ୍ରବ୍ୟ ନିର୍ଦ୍ଧାରଣ କରି ଲାଗୁ କରନ୍ତି । ଯାହା ଫଳରେ କୃଷକ ପକ୍ଷରେ ନିଜର ସମସ୍ତ ଲଗାଣ ଅସୁଲ କରିବା ତ ଦୂରର କଥା; ଏହାର ଅର୍ଦ୍ଧେକ ହାସଲ କରିବା କଷ୍ଟସାଧ୍ୟ ହୋଇ ପଡ଼େ । ଅପର ପକ୍ଷରେ ଶିଳ୍ପ କ୍ଷେତ୍ରରେ ସମସ୍ତ ଦ୍ରବ୍ୟର ମୂଲ୍ୟ ଶିଳ୍ପ ସଂସ୍ଥାମାନେ ନିଜେ ସ୍ଥିର କରିଥାନ୍ତି ଏବଂ ପ୍ରତ୍ୟେକ ଜିନିଷର ମୂଲ୍ୟ କିଭଳି ଭାବେ ପ୍ରତିବର୍ଷ ବଢ଼ି ଚାଲିଛି, ଏହା ଆମ୍ଭମାନଙ୍କୁ ଭଲ ଭାବେ ଜଣା ।

## ଚକବନ୍ଦୀ ଯୋଜନାର କଚ୍ଛପଗତି

ଜମିଗୁଡ଼ିକ ଚକ ଆକାରରେ ରହି ପାରିଲେ ଚାଷୀର ପରିଶ୍ରମର ମୂଲ୍ୟ ଯଥେଷ୍ଟ ବଢ଼ି ପାରନ୍ତା । ନିଜର ସମସ୍ତ ଉଦ୍ୟମ, ପରିବାରର ସମସ୍ତଙ୍କର ଧ୍ୟାନ ଗୋଟିଏ ବା ଦୁଇଟି ଚକରେ ନିବଦ୍ଧ ରହିଲେ ସ୍ୱାଭାବିକ ଭାବେ ଜମିକୁ ଦୋଫସଲି ଓ ତିନିଫସଲି କରି ହୁଅନ୍ତା । ଏଥିପାଇଁ ସରକାରଙ୍କର ଚକବନ୍ଦୀ ଯୋଜନା ଆରମ୍ଭ ହୋଇଛି । ମାତ୍ର ଏହାର ଗତି ଏତେ ଧୀର ଯେ ଯୋଜନାର ସଫଳ ରୂପାୟନ ଏବେ ସୁଦ୍ଧା ସ୍ୱପ୍ନ ହୋଇ ରହିଯାଇଛି । ଏ ଦିଗରେ ଗାଁ ଗାଁରେ ଚାଷୀକୁଳ ସ୍ଥାନୀୟ ଭାବେ ଉଦ୍ୟମ କରିବା ଆବଶ୍ୟକ ହୋଇପଡ଼ିଛି ।

## ଅନ୍ୟାୟପୂର୍ଣ୍ଣ ଭାଇଭାଗ

ଗୋଟିଏ ଏକାନ୍ନବର୍ତ୍ତୀ ଚାଷୀ ପରିବାରରେ ଜଣେ ଭାଇ ଚାଷ କରି ଜୀବିକା ନିର୍ବାହ କରୁଥିବା ବେଳେ ଅନ୍ୟ ଭାଇ ଚାକିରି ବା ବ୍ୟବସାୟ ଆଦି କରି ଚଳୁଥିବାର ଦୃଷ୍ଟାନ୍ତ ଅନେକ ଅଛି । ମାତ୍ର ଭାଇଭାଗ ସମୟରେ ଚାକିରି ଲବ୍ଧ ଧନର କିମ୍ବା ବ୍ୟବସାୟର ଭାଗ ହୁଏ ନାହିଁ । ଭାଗ ହୁଏ ପୈତୃକ ସମ୍ପତ୍ତି ଭାବେ ଚାଷଜମିତକ । ଚାଷ କରୁଥିବା ଭାଇଟି ସର୍ବସ୍ୱାନ୍ତ ହୁଏ । ମାତ୍ର ଚାକିରିଆ ଓ ବେପାରୀ ଭାଇର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ରହିଥାଏ । ଦୁର୍ଭାଗ୍ୟବଶତଃ ଏପରି ଏକ ଅନ୍ୟାୟ ବ୍ୟବସ୍ଥାର ଆମ ସମାଜରେ ଏଯାଏଁ ପରିବର୍ତ୍ତନ ହୋଇ ପାରି ନାହିଁ ।

### ଚାଷୀର କର୍ମମୟ ଜୀବନ

ଚାଷ କ୍ଷେତ୍ରରେ ନିଯୁକ୍ତ ବ୍ୟକ୍ତିର ସକାଳୁ ସନ୍ଧ୍ୟାଯାଏ କାମ ଲାଗି ରହିଥାଏ । ଖରାବର୍ଷା ଶୀତ କାକର ପ୍ରତି ଭ୍ରୂକ୍ଷେପ ନକରି ପାଣି, କାଦୁଅରେ ମାଟି ସହିତ ମାଟି ହୋଇ ଫସଲ ଅମଳ କରୁଥିବା ଚାଷୀ ତୁଳନାରେ ଚାକିରିଆ ଓ ସଂଗଠିତ ଶ୍ରମିକ ଶ୍ରେଣୀର ଜୀବନ ଯାପନ ବହୁତ ଆରାମଦାୟକ । ଦିନକୁ କର୍ମ ନିର୍ଘଣ୍ଟ ସାଢେ ଛଅ ଘଣ୍ଟାରୁ ଆଠଘଣ୍ଟା । ସପ୍ତାହରେ ଦିନେ ସବେତନ ଛୁଟି । ବର୍ଷକୁ ବିଭିନ୍ନ ପ୍ରକାର ପ୍ରାୟ ଷାଠିଏ ଦିନର ଅନ୍ୟାନ୍ୟ ସବେତନ ଛୁଟି । ଚାକିରୀ ସମୟରେ ବିଭିନ୍ନ ପ୍ରକାରର ସୁବିଧା ସୁଯୋଗ ସାଙ୍ଗକୁ ଅବସର ସମୟରେ ଗ୍ରାଚୁଇଟି ଏବଂ ପେନ୍‌ସନ ଆଦି ରହିଛି । ଚାଷୀ ପାଇଁ ଏସବୁ ସୁଖ ସୁବିଧା ସ୍ୱପ୍ନ ସଦୃଶ । ଏ ପରିସ୍ଥିତିରେ ଯେ ଚାଷ କର୍ମକୁ ଆଦରି ନେଇଛି, ଅନ୍ୟମାନଙ୍କ ସମକ୍ଷରେ ସେ ଏକ ଅସମର୍ଥ ଏବଂ ବୋକା ବୋଲି ପରିଗଣିତ ହେବା ସ୍ୱାଭାବିକ ।

### ଜୟ ଜବାନ୍, ଜୟ କିଷାନ

ଭାରତର ତତ୍କାଳୀନ ପ୍ରଧାନମନ୍ତ୍ରୀ ଲାଲବାହାଦୁର ଶାସ୍ତ୍ରୀ ୧୯୬୫ ମସିହା ଭାରତ-ପାକିସ୍ଥାନ ଯୁଦ୍ଧ ସମୟରେ ଏହି ଡାକରା ଦେଇ ସୈନିକ ଓ କୃଷକମାନଙ୍କୁ ସମ୍ମାନଜନକ ପଦରେ ଅଳଙ୍କୃତ କରିଥିଲେ । ଗତ କାରଗିଲ୍ ଯୁଦ୍ଧ ସମୟରେ ପ୍ରାଣ ହରାଇଥିବା ଜବାନ୍‌ମାନଙ୍କୁ ବିଶେଷ ଭାବେ ସମ୍ମାନ ଦିଆଯାଇ ଶାସ୍ତ୍ରୀଙ୍କର ଇଚ୍ଛାକୁ ବଳବତ୍ତର କରାଯାଇଛି । ମାତ୍ର କୃଷି କ୍ଷେତ୍ରରେ କାର୍ଯ୍ୟରତ ଯେଉଁ ଅଗଣିତ କୃଷକ ନିଜ ଜୀବନକୁ ତିଳ ତିଳ ଭାବେ ଜାଳି ଦେବାରେ ଲାଗିଛନ୍ତି ସେମାନଙ୍କ ପାଇଁ କ'ଣ ମିଳୁଛି ? ମା'-ମାଟିରୁ ଫସଲ ଉତ୍ପାଦନ କରି ସମଗ୍ର ସମାଜକୁ ଖାଦ୍ୟ ଯୋଗାଉଥିବା, ଦେଶର ଆର୍ଥିକ ମାନଦଣ୍ଡକୁ ସୁଦୃଢ଼ କରୁଥିବା ଏହି ନିରନ୍ତର ସାଧକ କ'ଣ ଏପରି ଅଲୋଡ଼ା ଓ ଅଖୋଜା ହୋଇ ରହିଥିବ?

### କୃଷି ବିଦ୍ୟା ଓ କୃଷକ ଶ୍ରେଣୀ

ଦେଶରେ ଅନେକ କୃଷି ମହାବିଦ୍ୟାଳୟ ଏବଂ କୃଷି ବିଶ୍ୱବିଦ୍ୟାଳୟ ଖୋଲାଯାଇଛି । ଏହି ଶିକ୍ଷାଅନୁଷ୍ଠାନ ଗୁଡ଼ିକରୁ ପ୍ରତ୍ୟେକ ବର୍ଷ ଶହଶହ ସଂଖ୍ୟାରେ ଡିଗ୍ରୀଧାରୀ କୃଷିବିତ୍ ବାହାରୁଛନ୍ତି । ଏମାନେ କିନ୍ତୁ କୃଷକ ହେବାକୁ ନୁହେଁ, ବରଂ ଗୋଟିଏ ଚାକିରି ଯୋଗାଡ଼ କରିବା ପାଇଁ ଏହି ଡିଗ୍ରୀକୁ ମାଧ୍ୟମ ଭାବେ ବ୍ୟବହାର କରିଛନ୍ତି । କୃଷକର ମନୋଭାବ ଏବଂ ଜୀବନ ଶୈଳୀର କୌଣସି ସାମଞ୍ଜସ୍ୟ ଦେଖାଯାଉ ନାହିଁ । ସରକାରଙ୍କ ଅର୍ଥ ବିନିଯୋଗ କେବଳ ସାର ହେଉଛି । କୃଷି ବିଷୟକ କାଗଜ ଚାଷ ବୃଦ୍ଧି ହେଉଛି ସିନା ପ୍ରକୃତ ଫସଲ ଚାଷର ଅଭିବୃଦ୍ଧି ଦିଗରେ ଏହି ଶିକ୍ଷାନୁଷ୍ଠାନ ଗୁଡ଼ିକ ବିଶେଷ ସହାୟକ ହେଉ ନାହାଁନ୍ତି ।

### ଅର୍ଥକାରୀ ଫସଲ ଚାଷ

ବର୍ଷାଦିନିଆ ଚାଷ ସହିତ, ଫଳଚାଷ, ପନିପରିବା ଚାଷ ଏବଂ ଅନ୍ୟାନ୍ୟ ଅର୍ଥକରୀ ଫସଲ ଚାଷ ବହୁଳ ଭାବେ ହୋଇ ପାରିଲେ ଚାଷୀର ଆର୍ଥିକ ସ୍ୱଚ୍ଛଳତା ବୃଦ୍ଧି ପାଇବ । ଏ ଦିଗରେ

ଧୀରେ ଧୀରେ ସଚେତନତା ବୃଦ୍ଧି ପାଇଛି । ପାରମ୍ପରିକ ଚାଷ ସହିତ ଆଧୁନିକ ଚାଷର ମିଶ୍ରଣ କରାଇବା ମଧ୍ୟ ଚାଷୀମାନଙ୍କ ପାଇଁ ଏକ ଆହ୍ୱାନ । ନୂତନ ଧରଣର ବିହନ, ସାର, ଚାଷ ଉପକରଣ ଆଦିର ପ୍ରୟୋଗ ମଧ୍ୟ କ୍ରମେ କ୍ରମେ ବୃଦ୍ଧି ପାଉଛି । ଏହାର ପ୍ରସାର ପାଇଁ ସବୁ ଦିଗରୁ ଉଦ୍ୟମ ଆବଶ୍ୟକ ।

### ଆଦର୍ଶ ଚାଷୀକୁ ପୁରସ୍କାର

ସମାଜର ଅଧିକାଂଶ କ୍ଷେତ୍ରରେ ନିଷ୍ଠାବାନ, ପରିଶ୍ରମୀ ଏବଂ ଆଦର୍ଶ ସ୍ଥାନୀୟ ବ୍ୟକ୍ତିକୁ ପୁରସ୍କୃତ କରାଯାଇଛି । ଶିକ୍ଷକ, ପୋଲିସ, ସ୍ୱାସ୍ଥ୍ୟକର୍ମୀ ସହିତ, ସମବାୟ, ଜଙ୍ଗଲ, ସମାଜ ସେବା, ଖେଳ ଆଦି କ୍ଷେତ୍ରରେ ସୁନାମ ଅର୍ଜନ କରିଥିବା ବ୍ୟକ୍ତିଗଣ ପୁରସ୍କାର ବଣ୍ଟନ ବ୍ୟବସ୍ଥା ପ୍ରାରମ୍ଭ ହେବ, ସେତେଶୀଘ୍ର ଏ କ୍ଷେତ୍ରର ସମ୍ମାନ ବୃଦ୍ଧି ହେବ ।

### ଚାଷୀ ଓ ଗ୍ରାମ ସ୍ୱରାଜ୍ୟ

ଭାରତ ବର୍ଷ ଏକ କୃଷି ପ୍ରଧାନ ଦେଶ । ଏହାର କୃଷକ ଶ୍ରେଣୀ ଗ୍ରାମାଞ୍ଚଳରେ ବାସ କରନ୍ତି । କୃଷକ ଶ୍ରେଣୀର ବିକାଶ ସହିତ ଗ୍ରାମାଞ୍ଚଳର ବିକାଶ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ଗାନ୍ଧିଜୀଙ୍କର ଗ୍ରାମ ସ୍ୱରାଜ୍ୟ ଯୋଜନା ସ୍ୱାଧୀନ ଭାରତରେ ଫାଇଲ ଭିତରେ ବନ୍ଧା ହୋଇ ରହିଯାଇଛି । ଏ ଫାଇଲ୍ ଶୀଘ୍ର ଖୋଲାଯାଉ, ଗ୍ରାମ ସ୍ୱରାଜ୍ୟର ପ୍ରତିଷ୍ଠା ହେଉ ଏବଂ ଚାଷୀକୁଳକୁ ଉପଯୁକ୍ତ ସମ୍ମାନ ମିଳୁ, ଏହାହିଁ ଆଜିର ଆହ୍ୱାନ ।

*ଟେନ୍ସା, ସୁନ୍ଦରଗଡ଼*



# କୋମଳ କିଶୋର ମନ

ବାଲ୍ୟାବସ୍ଥା ପାର ହୋଇ ଯୌବନରେ ପାଦ ଦେବା ପୂର୍ବରୁ ଯେଉଁ କେତେ ବର୍ଷ ଅତ୍ୟନ୍ତ କୋମଳ ଏବଂ ନରମ ସ୍ତରର ଥାଏ ତାହା ପ୍ରତ୍ୟକ ବ୍ୟକ୍ତି ଜୀବନର ଏକ ଗୁରୁତ୍ୱପୂର୍ଣ୍ଣ ସମୟ । ଯୁବକ ଭଳି ଦେଖାଯାଉଥିବ, କିନ୍ତୁ ବାଳକ ହୋଇଥିବ । ନିଶ ଦାଢି ଉଠିଉଠି ଆସୁଥିବ । ଦେହ ମନରେ ଶକ୍ତିର ଫୁଆରା ଉଠି ଆସୁଥିବ । ଘରର ମୁରବିମାନଙ୍କର କଟକଣା ଥିବ, ପୁଣି ନଥିବ । ସାହସିକ କାର୍ଯ୍ୟ କରିବାକୁ ମନ ହେଉଥିବ, କରିପାରୁ ନଥିବ । ହାଫ୍‌ପ୍ୟାଣ୍ଟ ଛାଡିଥିବ, ପୁଣି ଛାଡି ନଥିବ । ସ୍କୁଲ୍ ଛାଡି କଲେଜକୁ ନୂଆ ହୋଇ ଯାଉଥିବ ।

ଏପରି ଏକ ଘଡିସନ୍ଧି କାଳଖଣ୍ଡକୁ ଅତି ଯତ୍ନ ସହକାରେ ଅତିବାହିତ କରିବା ଆବଶ୍ୟକ । ଏଥିପାଇଁ ଅଭିଭାବକ ଏବଂ ବୟସ୍କ ମୁରବିମାନଙ୍କର ଅଧିକ ଦାୟିତ୍ୱ ରହିଛି । ବିଶେଷ ଏହି ବୟସର କିଶୋର କିଶୋରୀମାନଙ୍କର ମନ ପାଇଁ ଉପଯୁକ୍ତ ଦିଗ୍‌ଦର୍ଶନ ଦେବା ହେଉଛି ଏକ ମୁଖ୍ୟ ଆହ୍ୱାନ । ପାଠକମାନଙ୍କ ବିଚାର ପାଇଁ ଏଭଳି କେତୋଟି ଦୃଷ୍ଟାନ୍ତର ଅବତାରଣା କରୁଛି ।

-ଏକ-

ମାଟ୍ରିକ୍ ପରୀକ୍ଷା ପାଇଁ ପିଲାମାନଙ୍କର ଜୋରସୋର ପଢାପଢି ଚାଲିଛି । ଭଲ ନମ୍ବର ନରଖିଲେ ଭଲ କଲେଜରେ ସିଟ୍ ମିଳିବ ନାହିଁ । ମେଟ୍ରିକ୍ ପରୀକ୍ଷାରେ ରେଜଲ୍ଟ ହେଉଛି କ୍ୟାରିଅରର ପ୍ରଥମ ସୋପାନ । ଜଣେ ଦଶମ ଶ୍ରେଣୀ ଛାତ୍ରର ବୟସ କେତେ ହେବ - ୧୪/୧୫ ବା ୧୬ । ଏ ବୟସରେ ପରୀକ୍ଷାର ଗୁରୁତ୍ୱ ଏବଂ ଭବିଷ୍ୟତ ପାଇଁ କଠିନ କାର୍ଯ୍ୟପନ୍ଥାର ଚୟନ କିପରି ସମ୍ଭବ ହେବ ତଥା ଯୁଗର ପ୍ରତିଯୋଗିତା ବିଷୟରେ ମାତାପିତାମାନେ ସଚେତନ ହେବା ସ୍ୱାଭାବିକ ।

ଅନେକ ମାତାପିତା ମାତ୍ରାଧିକ ଭାବେ ସଚେତନ । ମହାଭାରତର ଅର୍ଜୁନଙ୍କର ଲାଖବିନ୍ଧା ଭଳି ଏମାନେ ନିଜର ପୁଅର ପାଠପଢା ପାଇଁ ଏକାଗ୍ରଚିତ୍ତ । ପରୀକ୍ଷାରେ ଭଲ ନମ୍ବରପ୍ରାପ୍ତି, ଭଲ ନମ୍ବର କହିଲେ ଶହେରୁ ନବେ ବା ଅଶୀ । ପ୍ରଦେଶ ଭିତରେ ଦଶଜଣଙ୍କ ଭିତରୁ ଜଣେ ନ ହୋଇ ପାରିଲେ ଅନ୍ତତଃ ଜିଲ୍ଲା ଭିତରେ ଦଶଜଣଙ୍କ ଭିତରୁ ଜଣେ ହୋଇ ବାହାରିବା ଲକ୍ଷ୍ୟକୁ ନେଇ ଶୟନେ - ସ୍ୱପନେ - ଜାଗରଣେ ଏମାନେ ଚିନ୍ତାଗ୍ରସ୍ତ । ଏଥିପାଇଁ ସାଥୀ ବହି ଯୋଗାଡ, ଭଲ ଟ୍ୟୁସନ୍ ମାଷ୍ଟର ଯୋଗାଡ, ସକାଳୁ ସନ୍ଧ୍ୟା ପିଲାକୁ ତାଗିଦ୍, ବିରକ୍ତି, ଗାଳିଦେବା ଏ ପ୍ରକାର ଅଭିଭାବକମାନଙ୍କର ଦୈନନ୍ଦିନ କାର୍ଯ୍ୟ ।

ପିଲାକୁ ତାର ପାଠପଢା ବିଷୟରେ ଚିନ୍ତା କରିବାକୁ ପଡୁନାହିଁ । କେବଳ ବାପା କହିଲେ ଇଂରାଜୀ ଟ୍ୟୁସନ୍, ମା କହିଲେ ଗଣିତ କୋଚିଙ୍ଗ୍ ଏମିତି ହୋଇ ସକାଳ ସନ୍ଧ୍ୟା ସାଇକେଲ୍ ଖଣ୍ଡେ ଧରି ନିଜର ପିତାମାତାଙ୍କ ପ୍ରତି ଆନୁଗତ୍ୟ ପ୍ରଦର୍ଶନ ହେଉଛି ଏପ୍ରକାର ଜଣେ ଛାତ୍ର ବା ଛାତ୍ରୀର ଦିନଚର୍ଯ୍ୟା । ତା ସହିତ ଟ୍ୟୁସନ୍ କ୍ଲାସରେ ମାଡର ବ୍ୟବସ୍ଥା ମଧ୍ୟ ଅଛି । କେବଳ ପାଠରେ ଭୁଲ କଲେ ନାହିଁ, ପିଲାକୁ ଡରାଇ ଧମକାଇ ପାଠ ଆଡକୁ ମନ ଟାଣିବା ପାଇଁ କୁଆଡେ ମାଡର ପ୍ରୟୋଗ ହେଉଛି । ଏହା ପୁଣି ସବୁ ଆଡେ ବ୍ୟାପିଗଲାଣି । ଦଶମ ଶ୍ରେଣୀ ଛାତ୍ର ପାଠ ପଢା ଲାଗି ମାଡଖାଇବ, ଏକଥା କାନରେ ପଡିଲା ମାତ୍ରେ କିପରି ଅସ୍ୱାଭାବିକ ମନେ ହେଲା ।

ଏବିଷୟରେ ଦିନେ ନିଜ ପରିବାରରେ ଚର୍ଚ୍ଚା ହେଲା । ମାତ୍ର ଏ କଣ? ମାଡ ସପକ୍ଷରେ ତ ଅଧିକ ମତ । ଲେଖକ ଏ ବିଷୟରେ ଏକୁଟିଆ ପଡିଗଲେ । ସେହି ସମୟରୁ ମନରେ ଏହି ବିଷୟଟି ଘାରି ହେଉଛି ଯେ, ଆମେ କଣ କରୁଛେ ? ଏ କୋମଳ କିଶୋରମାନଙ୍କ ପ୍ରତି ଏପ୍ରକାର ମାନସିକ ଓ ଶାରୀରିକ ଯାତନା କେତେ ଦିନ ଯାଏ ଚାଲିଥିବ ?

-ଦୁଇ-

ଗ୍ରାମ ପରିବେଶକୁ ଛାଡି ସହର ପରିବେଶକୁ ନୂଆ ହୋଇ ଆସିଥିବା ଜଣେ କିଶୋରର କରୁଣ କାହାଣୀ ଶୁଣିବା ଦିନରୁ ଲେଖକ ମନରେ ଅଶେଷ ଦୁଃଖ ଆସିଛି । ବିଶେଷ ଭାବେ ଘଟଣାଟି ପରିଚିତ ଲୋକଙ୍କୁ ନେଇ ହୋଇଥିବାରୁ ଘଟଣାଟିକୁ ନିକଟରୁ ଜାଣିବାର ସୁଯୋଗ ମିଳିଥିଲା ।

ବଡ ଭାଇ ଜଣେ ମେଧାବୀ ଛାତ୍ର । ମେଟ୍ରିକ୍‌ରେ ଭଲ ରେଜଲ୍ଟ କରି, ଆଇ.ଟି.ଆଇ. ପାଶ୍ କରି ତାଳଚେର କୋଇଲା ଖଣିରେ ଭଲ ଦରମା ରେ ଚାକିରି କରିବା ପରେ ତାଙ୍କର ନିମ୍ନ ମଧ୍ୟବିତ୍ତ ପରିବାରରେ ଆନନ୍ଦ ଉଲ୍ଲାସର ଲହରି ଖେଳିଗଲା । ବଡ ଭାଇ ପରି ସାନ ଭାଇଟି ମଧ୍ୟ ମେଧାବୀ । ସ୍ୱାଭାବିକ ଭାବେ ବଡଭାଇ ମନରେ ସ୍ଥିର କରିଛନ୍ତି ଯେ ସାନକୁ ନିଜ ପାଖକୁ ନେଇ ପଢାଇବେ ।

ସହରରେ ରହିଲେ, ବଡ ସ୍କୁଲରେ ପଢିଲେ, ଗାଁର ଚାଳଘର, ଗୋବର ଲିପାସ୍କୁଲ୍ ଘର ଅପେକ୍ଷା ଉନ୍ନତ ପରିବେଶ ମିଳିପାରିବ । ଗାଁ ସ୍କୁଲ୍‌ର ମାଷ୍ଟରମାନଙ୍କ ଅପେକ୍ଷା ସହରର ଟ୍ୟୁସନ୍ ମାଷ୍ଟରମାନେ ପିଲାଙ୍କୁ ପାଠରେ ଦୋରସ୍ତ କରିଦେବେ । ସାଙ୍ଗସାଥୀମାନେ ଭଲ ନମ୍ବର ଆଣୁଥିବାରୁ ପିଲାମନରେ ମଧ୍ୟ ପ୍ରତିଯୋଗିତାର ଭାବନା ସୃଷ୍ଟି ହେବ । ନୂଆ ଏବଂ ଅଜଣା ଜାଗାରେ ରହିଲେ କେବଳ ବହି ପଢାରେ ସମୟ ଲାଗିବ । ଗାଁରେ ବିଲବାଡି ତୋଟାପୋଖରୀ ଆଦିରେ ବୁଲାବୁଲି କରି ସାଙ୍ଗ ମେଳରେ ବହୁତ ସମୟ ନଷ୍ଟ ହୋଇଯାଉଥିଲା ।

ବଡ ଭାଇର ନିଷ୍ପତ୍ତିକୁ ଘରେ ସମସ୍ତେ ମାନିନେଲେ । ସାନ ଭାଇ ମଧ୍ୟ । ସାନ ଭାଇ ମନରେ କିନ୍ତୁ ଅଲଗା ଆକର୍ଷଣ ଥିଲା । ସିନେମା ଭିଡିଓ ଦେଖିବାକୁ ମିଳିବ । ବଜାରରେ ଭଲିଭଲିକା ସାଜସଜ୍ଜା ଦେଖିବାକୁ ମିଳିବ । ସାଇକେଲ୍ ଧରି ବୁଲିବାର ମଜାହେବ । ଭଲ ଡ୍ରେସ୍ ପିନ୍ଧିବାକୁ ମିଳିବ ଇତ୍ୟାଦି ।

ପ୍ରକୃତ ସ୍ଥିତି କିନ୍ତୁ ଭିନ୍ନ ପ୍ରକାର ଥିଲା । ଚାକିରି କ୍ଷେତ୍ରର ଗୋଟିଏ ବଖରା ଫ୍ଲାଟ୍ ଘର । ନୂଆହୋଇ ଚାକିରି କରିଥିବାରୁ ଘରେ ଆସବାବପତ୍ର କହିଲେ ଖଟ ଖଣ୍ଡେ, ଶେଯଟିଏ । ବାସନ କୁସନ ଦି ଖଣ୍ଡ । ସାଇକେଲ୍ ଗୋଟିଏ । ଆଖପାଖରେ ସେହିପରି ଛୋଟଘରର ବ୍ୟାଚେଲର୍‌ମାନଙ୍କର ବସ୍ତି ।

ସ୍କୁଲ୍‌ରେ ନାଁ ଲେଖାହେଲା । ଟ୍ୟୁସନ୍ ମଧ୍ୟ ଆରମ୍ଭ ହେଲା । ଏହା ବ୍ୟତୀତ ସାନ ଭାଇ ପାଇଁ ଗୋଟିଏ ନୂଆ କାମ ମିଳିଲା । ସକାଳେ ସନ୍ଧ୍ୟାରେ ରୋଷେଇ କରିବ ।ପିଲାମନର ସ୍ୱପ୍ନ ଗୁଡିକ ଗୋଟିଏ ଗୋଟିଏ ହୋଇ ଚୂନା ହେବାରେ ଲାଗିଲା ।

ଶେଷ ସ୍ୱପ୍ନର ସମାପ୍ତି ସେହି ଦିନ ହେଲା, ଯେତେବେଳେ ବଡଭାଇ ତାକୁ ଘରଭିତରେ ଏକୁଟିଆ ଛାଡିଦେଇ ବାହାରୁ ତାଲା ପକାଇ ଡ୍ୟୁଟିକୁ ଚାଲିଗଲା । କାଳେ ସେ ନଥିଲା ବେଳେ ସାନଭାଇ ପାଠଛାଡି ବାହାରକୁ ବୁଲିବାକୁ ଚାଲିଯିବ । ବଡଭାଇପଣିଆର କଠୋର ତାଗିଦ୍ ।

ଏ ଦାରୁଣ ଦୁଃଖକୁ ସହ୍ୟକରିନପାରି ପିଲାଟିର କୋମଳ କିଶେର ମନ, ଜଳ ବିନା ମାଛ ଭଳି ଛଟପଟ ହେବାକୁ ଲାଗିଲା । ନିଜ ହାତରେ ନିଜର ସମସ୍ତ ଅନୁଭୂତ ବ୍ୟଥାକୁ ଗୋଟିଗୋଟି କରି ଲେଖି- ଏକ ଲମ୍ବା ଚିଠି ଛାଡିଦେଇ କିଶୋରଟି ନିଜର ସର୍ବଶେଷ ନିଷ୍ପତ୍ତି ନେଲା । ସନ୍ଧ୍ୟାରେ ବଡଭାଇ ଡ୍ୟୁଟିରୁ ଫେରି ତାଲା ଖୋଲି ଘରଭିତର ଦୃଶ୍ୟ ଦେଖି ହାଁ କରି ଚାହିଁ ରହିଲା । କଣ କରିବ, କୁଆଡେ ଯିବ ? ବାପା ମା ଙ୍କୁ, ସାହିପଡିଶାଙ୍କୁ କଣ କହି ବୁଝାଇବ, ସେହି ଚିନ୍ତାରେ ହଠାତ୍ ଭୋ କରି କାନ୍ଦିଉଠିଲା- ମୋ ଭାଇରେ !

-ତିନି-

ବାର୍ଷିକ ପରୀକ୍ଷାରେ ବିଦ୍ୟାଳୟର ଛାତ୍ରମାନଙ୍କ ମଧ୍ୟରେ ପ୍ରଥମ ସ୍ଥାନ ଅଧିକାର କରି ଭଲ ନମ୍ବର ରଖି ପାଶ୍ କରିଥିବାରୁ ମାନସର ମନରେ ଅଫୁରନ୍ତ ଆନନ୍ଦ । ଘରେ, ସ୍କୁଲ୍‌ରେ ତା ପାଇଁ ସମସ୍ତେ ଗର୍ବିତ । ନିଜ ପରିଶ୍ରମର ଫଳ ମିଳିଛି । ଅଭାବ ଅସୁବିଧା ଭିତରେ ନିଜକୁ ପ୍ରସ୍ତୁତ କରି ସଫଳତା ପ୍ରାପ୍ତ କରିଛି । ଏପ୍ରକାର ପିଲା କ୍ୱଚିତ୍ ମିଳିବେ । ହଜାର ଭିତରେ ଜଣେ । ଶୁଣୁଥିବା ଏମିତି ଅସଂଖ୍ୟ ପ୍ରଶଂସାରେ ମାନସ ପୋତିହୋଇ ପଡିଲା ।

ସ୍କୁଲ୍ ତରଫରୁ ଏବଂ ସରକାରଙ୍କ ତରଫରୁ ପ୍ରଶଂସାପତ୍ର ଓ ପୁରସ୍କାର ଗୋଟିଏ ପରେ ଗୋଟିଏ ମିଳିବାକୁ ଲାଗିଲା । ମାନସ ଛୋଟ ସହରରେ ଛୋଟିଆ ହିରୋଟିଏ ହୋଇଗଲା । ଖବର କାଗଜରେ ଫଟୋ ସହିତ ନାଁ ବାହାରିଲା ଦିନ ମାନସର ବାପାଙ୍କୁ ଜଣେ ସହକର୍ମୀ ପ୍ରାଇମେରୀ ଶିକ୍ଷକ ବନ୍ଧୁ ପଚାରିଲେ, ମାନସକୁ କେଉଁଠି ପଢାଇବେ । ବାପା ଉତ୍ତର ଦେଲେ ଏଇ ଭାବୁଛି ଅନୁଗୋଳ କଲେଜରେ ନାଁ ଲେଖାଇଦେବି ।

ସହକର୍ମୀଙ୍କ ମନକୁ କଥାଟା ପାଇଲା ନାହିଁ । କହିଲେ କଣ କରୁଛନ୍ତି, ଆପଣ ? ମାନସ ଭଳି ମେଧାବୀ ଛାତ୍ରକୁ ଏହି ଛୋଟିଆ କଲେଜରେ ଛାଡି ନଷ୍ଟ କରନ୍ତୁ ନାହିଁ । ତାକୁ ଭୁବନେଶ୍ୱରରେ ଛାଡନ୍ତୁ । ଖର୍ଚ୍ଚକୁ ଡରନ୍ତୁ ନାହିଁ । ଆପଣତ ସିଡୁଲ୍‌କାଷ୍ଟ । ତେଣୁ ସେଠାରେ ଆଦିବାସୀ ହରିଜନ ହଷ୍ଟେଲରେ ସିଟ୍ ମିଳିଯିବ । ଖର୍ଚ୍ଚପଡିବ ନାହିଁ । ବିଜେବି କଲେଜରେ ପଢିଲେ ଦେଖିବେ, ଆଗକୁ କେମିତି ସାରା ଓଡିଶାରେ ନାଁ ରଖିବ । ତେଣିକି ଭଲ ଚାକିରି କଥା ଛାଡନ୍ତୁ ସେ ତ ଥୁଆ । ମୋ କଥା ଏବେ ମାନନ୍ତୁ । ପରେ ମୋତେ ମନେ ପକାଇବେ ।

ସେୟା ହେଲା, ମାନସ ଏବେ ବିଜେବି କଲେଜର ଛାତ୍ର । ଆଦିବସୀ ହରିଜନ ଛାତ୍ରାବାସର ଅନ୍ତେବାସୀ । କିନ୍ତୁ ଏ କଣ ? ଏଠି ତ ମୟୁରଭଞ୍ଜର ହେମ୍ବ୍ରମ, ପଚ୍ଚାମୁଣ୍ଡାଇର ମଲ୍ଲିକ, ସୁନ୍ଦରଗଡର କେର୍‌କେଟା ଓ କେନ୍ଦୁଝରର କିସ୍ପୋଟା ସଂଜ୍ଞା ଥିବା ଛାତ୍ରମାନେ ମିଶି ନାନା ପାଠ୍ୟସ୍ତରକୁ ନେଇ ରହୁଛନ୍ତି । ମାନସ ପଡି ବସିବାବେଳେ ପାଖ ସିଟ୍‌ରେ ତାସ୍ ଖେଳ ଚାଲୁଛି । ସକାଳୁ ଉଠି ଘରୁ ଆଣିଥିବା ହାଣ୍ଡିଆ ରସ ଖୋଲି ପିଉଥିବା ସହପାଠୀ ମାନସକୁ କହୁଛି - ଆ, ଆ, ଆମ ଘର ଜିନିଷ ଟିକେ ଚାଖିଦେ । ସିଗ୍ରେଟ୍ ପିଇବା ଅଧିକାଂଶ ଛାତ୍ରଙ୍କର ଅଭ୍ୟାସ । ରାତି ନଅଟା, ପର୍ଯ୍ୟନ୍ତ ବାହାରେ ବୁଲାବୁଲି ।

ହଷ୍ଟେଲର ତତ୍ତ୍ୱାବଧାରକଙ୍କର କୌଣସି ଅଧିକାର ଥିଲା ଭଳି ଜଣା ପଡୁନାହିଁ । କେତେ ଜଣ ଛାତ୍ର ତ ଏମ୍.ଏଲ୍.ଏ. ହେବାର ସ୍ୱପ୍ନରେ ଭୋଳ । ନେତାଙ୍କ ଭଳି କୁର୍ତ୍ତା ପାଇଜାମା ପିନ୍ଧି ଅଳ୍ପଅଳ୍ପ ଦାଢିରଖି ବୁଲୁଛନ୍ତି । ମାନସ ଏ ପରିସ୍ଥିତିରେ କ□ଣ କରିବ

ବୁଝିପାରିଲାନାହିଁ । ଘରେ ଆସି ସମସ୍ତ ବିଷୟ ଜଣାଇଲା ପରେ ବାପାଙ୍କ ବୁଦ୍ଧିହଜିଗଲା । ଅନ୍ୟ କଲେଜରେ ନାଁ ଲେଖା ସମୟ ପାର ହୋଇଯାଇଛି । ପୁଅକୁ ବୁଝାବୁଝି କରି ଛାଡିଲେ । ହଷ୍ଟେଲରେ ପହଞ୍ଚି ମାନସ ପୁଣି ସେହି ପରିବେଶର ଶିକାର ହେଲା । କଲେଜରେ ନୂଆ ବନ୍ଧୁ ସୃଷ୍ଟିକରି ମନକଥା କହିବାର ଧୈର୍ଯ୍ୟ ତା'ର ରହିଲା ନାହିଁ । ନିଜ ସ୍କୁଲବେଳ ଛୋଟ ସହରର ବନ୍ଧୁମେଳ ସବୁବେଳେ ମନେପଡିଲା ।

ମାନସ ଏବେ ଚୁପ୍‌ଚାପ୍ ଏକୁଟିଆ ବସିରହେ । ଏପରି ଏକ ଭାରାକ୍ରାନ୍ତ ମନ ନେଇ ମାନସ ପ୍ରଥମ ବର୍ଷର କଲେଜ ପରୀକ୍ଷାଦେଲା ନାହିଁ । ଭୁବନେଶ୍ୱର କଲେଜ ଓ ହଷ୍ଟେଲର ସୁନେଲି ସ୍ୱପ୍ନ ଏଇଠି ଶେଷ ହେଲା । ଆସନ୍ତା ନୂଆ ବର୍ଷରେ ନୂଆ ହୋଇ ଘରପାଖ କଲେଜରେ ନାଁ ଲେଖାଇ ପାଠପଢା ଆରମ୍ଭ କଲା । ନୂଆ ଜାଗାରେ ଅନୁକୂଳ ପରିବେଶ ପାଇଗଲା । କୋମଳ କିଶୋର ମନରେ ପୁଣି ଥରେ ସରସତା ଭରିଗଲା । ସେଥର ପ୍ଲସ୍ ଟୁ ପରିକ୍ଷାରେ ମାନସ ୟୁନିଭରସିଟିରେ ଅଷ୍ଟମ ସ୍ଥାନ ଅଧିକାର କରିଥିଲା । ସେ ଆଉ ପଛକୁ ଫେରି ଚାହିଁନି । ଆଗକୁ ଆଗକୁ ମାଡି ଯିବାର ବାଟ ଯେମିତି ତାକୁ ମିଳିଗଲା ।

*ଟେନ୍ସା, ସୁନ୍ଦରଗଡ଼*
*ସେପ୍ଟେମ୍ବର, ୧୯୯୯*



# ସମାଜ ଚେତନା ବାହୀନୀ : ଏକ ଅନୁଭୂତି

କେଉଁଝର ଜିଲ୍ଲାର ଚମ୍ପୁଆ ସବ୍‌ଡିଭିଜନ ଭିତରେ ବଲାଣି ନାଁରେ ଗାଁ ଟିଏ । ଗାଁ ପାଖରେ ଗୋଟିଏ ଲୁହା ପଥର ଖଣି । ଖଣିଟି ଗଲା ଚାଳିଶ ବର୍ଷ ଧରି ଚାଲିଛି । ଖଣିକୁ ନେଇ ଗୋଟିଏ ଅଲଗା କଲୋନୀ ଗଢ଼ିଉଠିଛି । ଏହି ଖଣିସହରରେ ଓଡିଶାର ବିଭିନ୍ନ ଜିଲ୍ଲାରୁ ତଥା ଓଡିଶା ବାହାରୁ ବିହାର, ବଙ୍ଗଳା ଏବଂ ଉତ୍ତର ପ୍ରଦେଶ ଅଞ୍ଚଳରୁ ଲୋକମାନେ ଆସି ବାସ କରୁଛନ୍ତି ।

ଖଣି ସହରର ବାସିନ୍ଦାମାନଙ୍କର ଆର୍ଥିକ ଅବସ୍ଥା ବେଶ୍ ସ୍ୱଚ୍ଛଳ । ଆଧୁନିକ ଜୀବନର ସମସ୍ତ ସୁବିଧା ଯଥା - ପାଇପ୍ ପାଣି, ଇଲେକ୍‌ଟ୍ରି ଲାଇନ୍, ପିଚୁ ରାସ୍ତା , ଡାକ୍ତରଖାନା, ଟି.ଭି , ଟେଲିଫୋନ୍ ସହିତ ବସ୍ - ଟ୍ୟାକ୍ସି ଇତ୍ୟାଦି ଏଠାରେ ଉପଲବ୍ଧ ।

ଏ ସହରର କେତୋଟି ଦୁଃଖ ମଧ୍ୟ ଅଛି । ଏଠି ଲୋକଙ୍କର ଚଳଣି ଖର୍ଚ୍ଚ ବେଶି । ସଉକ୍ କରିବା ପାଇଁ ବେଶି ଖର୍ଚ୍ଚ କରିଥାଆନ୍ତି । ତା ସହିତ ନିଶା ସେବନ ମଧ୍ୟ ବହୁଳ ପରିମାଣରେ ରହିଛି । ଅନ୍ୟପକ୍ଷରେ ନିଜର ଶିକ୍ଷାଦୀକ୍ଷା ବହୁତ ଅଳ୍ପ । ଏ ଦିଗ ପ୍ରତି ମଧ୍ୟ ବାପା ମା'ମାନେ ଏତେ ଆଗ୍ରହୀ ନୁହନ୍ତି । ଫଳ ସ୍ୱରୂପ ଯୁବକ ଶ୍ରେଣୀ ଭିତରେ ବେକାର ସଂଖ୍ୟା ବେଶି । ମାତ୍ର ବେଶଭୂଷାରେ ଆଡମ୍ବର ଭରପୂର । ଆଉ ବ୍ୟବହାରରେ ଔଦ୍ଧତ୍ୟର ଝଲକ । ଚାକିରି ଶେଷରେ ସଞ୍ଚୟର ପରିମାଣ କମ୍ ରୁହେ । ତେଣୁ ଅବସର ପରେ କେତେକ କର୍ମଚାରୀ ଏ ଜାଗା ଛାଡି ଯିବା ପାଇଁ ନିଜକୁ ପ୍ରସ୍ତୁତ କରି ପାରନ୍ତି ନାହିଁ । ଦଳ ଦଳ ଭିତରେ ଝଗଡା, ମଦପିଇ ମାତାଲ ହେବା, ଚୋରି ନାରୀ ଆଦି ବିଭିନ୍ନ ପ୍ରକାର ଅସାମାଜିକ କାର୍ଯ୍ୟ ଏ ଜାଗାର ନିତିଦିନିଆ ଘଟଣା ।

ଏହି ଭଳି ସହରରେ କିଛି ପରିବର୍ତ୍ତନ ଆଣିବା ପାଇଁ, ଲୋକମାନଙ୍କ ଭିତରେ ଚେତନା ଜଗାଇବା ପାାଇଁ ଗୋଟିଏ କ୍ଷୁଦ୍ର ସଙ୍ଗଠନ ଗଢି ଉଠିଥିଲା । ତା'ର ନାଁ ଥିଲା - ସମାଜ ଚେତନା ବାହିନୀ । ସେହି ଖଣି ସହରରେ ରହୁଥିବା ଜଣେ ଅଧିକାରୀ ଅନ୍ୟ

କେତେ ଜଣ କର୍ମଚାରୀଙ୍କ ସହିତ ଆଲୋଚନା କରି ସ୍ଥାନୀୟ ବିଦ୍ୟାଳୟ ପରିସରରେ ଏହି ସଙ୍ଗଠନର ଶୁଭାରମ୍ଭ କରିଥିଲେ ।

ଯେଉଁମାନେ କର୍ମଚାରୀ ଶ୍ରେଣୀର, ଯୁବକ ହୁଅନ୍ତୁ ବା ମଧ୍ୟବୟସ୍କ, ସେମାନେ ନିଜ ଜୀବନରେ ନିଶା ବର୍ଜନ, ସଞ୍ଚୟ, ପରୋପକାର ଆଦିକୁ ନୀତି ଭାବେ ଗ୍ରହଣ କରିଛନ୍ତି, ସେହିମାନଙ୍କୁ ଏହି ଦଳରେ ସାମିଲ କରାଗଲା । ନିଷ୍ପତ୍ତି ହେଲା ଆମେମାନେ କିଛି କରିବା । ସୀମିତ ସମ୍ବଳ । ସ୍ଥିର ହେଲା ଯାହା କରାଯିବ, ତାହା କର୍ମଚାରୀମାନଙ୍କ ପାଇଁ ଉଦ୍ଦିଷ୍ଟ ହେବ । ପ୍ରତ୍ୟକ ସପ୍ତାହର ଶନିବାର ଦିନ ସଂଧ୍ୟା ୬ଟାବେଳେ ସଦସ୍ୟମାନେ ସ୍କୁଲ ଘରେ ଏକତ୍ର ହୋଇ ବିଚାର ଆଲୋଚନା କରିବେ ଏବଂ ସପ୍ତାହ ସାରା ଏହାକୁ କାର୍ଯ୍ୟକାରୀ କରିବେ ।

ପ୍ରଥମେ ଆରମ୍ଭ ସାକ୍ଷରତା କାର୍ଯ୍ୟ । ଏକରୁ ଆରମ୍ଭ ହୋଇ ଦଶଟି ପର୍ଯ୍ୟନ୍ତ କେନ୍ଦ୍ର ଖୋଲିଲା । ମନ୍ଦିର, କ୍ଲବ୍, ମହିଳା ସମିତି ଓ ଖୋଲା ଘର ଆଦି ହେଲା ସାମୟିକ ପାଠଶାଳା । ଶିକ୍ଷକ ହେଲେ ସଂଗଠନର ସ୍ୱେଚ୍ଛାସେବୀ । ଛାତ୍ର ହେଲେ ଖଣିର ନିରକ୍ଷର କର୍ମଚାରୀ । ସପ୍ତାହରେ କେବଳ ଗୋଟିଏ ଦିନ । ରବିବାର ଦିନ ସକାଳ, ଦ୍ୱିପ୍ରହର ବା ସଂଧ୍ୟା ସମୟରେ ଏହି ପାଠଶାଳାଗୁଡିକ ଚାଲିଲା । ସ୍ୱେଚ୍ଛାସେବୀମାନେ ନିଜ ଖର୍ଚ୍ଚରୁ ଏହାକୁ ଚଳାଇଲେ । କାମ ସୁରୁଖୁରୁରେ ଚାଲିଲା ।ମୋଟ ପ୍ରାୟ ୧୨୦ ଜଣ ନାଁ ଲେଖାଇଲେ ଏବଂ ବର୍ଷଶେଷରେ ଅର୍ଦ୍ଧାଧିକ ଲୋକ ସାକ୍ଷର ହୋଇଉଠିଲେ ।

ଦ୍ୱିତୀୟ ପ୍ରୟୋଗ ହେଲା - କିପ୍ ଫିଟ୍ । ପ୍ରତ୍ୟକ ରବିବାର ସକାଳେ ଖେଳ ପଡିଆରେ ଅଧାଘଣ୍ଟାର ବ୍ୟାୟାମ ବ୍ୟବସ୍ଥା । କୋଚ୍ ଓ ଶିକ୍ଷାର୍ଥୀ ଉଭୟେ କର୍ମଚାରୀ । ଲକ୍ଷ୍ୟଥିଲା ଶରୀର ଓ ସ୍ୱାସ୍ଥ୍ୟ ପ୍ରତି ସଚେତନତା । ବିଶେଷ ଭାବେ ନିଶାଗ୍ରସ୍ତ କର୍ମଚାରୀଙ୍କୁ ଏଥିରେ ସାମିଲି କରିବାପାଇଁ ଲକ୍ଷ୍ୟ ରଖାଗଲା । ଏକ ନୂଆ ଶବ୍ଦର କଳ୍ପନା କରାଗଲା । ନିଶା ସେବନ ନ କରୁଥିବା ଲୋକ ହେଲେ- ପିୟୁଷାହାରୀ, ଅର୍ଥାତ୍ ଅମୃତ ପାନକାରୀ । ବର୍ଷ ଶେଷରେ ଦେଖାଗଲା, ମୋଟ୍ ନାମଲେଖା ୧୫୦ ଜଣ ଏବଂ ସେଥି ମଧ୍ୟରୁ ନିୟମିତ ହେଲେ ମୋଟ୍ ୧୫ ଜଣ ।

ତୃତୀୟ କାର୍ଯ୍ୟକ୍ରମ ହେଲା - ମହିଳା ସଞ୍ଚୟ ଯୋଜନାର ପ୍ରସାର । ପ୍ରତ୍ୟେକ ସଦସ୍ୟ ନିଜ ଆଡୁ ଏହି ଯୋଜନାରେ ସଦସ୍ୟ ହୋଇ ମାସିକ ୫୦ ବା ୧୦୦ ଟଙ୍କା ଜମା କଲେ । ଏ କାମରେ ଜଣେ ଏଜେଣ୍ଟକୁ ନିଯୁକ୍ତ କରାଗଲା । ସଦସ୍ୟମାନେ ଚେଷ୍ଟାକରି ଏହି ଯୋଜନାକୁ ପ୍ରସାର କରାଇଲେ । ଦଳଗତ ପ୍ରଚେଷ୍ଟାର ଫଳ ସ୍ୱରୂପ ଶତାଧିକ ପାଶବୁକ୍ ଖୋଲି ପାରିଥିଲା ।

ଚତୁର୍ଥ ଯୋଜନା ଥିଲା - ବରିଷ୍ଠ ନାଗରିକଙ୍କୁ ସମ୍ବର୍ଦ୍ଧନା । ବରିଷ୍ଠର ସ୍ଥାନୀୟ ବ୍ୟାଖ୍ୟା କରାଗଲା ଯଥା - ୫୦ ବର୍ଷରୁ ଊର୍ଦ୍ଧ୍ୱ ବୟସ୍କ ବ୍ୟକ୍ତି ନିଜର ପୁଅ କିମ୍ବା ଝିଅର

ବିବାହ ସାରିଥିଲେ । ଏହାର ଅନ୍ତର୍ଭୁକ୍ତ ହେଲେ । ସମାଜପ୍ରଣତା ଜଗାଇବା ପାଇଁ ବରିଷ୍ଠତାରୁ କନିଷ୍ଠକୁ ଅନୁଭୂତିର ଧାରା ସ୍ୱତଃ ପ୍ରବାହିତ କରି ସମାଜ ଭିତରେ ଆତ୍ମୀୟତା ଭାବର ବୃଦ୍ଧିକରିବାକୁ ଏମାନଙ୍କୁ ଅନୁରୋଧ କରାଗଲା । ବରିଷ୍ଠ ନାଗରିକର ପରିବାରକୁ ଯାଇ ଗୋଟିଏ ଫୁଲମାଳ ଓ ଗୋଟିଏ ଶ୍ରୀଫଳ ଦେଇ ସମ୍ବର୍ଦ୍ଧନା କରାଗଲା । ଏହା ସହିତ ଗୋଟିଏ ମାନପତ୍ର ଦେଇ ତାଙ୍କୁ ଅନୁରୋଧ କରାଗଲା ଯେ, ସେମାନେ ସମାଜ ପାଇଁ ତାଙ୍କ ଆତ୍ମ ବରିଷ୍ଠତାର ନିରନ୍ତର ମାର୍ଗଦର୍ଶନ କରାଇବେ । ଏହାର ସୁଫଳ ମଧ୍ୟ ସ୍ଥାନେ ସ୍ଥାନେ ଦେଖିବାକୁ ମିଳିଲା ।

ନବାଗତଙ୍କୁ ସ୍ୱାଗତ ଥିଲା ଦଳର ଆଉ ଏକ ପଦକ୍ଷେପ । ନୂଆ ହୋଇ ଆସୁଥିବା କର୍ମଚାରୀମାନଙ୍କୁ ସ୍ୱାଗତ କରି ତାଙ୍କର ବାସସ୍ଥାନ, ଚଳଣି ପାଇଁ ସୁବିଧା ଆଦିର ଚିନ୍ତା କରାଯିବା ସହିତ ପ୍ରତ୍ୟେକଙ୍କୁ ଏକ ସ୍ୱାଗତ ବାର୍ତ୍ତା ଓ ଗୋଟିଏ ତମ୍ବା ମୁଦି ଦିଆଗଲା । ଏହି ପ୍ରୟୋଗ ଫଳରେ ନୂଆକର୍ମଚାରୀମାନେ ଆରମ୍ଭ ଦିନରୁ ଏ ଜାଗା ପ୍ରତି ଓ ଏଠାକାର ସମାଜ ଜୀବନ ପ୍ରତି ଅନୁକୂଳ ମତ ପୋଷଣ କରିବାକୁ ପ୍ରେରିତ ହେଲେ ।

ଅବସର ସମୟର ସୁବିନିଯୋଗକୁ ଆଖିରେ ରଖି ଆରମ୍ଭ ହେଲା ଫୁଲ,ଫଳ ଓ ପନିପରିବା ବଗିଚା ପାଇଁ ପୁରସ୍କାର ବିତରଣ । କର୍ମଚାରୀମାନଙ୍କର ନିଜ ପ୍ରଚେଷ୍ଟାରେ ସବୁଜ ସୁନ୍ଦର ହୋଇ ଉଠୁଥିବା ବଗିଚାମାନଙ୍କର ନିରୀକ୍ଷଣ କରାଗଲା । ସର୍ବୋତ୍କୃଷ୍ଟ ବଗିଚା କରିଥିବା ବ୍ୟକ୍ତିଙ୍କୁ ପୁରସ୍କାର ଦିଆଗଲା ଏବଂ ତାଙ୍କୁ ଉତ୍ସାହିତ କରାଗଲା ।

ରୋଗୀର ଶୁଶ୍ରୂଷା ଯୋଜନାରେ ପ୍ରତ୍ୟେକ ଦିନ ସଂଧ୍ୟାରେ ଦଳର ଦୁଇ ଜଣ ସଦସ୍ୟ ସ୍ଥାନୀୟ ଡାକ୍ତରଖାନାକୁ ରୋଗୀମାନଙ୍କୁ ଦେଖିବାକୁ ଗଲେ । ତାଙ୍କର ଭଲ ମନ୍ଦ ପଚାରିଲେ । ଯଥାସମ୍ଭବ ସାହାଯ୍ୟ ଓ ସେବା କଲେ । ଲୋକମାନଙ୍କ ଭିତରେ ସ୍ନେହର ଫୁଆରା ସୃଷ୍ଟି ନିମନ୍ତେ ଏହି ଉଦ୍ୟମଟି ଅଳ୍ପ ବହୁତେ ଫଳପ୍ରସୂ ହେଲା ।

୧୯୯୫ ମସିହାର ଦୀପାବଳି ତିଥିରେ ଅନ୍ଧାରରୂପୀ ଅଜ୍ଞାନତାର ଦୂରୀକରଣ ପାଇଁ ଜ୍ଞାନର ଦୀପାଳିର ଜଳାଇବାର ଏ ଯେଉଁ ପ୍ରୟାସ ଆରମ୍ଭ ହୋଇଥିଲା, ତାହା ମାତ୍ର ଦୁଇ ଜଣଙ୍କୁ ନେଇ । କିନ୍ତୁ ଦୁଇ ବର୍ଷ ଭିତରେ ଏ ଦଳରେ ମୋଟ ସଦସ୍ୟ ଥିଲେ ଚାଳିଶ ଜଣ । ଦଳରେ ଥିଲେ ଜଣେ ସଙ୍ଗଠକ ଓ ନେତୃତ୍ୱ ନେବାପାଇଁ ଗୋଟିଏ ପାଞ୍ଚ ଜଣିଆ ମଣ୍ଡଳୀ । ସେମାନେ ସପ୍ତାହର ସୋମବାର ସନ୍ଧ୍ୟାରେ ଜଣକର ବାସଗୃହ ଭିତରେ ବସି କାର୍ଯ୍ୟକାରୀ ଯୋଜନାର ଅନୁଧ୍ୟାନ କରୁଥିଲେ । ଏହା ସହିତ ଆଗାମୀ ଯୋଜନାର ରୂପରେଖ ସଂପର୍କରେ ପରିକଳ୍ପନା କରୁଥିଲେ । ପ୍ରତ୍ୟେକ ସଭ୍ୟ ମାତ୍ର ପଇଁତିରିଶ ଟଙ୍କାର ସଦସ୍ୟତା ଶୁଳ୍କ ଦେଉଥିଲେ । ଏହାର ହିସାବ ଥିଲା, ଜଣେ ପାଞ୍ଚଜଣଙ୍କୁ ସାକ୍ଷର କରିବ ଏବଂ ଜଣଙ୍କୁ ସାକ୍ଷର କରିବା ନିମନ୍ତେ ଖର୍ଚ୍ଚ ରଖାଯାଇଥିଲା ମାତ୍ର ସାତ ଟଙ୍କା । ସାତଟଙ୍କାର ହିସାବ ହେଲା - ପାଞ୍ଚଟଙ୍କା ମୂଲ୍ୟର ଗୋଟିଏ ଖାତା, ଏକ ଟଙ୍କାର



ଗୋଟିଏ ପେନ୍‌ସିଲ୍ ଓ ଏକଟଙ୍କାର ଗୋଟିଏ ରବର । ଏହା ସହିତ ପ୍ରତ୍ୟେକ ମାସରେ ପାଞ୍ଚଟଙ୍କାର ମାସିକ ଶୁଳ୍କ ରଖାଯାଉଥିଲା । ଅନ୍ୟଖର୍ଚ୍ଚ ନଥିଲା କହିଲେ ଚଳେ ।

ଅନ୍ୟ କାହାଠାରୁ ଚାନ୍ଦା ନେବା ବା ସରକାରୀ ସାହାଯ୍ୟ ଭିକ୍ଷା କରିବାକୁ ଦଳର ଆଗ୍ରହ ନଥିଲା । ସମସ୍ତ ସଦସ୍ୟ ନିଜର ସମ୍ମତି ଏବଂ ପରିଚୟ ସ୍ୱରୂପ ଗୋଟିଏ ତମ୍ବା ମୁଦି ପିନ୍ଧୁଥିଲେ । ମାସକୁ ଥରେ ଭୋଜି ହଉଥିଲା । ଚାବି ରିଙ୍ଗ୍‌ରେ ସମାଜ ଚେତନା ବାହିନୀ ଲେଖାଯାଇ ସ୍ଥାନୀୟ ଲୋକଙ୍କ ଭିତରେ ବଣ୍ଟା ଯାଉଥିଲା ଓ ବାହିନୀର ପରିଚୟ ଏହାରି ମାଧ୍ୟମରେ ଦିଆଯାଉ ଥିଲା । ଗୋଟିଏ ମାସିକ ପତ୍ରିକା *ବାହିନୀବାର୍ତ୍ତା* ନାମରେ ପ୍ରକାଶିତ ହେଉଥିଲା । ବାହିନୀର ବୈଠକରେ ଶଙ୍କରାଚାର୍ଯ୍ୟ ରଚିତ ରାମାଷ୍ଟକ ଓ ଗାନ୍ଧିଜୀଙ୍କ ବୈଷ୍ଣବ ଜନତୋ ....... ଆଦି ଗୀତ ବୋଲା ହେଉଥିଲା ।

ଦୁଇ ବର୍ଷ ପର୍ଯ୍ୟନ୍ତ ଏ କାର୍ଯ୍ୟ ନିରନ୍ତର ଚାଲୁ ରହିଥିଲା ଏବଂ ଏହାର ସୁଫଳ ବଲାଣି ଗ୍ରାମବାସୀ ପାଇପାରିଲେ । କାଳକ୍ରମେ କେତେ ଜଣ ଉଦ୍ୟୋକ୍ତା ସ୍ଥାନାନ୍ତରିତ ହେବା ଫଳରେ ଏହି ପ୍ରୟୋଗ ବର୍ତ୍ତମାନ୍ ବନ୍ଦ ଅଛି । ଏ ପ୍ରକାର ପ୍ରୟୋଗ ଓଡିଶାର ଗାଁ ଗଣ୍ଡାରେ ଆରମ୍ଭ କରାଗଲା । ବିଶେଷ ଶିକ୍ଷିତ ଯୁବଗୋଷ୍ଠି ଆଗଭର ହୋଇ ଏହିପରି କାର୍ଯ୍ୟରେ ମନ ଦେଲେ, ସମାଜ ଜୀବନରେ ସଚେତନତା ସୃଷ୍ଟି ହେବା ସହିତ ଜନ ଜୀବନରେ ସରସତା ଭରି ଉଠନ୍ତା । ଏଥିରେ ସନ୍ଦେହ ନାହିଁ ।

*ଭୁବନେଶ୍ୱର*
*ସେପ୍ଟେମ୍ବର, ୨୦୦୦*



# ସାକ୍ଷରତା : ସଫଳତାର ଚାବିକାଠି

ସଫଳତା କହିଲେ ଆମେ ସାଧାରଣତଃ ବୁଝୁ ଅର୍ଥନୈତିକ ବିକାଶ; ଯଥା - କୃଷି କ୍ଷେତ୍ରରେ ସଫଳତା, ଶିକ୍ଷ କ୍ଷେତ୍ରରେ ସଫଳତା ଏବଂ ବାଣିଜ୍ୟ କ୍ଷେତ୍ରରେ ସଫଳତା । ଏହାକୁ ଆଉ ଟିକିଏ ଗଭୀର ଭାବେ ବ୍ୟାଖ୍ୟା କଲେ ଆମ ସାମ୍ନାରେ ଆସେ କଳା, ସଂସ୍କୃତି ଏବଂ ସାହିତ୍ୟ କ୍ଷେତ୍ରରେ ସଫଳତା ।

ଜଣେ ବ୍ୟକ୍ତି ଗୋଟିଏ ଅନୁଷ୍ଠାନ କିମ୍ବା ଗୋଟିଏ ଜାତି ଅଥବା ସମାଜର ସଫଳତା ପଛରେ ଯେଉଁ କେତୋଟି ମୁଖ୍ୟ କାରଣ ଥାଏ ତାହା ହେଲା ବିଧିବଦ୍ଧ ଯୋଜନା, ଯୋଜନାର ବାସ୍ତବ ରୂପାୟନ ଏବଂ ଏହି କାର୍ଯ୍ୟପ୍ରତି ବ୍ୟକ୍ତି ବା ଗୋଷ୍ଠୀର କର୍ତ୍ତବ୍ୟବୋଧ ତଥା ଅଖଣ୍ଡ ପରିଶ୍ରମ ।

ଲକ୍ଷ୍ୟ ହାସଲ ପାଇଁ ଯେଉଁ ପ୍ରଥମ ସୋପାନର ବିଚାର କରାଯାଏ, ତା ହେଲା ସଫଳ ଯୋଜନା । ଯୋଜନାକୁ ପ୍ରଥମେ କଳ୍ପନାରେ ଆଣିବାକୁ ହୁଏ । କଳ୍ପନାକୁ ରୂପ ଦିଆଯାଏ କାଗଜ ଉପରେ ନକ୍ସା ବା ଡିଜାଇନ୍ ଭାବେ ଏବଂ ନିବନ୍ଧ ବା ବର୍ଣ୍ଣନା ଭାବେ । ତେବେ ଯୋଜନା ପାଇଁ ଯେଉଁ ଉପାଦାନର ସର୍ବପ୍ରଥମ ଆବଶ୍ୟକତା ରହିଛି, ତା ହେଉଛି ମସ୍ତିଷ୍କଚାଳନା । ଜଣେ ବ୍ୟକ୍ତି ପ୍ରଥମେ କିଛି ଚିନ୍ତା କରିବା ଆବଶ୍ୟକ । ସେ ଚିନ୍ତାକୁ ପୁଙ୍ଖାନୁପୁଙ୍ଖ ବିଚାର କଲେ ଏହା ଏକ ଯୋଜନାର ରୂପ ନେଇଥାଏ ।

### ଚିନ୍ତା କ୍ଷେତ୍ରରେ ଆଲୋଡ଼ନ

ବ୍ୟକ୍ତିର ଚିନ୍ତା କ୍ଷେତ୍ରକୁ ଦୂରଗାମୀ ଏବଂ ଅର୍ଥପୂର୍ଣ୍ଣ କରିବାକୁ ହେଲେ ସାମଗ୍ରିକ ଅଧ୍ୟୟନ ଏବଂ ବାହ୍ୟ ସମାଜ ସହିତ ନିରନ୍ତର ମିଳାମିଶା ଦରକାର । ଶୁଣିଲେ ବା ଦେଖିଲେ ଜଣେ ଜାଣିପାରିବ । ଦେଖିବାର ଏକ ମାଧ୍ୟମ ହେଉଛି ମୁଦ୍ରଣ ସାମଗ୍ରୀ ଏବଂ ଅନ୍ୟ ମାଧ୍ୟମ ହେଉଛି ପ୍ରତ୍ୟକ୍ଷ ଦର୍ଶନ । ମୁଦ୍ରଣ ସାମଗ୍ରୀକୁ ପଢ଼ିବାକୁ ହେଲେ ସାକ୍ଷର ହେବାକୁ ହେବ । ଏପରିକି ପ୍ରତ୍ୟକ୍ଷ ଦର୍ଶନ ସମୟରେ ଅନେକ ଚାର୍ଟ, ବୋର୍ଡ, ସଂଖ୍ୟା

ଲିପି ଆଦି ପଠନର ଆବଶ୍ୟକ ପଡ଼େ । ଏଣୁ ଜଣେ ବ୍ୟକ୍ତିକୁ ବିଷୟ ଜ୍ଞାନ ପାଇବାକୁ ହେଲେ ପଢି ଜାଣିବାକୁ ହେବ । ଆଖିରେ ଦେଖିଥିବା ବସ୍ତୁକୁ ପରବର୍ତ୍ତୀ ସମୟରେ ଠିକ୍ ରୂପେ ସ୍ମରଣ କରିବାକୁ ଏବଂ ଶୁଣିଥିବା ବିଷୟବସ୍ତୁକୁ ମନେ ରଖିବାକୁ ଜଣେ ବ୍ୟକ୍ତି ଲେଖି ଜାଣିବା ଦରକାର । ତେଣୁ କୁହାଯାଇଛି -

*ପଢିଲେ ଜାଣିବ ।*

*ଜାଣିଲେ ଜିଣିବ ॥*

ଆଖିରେ ଦେଖୁଥିବା ବସ୍ତୁ ସବୁ ସମୟ ପାଇଁ ସ୍ମୃତିପଟରେ ରହିପାରେ ନାହିଁ । କାନରେ ଶୁଣୁଥିବା କଥା ମଧ୍ୟ ମସ୍ତିଷ୍କରେ ଅଳ୍ପକ୍ଷଣ ପାଇଁ ରହିପାରେ । ଏହିସବୁ ଜ୍ଞାନରାଶିକୁ ସ୍ଥାୟୀ କରିବା ପାଇଁ ଲେଖାପଢା ରୂପୀ ସାକ୍ଷରତା ଜ୍ଞାନ ଆବଶ୍ୟକ ।

ଆମେ ଯଦି ଜଣେ ସଫଳ କୃଷକ, ଶ୍ରମିକ, ଶିଳ୍ପପତି, ଖଣି ମାଲିକ, ବଡ଼ ବ୍ୟବସାୟୀ କିମ୍ବା ଛୋଟ ଦୋକାନୀକୁ ଅନୁଧ୍ୟାନ କରିବା, ତେବେ ଆମେ ଏହା ଜାଣିପାରିବା ଯେ ତାଙ୍କର ଭିନ୍ନ ଭିନ୍ନ ଗୁଣରାଜି ସହିତ ଶିକ୍ଷାର ସ୍ତର ମଧ୍ୟ ଆଖିଦୃଶିଆ ରହିଥିବ । ଅନ୍ୟ ପ୍ରକାର କୁହାଯାଇପାରେ ଯେ, ନିମ୍ନତମ ଶିକ୍ଷାଗତ ଯୋଗ୍ୟତା ନଥିବା ବ୍ୟକ୍ତି ସଫଳତା ହାସଲ କରିବା ଅସମ୍ଭବ । ଏଣୁ ଯଥାର୍ଥ ଭାବେ କୁହାଯାଉଛି ଯେ, ସାକ୍ଷରତା ସଫଳତାର ଚାବିକାଠି ।

**ଭାରତବର୍ଷର ସମସ୍ୟାବଳୀ**

ଭାରତବର୍ଷର ସାଂପ୍ରତିକ ଆର୍ଥିକ ଏବଂ ସାମାଜିକ ଅବସ୍ଥାକୁ ଆଲୋଚନା କରାଗଲେ ଅନେକ ସମସ୍ୟା ପରିଲକ୍ଷିତ ହୁଏ ।

ଦେଶରେ କୃଷିର ବିକାଶ ମନ୍ଥର ଗତିରେ ହେଉଛି । ଶିଳ୍ପ କ୍ଷେତ୍ରରେ ବିକାଶ ମଧ୍ୟ ଆଶାନୁରୂପ ହେଉନାହିଁ । ସାମାଜିକ ଏକତା ଏବଂ ଜାତୀୟ ସଂହତି ବାଧାପ୍ରାପ୍ତ । ପଛୁଆ ବର୍ଗ ଏବଂ ଗରିବ ଶ୍ରେଣୀ ଲୋକଙ୍କ ସଂଖ୍ୟା ଦିନକୁ ଦିନ ବଢିବାରେ ଲାଗିଛି । ଲୋକଙ୍କ ଭିତରୁ ଅନ୍ଧବିଶ୍ୱାସ ଦୂରୀକରଣ, ଆଧୁନିକ ବୈଜ୍ଞାନିକ ଚିନ୍ତାଧାରାର ପ୍ରବେଶ କ୍ଷେତ୍ରରେ ଅନେକ ବାଧା ସୃଷ୍ଟି ହୋଇଛି । ସହର-ଗ୍ରାମ, ସାକ୍ଷର-ନିରକ୍ଷର ଓ ନାରୀ-ପୁରୁଷ ମଧ୍ୟରେ ଅସମାନତା ବଢିବାରେ ଲାଗିଛି । ବନବାସୀ ଏବଂ ହରିଜନ ଶ୍ରେଣୀର ଅନେକ ବ୍ୟକ୍ତି ଦାରିଦ୍ର୍ୟ ସୀମାରେଖା ତଳେ ରହିଛନ୍ତି । ଦେଶର ମାତୃ ମୃତ୍ୟୁହାର ଓ ଶିଶୁ ମୃତ୍ୟୁହାର ଅଧିକ । ଅଣସାକ୍ଷରଙ୍କ ସଂଖ୍ୟା ମଧ୍ୟ ମୋଟ୍ ଲୋକସଂଖ୍ୟାର ପ୍ରାୟ ଅର୍ଦ୍ଧେକ । ମାନବ ସମ୍ବଳର ସଦୁପଯୋଗ ହେବା ପରିବର୍ତ୍ତେ ଦେଶର ବେକାରୀ ସଂଖ୍ୟା ବୃଦ୍ଧି ହେବାରେ ଲାଗିଛି । ବିକାଶ କ୍ଷେତ୍ରରେ ଓ ଯୋଜନା ଭିତରେ ସର୍ବସାଧାରଣ ଭାଗୀଦାର ହୋଇପାରୁ ନାହାଁନ୍ତି । ଦ୍ରୁତ ଜନସଂଖ୍ୟା ବୃଦ୍ଧିକୁ ରୋକିବାରେ ଆମେ ସଫଳ ହୋଇପାରି ନାହେଁ ।

ଏ ସମସ୍ତ ଆଲୋଚନାକୁ ବିଶ୍ଳେଷଣ କଲେ ଜଣାଯାଏ ଯେ, ଅନେକ ସମସ୍ୟା ଭିତରୁ ନିରକ୍ଷରତା ଏକ ମୁଖ୍ୟ ବିଷୟ । ଏହାକୁ ସମୂଳେ ଲୋପ ନ କରିବା ପର୍ଯ୍ୟନ୍ତ ଦେଶରେ ପ୍ରଗତିର ରଥଚକ ବାଧାପ୍ରାପ୍ତ ହୋଇ ଚାଲିଥିବ, ଏହା ସୁନିଶ୍ଚିତ । ନିରକ୍ଷରତା ସହିତ ଅଶିକ୍ଷା ଓ କୁଶିକ୍ଷା ମଧ୍ୟ ଆମ ସମାଜକୁ ଦୁର୍ବଳ କରିଚାଲିଛି ।

**ସ୍ୱାଧୀନତା ପରବର୍ତ୍ତୀ ଯୋଜନା; ଜାତୀୟ ସାକ୍ଷରତା ମିଶନ**

ଦେଶ ସ୍ୱାଧୀନ ହେବା ପରେ ଏ ଦିଗ ପ୍ରତି ନୂତନ ସରକାରଙ୍କର ଦୃଷ୍ଟି ଆକର୍ଷିତ ହୋଇଛି । ସ୍କୁଲ, କଲେଜ ସଂଖ୍ୟା ବୃଦ୍ଧି ପାଇଛି । ସାକ୍ଷରତାର ବିସ୍ତାର ଲାଗି ଅତୀତରେ ନୈଶ ବିଦ୍ୟାଳୟ, ପ୍ରୌଢ ଶିକ୍ଷା କାର୍ଯ୍ୟକ୍ରମ ଓ ସାମାଜିକ ଶିକ୍ଷା ଆଦି ବିଭିନ୍ନ କାର୍ଯ୍ୟକ୍ରମ ନିଆଯାଇଛି । ନାରୀ ଶିକ୍ଷା ପ୍ରତି ବିଶେଷ ଧ୍ୟାନ ଦିଆଯାଇଛି । ଆଦିବାସୀ ହରିଜନ ତଥା ଦୁର୍ବଳ ଶ୍ରେଣୀର ଲୋକମାନଙ୍କ ପାଇଁ ସ୍ୱତନ୍ତ୍ର ଯୋଜନା କରାଯାଇଛି । କୃଷି ଓ ବୈଷୟିକ ଶିକ୍ଷାର ପ୍ରସାର ଉପରେ ଅଧିକ ଗୁରୁତ୍ୱ ଦିଆଯାଇଛି ।

ଦେଶରେ ସାକ୍ଷରତାର ହାର ୧୯୯୧ ଜନଗଣନା ଅନୁସାରେ ଶତକଡ଼ା ୫୨ ସ୍ତରକୁ ପହଞ୍ଚିପାରିଛି । ପ୍ରୌଢ ଶିକ୍ଷାର ଦ୍ରୁତ ବିସ୍ତାର ପାଇଁ ଦେଶରେ ଜାତୀୟ ସାକ୍ଷରତା ମିଶନ ୧୯୮୮ ମସିହାରେ ଗଠନ ହୋଇ ସମଗ୍ର ଦେଶ ପାଇଁ ସଂପୂର୍ଣ୍ଣ ସାକ୍ଷରତା ଯୋଜନା ଆରମ୍ଭ କରିଛି । ପ୍ରତ୍ୟେକ ଜିଲ୍ଲାରେ ଜିଲ୍ଲା ସାକ୍ଷରତା ସମିତି ଗଠନ କରାଯାଇ ଜିଲ୍ଲାସ୍ତରରୁ ଗ୍ରାମସ୍ତର ପର୍ଯ୍ୟନ୍ତ କାର୍ଯ୍ୟକ୍ଷେତ୍ର ବିସ୍ତୃତ ହୋଇଛି । ସମସ୍ତ ଲୋକଙ୍କ ସର୍ବେକ୍ଷଣ କରାଯାଇ ଅଣସାକ୍ଷରମାନଙ୍କୁ ଚିହ୍ନଟ କରାଯାଇଛି ଏବଂ ଯଥେଷ୍ଟ ପରିମାଣରେ ପଠନ ସାମଗ୍ରୀ ପ୍ରସ୍ତୁତ କରାଯାଇଛି । ସ୍ୱେଚ୍ଛାସେବୀ ଗୋଷ୍ଠୀ ଓ ପରିଦର୍ଶକ ଦଳ ଆଦି ମନୋନୀତ ହେବା ସହିତ ପ୍ରଶିକ୍ଷିତ ହୋଇଛନ୍ତି । ତିନୋଟି ପ୍ରାଥମିକ ପୁସ୍ତକ ପ୍ରସ୍ତୁତ କରାଯାଇ ସ୍ୱଳ୍ପ ସମୟ ମଧ୍ୟରେ ପଠନ, ଲିଖନ ଓ ହିସାବ କରିବାର କୌଶଳ ହାସଲ କରିବା ଦିଗରେ ସଫଳତାର ଇତିହାସ ସୃଷ୍ଟି କରାଯାଇ ପାରିଛି । ଦି ଅକ୍ଷର ଲେଖି ଶିଖିବା କିମ୍ବା ନିଜର ନାଁ ଦସ୍ତଖତ କରିପାରିବା ଭଳି ସହଜ ସାପେକ୍ଷ ଲକ୍ଷ୍ୟ ବଦଳରେ ଅନ୍ୟୁନ ପଞ୍ଚମ ଶ୍ରେଣୀ ପାଠ୍ୟସ୍ତର ହାସଲ କରିବାର ଲକ୍ଷ୍ୟ କରାଯାଇଥିବାରୁ ସାଧରଣରେ ସଫଳତା ଅଧିକ ଉପଯୋଗୀ ହୋଇପାରିଛି ।

ପ୍ରାଥମିକ ସ୍ତରର ସାକ୍ଷରତା ଯୋଜନା ସଫଳତା ପରେ ବର୍ତ୍ତମାନ ନିରନ୍ତର ଶିକ୍ଷା ଯୋଜନା ଲାଗୁ ହେବାର ସମୟ ଉପନୀତ ହୋଇଛି । ଏହି ଯୋଜନା ଏକ ଆହ୍ୱାନ ରୂପେ ଆମ ଆଗରେ ଠିଆ ହୋଇଛି । ଲେଖିବା ଏବଂ ପଢିବାର ନିରନ୍ତର ଅଭ୍ୟାସ ଚାଲୁ ରଖିବା ଏବଂ ଏକ ଶିକ୍ଷଣ ସମାଜ ଗଠନ ନିମନ୍ତେ ପାଠାଗାର ଓ ପଠନାଳୟ ଆଦି ଗଠନ ଓ ପରିଚାଳନା କରିବା ପାଇଁ ଯୋଜନା କରାଯାଇଛି । ଏଥିପାଇଁ ଗ୍ରାମ ସ୍ୱାଭିମାନ ସୃଷ୍ଟି ଏକ ମୁଖ୍ୟ ଆବଶ୍ୟକତା । ଯୁବକ ସଂଘ, ମହିଳା ସମିତି, କୋଠ ଘର,

ସମବାୟ ସମିତି ଆଦି ସାମାଜିକ ସଂଗଠନ ଓ ସ୍ୱେଚ୍ଛାସେବୀମାନେ ଏ ଦିଗରେ ଅଗ୍ରସର ହେଲେ ଏଇ ଯୋଜନାର ସଫଳ ରୂପାୟନ ହୋଇପାରିବ ।

**ଜନଗଣନାର ଆବଶ୍ୟକତା**

ପ୍ରତ୍ୟେକ ଗ୍ରାମରେ ଏବଂ ସହରରେ ଏକ ସ୍ୱାଭିମାନର ବାତାବରଣ ସୃଷ୍ଟି କରିବାକୁ ହେବ । ଗ୍ରାମ ଭିତରେ ଜଣେ ହେଲେ ଅଣସାକ୍ଷର ନ ରହନ୍ତୁ ଏହା ପ୍ରତ୍ୟେକ ସାକ୍ଷର ଏବଂ ଆଗୁଆ ଗ୍ରାମବାସୀଙ୍କ ଧ୍ୟେୟ ହେବା ଦରକାର । ପ୍ରାଥମିକ ସ୍ତରରେ ଶିକ୍ଷା ବ୍ୟବସ୍ଥାକୁ ଅଧିକ କଡ଼ାକଡ଼ି କରିବା ମଧ୍ୟ ଆବଶ୍ୟକ । ପ୍ରାଥମିକ ଶିକ୍ଷା ପାଇଁ ନିର୍ଦ୍ଦିଷ୍ଟ ବୟସ ଯଥା ୬ରୁ ୧୪ ବର୍ଷ ବୟସ ଅନ୍ତର୍ଗତ ପ୍ରତ୍ୟେକ ବାଳକ ଓ ବାଳିକା ପ୍ରାଥମିକ ଶିକ୍ଷା ନିଶ୍ଚିତ ରୂପେ ଲାଭକରୁ । ଏଥିପାଇଁ ଶିକ୍ଷକ, ପ୍ରଶାସକ, ଗ୍ରାମ ପଞ୍ଚାୟତର ନିର୍ବାଚିତ କର୍ମକର୍ତ୍ତାବୃନ୍ଦ ତଥା ସର୍ବୋପରି ସମସ୍ତ ଦେଶବାସୀ ସଜାଗ ହେବାକୁ ପଡ଼ିବ । ଆଜିର ଶିଶୁ ଆସନ୍ତାକାଲିର ଯୁବକ । ବାଲ୍ୟାବସ୍ଥାର ଅବହେଳା ଭବିଷ୍ୟତରେ ଅଶିକ୍ଷା ରୂପୀ କଳଙ୍କର ଦାଗ ହୋଇ ରହିଯିବାର ସମ୍ଭାବନା ଅଛି । ଏହି କଳଙ୍କକୁ ମୂଳରୁ ଉତ୍ପାଟନ କରିବାକୁ ପଡ଼ିବ ।

*ଭୁବନେଶ୍ୱର*
*ବିଶ୍ୱ ସାକ୍ଷରତା ଦିବସ, ୨୦୦୦*



# ଗାନ୍ଧି ! ତୁମେ ଆଜି ମନେପଡ଼

ଏ ଦେଶରେ ମୋହନଦାସ କରମଚାନ୍ଦ ଗାନ୍ଧି ଓରଫ ମହାତ୍ମା ଗାନ୍ଧି ନାମକ ଯେଉଁ ବ୍ୟକ୍ତିଟି ଜନ୍ମ ହୋଇଥିଲେ, ନିଜ ଜୀବନକାଳ ମଧ୍ୟରେ ଦେଶ, ଜାତି ଏବଂ ସର୍ବୋପରି ମଣିଷ ସମାଜ ପାଇଁ କେତେ କଣ କରିଗଲେ, କେତେ କଣ କହିଗଲେ । ତାଙ୍କ ଚାଲିଯିବାର ୫୨ ବର୍ଷ ପରେ ଆଜି ଆମେ ତାଙ୍କର ଉତ୍ତରଦାୟାଦ, ଏ ଦେଶର ଅଗଣିତ ନରନରୀ ତାଙ୍କୁ ମନେ ପକାଉଛୁ । ତାଙ୍କର କାର୍ଯ୍ୟାବଳୀକୁ ଆଲୋଚନା କରୁଛୁ । ତାଙ୍କର ଗୁଣାବଳୀକୁ ସ୍ମରଣ କରୁଛୁ ।

**ଦକ୍ଷିଣ ଆଫ୍ରିକାର ଗାନ୍ଧି**

ଗାନ୍ଧି ଆମ ସମସ୍ତଙ୍କ ପରି ଜଣେ ସାଧାରଣ ମଣିଷ ଥିଲେ । ତାଙ୍କ ସାଧାରଣ ଜୀବନ ଅସାଧାରଣ ହୋଇ ଗଢି ଉଠିଲା ତାଙ୍କ ଜୀବନର କେତୋଟି କଠିନ ମାତ୍ର ସଫଳ ଅଗ୍ନି ପରୀକ୍ଷାରୁ । ତାଙ୍କ ଜୀବନରେ ଏହା ସଂଯୋଗ କହିଲେ ଠିକ୍ ହେବ ଯେ ସେ ଓକିଲାତି ବ୍ୟବସାୟ ପାଇଁ ଦକ୍ଷିଣ ଆଫ୍ରିକା ଯାଇଥିଲେ ।  ଆଫ୍ରିକାର ଅନ୍ୟାନ୍ୟ ପ୍ରଦେଶ ଭଳି ଦକ୍ଷିଣ ଆଫ୍ରିକାରେ ଅନେକ ସଂଖ୍ୟାରେ ଭାରତୀୟ ରହୁଥିଲେ । ଗୋରା ଶାସନ ଚାଲିଥିଲା । ସେ ଶାସନରେ ଭାରତୀୟମାନଙ୍କୁ ଅମାନବିକ ବ୍ୟବହାର ମିଳୁଥିଲା ।

ଏହି ପ୍ରକାର ଏକ ବିଶେଷ ପରିସ୍ଥିତିରେ ଗାନ୍ଧିଙ୍କ ହୃଦୟରେ ମାନବତାର ପ୍ରଚଣ୍ଡ ବହ୍ନି ଜଳି ଉଠିଥିଲା । ସେ ବହ୍ନି ଶେଷ ପର୍ଯ୍ୟନ୍ତ ଆଉ ଲିଭିଲା ନାହିଁ । ସେ ନିଆଁର ମଶାଲକୁ ହାତରେ ଧରି ଗାନ୍ଧିଜୀ ଦକ୍ଷିଣ ଆଫ୍ରିକା ଛାଡ଼ି ଭାରତ ଆସିଲେ । ସମାନ ପ୍ରକାର ସାମାଜିକ ପରିସ୍ଥିତିର ସାମ୍ନା କରି ତାଙ୍କ ମଶାଲର ନିଆଁ ଅଧିକ ଜୋର୍‌ରେ ଜଳି ଉଠିଲା ।

## ଗାନ୍ଧିଙ୍କ ହାତରେ ମଶାଲ

ମଶାଲର ଦୁଇଟି ଲାଭ । ଗୋଟିଏ ଲାଭ ହେଲା ଆନ୍ଧାରକୁ ଦୂର କରି ଆଲୋକ ଆଣିଦେବା । ଦ୍ୱିତୀୟଟି ହେଲା ଆବର୍ଜନା ବସ୍ତୁକୁ ଜାଳିପୋଡ଼ି ପାଉଁଶ କରିଦେବା । ହାତରେ ମଶାଲ ଧରି ବୁଲୁଥିବା ଗାନ୍ଧିଜୀ କିନ୍ତୁ ମୁହଁରେ ଅହିଂସାର ବାଣୀ ପ୍ରଚାର କରୁଥିଲେ । ପାଖରୁ ଦେଖୁଥିବା ଲୋକ ଜାଣୁଥିଲା ସେ ଧୀର, ଶାନ୍ତ ଓ କୋମଳ ଥିଲେ । ଦୂରରୁ ଦେଖୁଥିବା ଲୋକ କିନ୍ତୁ କେବଳ ମଶାଲର ଶିଖାକୁ ଦେଖି ପାରୁଥିଲା ।

ଗାନ୍ଧିଙ୍କର ମଶାଳ ଆଲୋକ ଯେଉଁ କେତୋଟି କ୍ଷେତ୍ରକୁ ଆଲୋକିତ କରିଥିଲା, ତା ଭିତରେ ମୁଖ୍ୟ ଥିଲା ଦେଶରେ ଜନତାର ଜାଗରଣ । ତାଙ୍କ ପ୍ରଚେଷ୍ଟାର ଫଳସ୍ୱରୂପ ଦେଶର କୋଟି କୋଟି ଜନତା ଏଇ କଥାକୁ ଭଲ ଭାବେ ବୁଝିଗଲେ ଯେ, ଆମେମାନେ ପରାଧୀନ । ଶାସନର ଡୋରି ବିଦେଶୀ ଇଂରେଜମାନଙ୍କ ହାତରେ ଏବଂ ପରାଧୀନତାର କାରଣ ଆମ ନିଜର ଦୁର୍ବଳତା । ଦୁର୍ବଳତା ଭିତରେ ମୁଖ୍ୟ ବିଷୟ ଥିଲା, ଆମର ଅଶିକ୍ଷା, ଅନ୍ଧବିଶ୍ୱାସ, ସାମାଜିକ ଏକତାର ଅଭାବ, ଦେଶ ଅଖଣ୍ଡତା କଳ୍ପନାର ଅନୁପସ୍ଥିତି, ଦେଶବ୍ୟାପୀ ସବଳ ସଂଗଠନର ଆବଶ୍ୟକତା, ନାରୀ ଜାତିର ଅନଗ୍ରସରତା, ଅସ୍ପୃଶ୍ୟତାର ପ୍ରାବଲ୍ୟ ତଥା ସ୍ୱାଭିମାନ ଏବଂ ଆତ୍ମବିଶ୍ୱାସର ବୈକଲ୍ୟ ।

## ଗାନ୍ଧିଙ୍କ ପ୍ରଦର୍ଶିତ ନୂଆବାଟ

ଦୁର୍ବଳତା ଗୁଡ଼ିକୁ ଚିହ୍ନାଇ ଦେଇ ଗାନ୍ଧିଜୀ ଚୁପ୍ ହୋଇ ରହିନାହାନ୍ତି । ସେ ନିଜ ଜୀବନରେ ଉଦାହରଣ ପ୍ରସ୍ତୁତ କରିଯାଇଛନ୍ତି । ସାବରମତୀ ଓ ପୌନାର ଆଦି ସ୍ଥାନରେ ଆଶ୍ରମ ନିର୍ମାଣ କରିଛନ୍ତି । ଖାଦ୍ୟ ଗ୍ରହଣ, ବସ୍ତ୍ର ପରିଧାନ ଏବଂ ଦୈନନ୍ଦିନ ଜୀବନ ଯାପନ ଆଦିରେ ଅନୁଗାମୀମାନଙ୍କ ପାଇଁ ବାଟ ଦେଖାଇ ଯାଇଛନ୍ତି । କାଟି ପିନ୍ଧ, କୁଟି ଖାଅର ସ୍ଲୋଗାନ ଦେଇ ଯାଇଛନ୍ତି । ଖଦଡ଼ ଲୁଗାର ପ୍ରଚଳନ କରାଇ ଏହାକୁ ସରଳ ଓ ଆଦର୍ଶର ପ୍ରତୀକ ଭାବେ ପ୍ରତିଷ୍ଠା କରିଛନ୍ତି । ଅରଟକୁ ଏକ ଜାତୀୟ ଚିହ୍ନର ମର୍ଯ୍ୟାଦା ଦେଇଛନ୍ତି । ଦଳିତ ଶ୍ରେଣୀର ଲୋକଙ୍କ ପାଇଁ ନୂତନ ନାମକରଣ *ହରିଜନ* ନାମରେ ହରିଙ୍କର ନିକଟତର ଭାବେ ବର୍ଣ୍ଣନା କରିଛନ୍ତି । ରାମଧୁନ ଗାଇ ରାମରାଜ୍ୟର ଲକ୍ଷ୍ୟ ଦେଖାଇ ଦେଶବାସୀଙ୍କୁ ମର୍ଯ୍ୟାଦା ପୁରୁଷୋତ୍ତମ ପ୍ରଭୁ ଶ୍ରୀରାମଙ୍କର ଆଦର୍ଶ ଅନୁସରଣର ଦିଗ୍‌ଦର୍ଶନ କରାଇଛନ୍ତି । ଆଣ୍ଠୁଲୁଚା ଲୁଗା ଖଣ୍ଡିଏ ପିନ୍ଧି, ଖୋଲା ଦେହରେ ରହି ହଳେ ଚପଲ ଓ ଗୋଟିଏ ବାଉଁଶ ଲାଠି ଧରି ଏ ଦେଶର ଗରିବ ଜନତା ସମ୍ମୁଖରେ ତାଙ୍କର ନୀରବ ପ୍ରତିନିଧି ଭାବେ ଛିଡ଼ା ହୋଇଛନ୍ତି । ନିଶା ନିବାରଣ, କୁଷ୍ଠ ନିବାରଣ, ଅସ୍ପୃଶ୍ୟତା ନିବାରଣ ପାଇଁ ସତ୍ୟାଗ୍ରହ, ଧର୍ମଘଟ ଏବଂ ଅନଶନରୂପୀ କେତୋଟି ଅହିଂସା ଅସ୍ତ୍ରର ଉଦ୍‌ଭାବନ କରି ଏହାର ପ୍ରୟୋଗ ଶିଖାଇ ଯାଇଛନ୍ତି । ଶ୍ରମଭିତ୍ତିକ କୌଳିକ ବିଦ୍ୟାର ପୁନଃ ପ୍ରତିଷ୍ଠା ପାଇଁ ନଇ ତାଲିମ୍ ନାମକ ଏକ ଶିକ୍ଷା ପଦ୍ଧତିର ନୂତନ ସୋପାନ ଦେଖାଇ

ଯାଇଛନ୍ତି । ପଦଯାତ୍ରା ରୂପୀ ଏକ ନୂତନ ଆନ୍ଦୋଳନର ସୂତ୍ରପାତ କରିଯାଇଛନ୍ତି । ମାତୃଜାତିର ଅଗ୍ରସର ନିମିତ୍ତ ନିଜ ଆନ୍ଦୋଳନ ଭିତରେ ସର୍ବଦା ନିଜର ପତ୍ନୀ କସ୍ତୁରବାଙ୍କୁ ସାଥିରେ ନେଇ ଚାଲିଛନ୍ତି । ହିନ୍ଦୁ ମୁସଲମାନଙ୍କ ଭିତରେ ସଦ୍‌ଭାବର ଦୃଢ଼ୀକରଣ ପାଇଁ *ରାମ ରହିମ୍ ଭାଇ ଭାଇର* ଭାବନା ସୃଷ୍ଟି କରିଛନ୍ତି । ନିରନ୍ତର ସାଧନା ଓ ସଂଗ୍ରାମର ଫଳସ୍ୱରୂପ ଆମ ଦେଶ ଭାରତବର୍ଷ ପରାଧୀନତାର ଶୃଙ୍ଖଳରୁ ମୁକ୍ତିଲାଭ କରିଛି ।

## ଗାନ୍ଧି ଆଜିର ପରିପ୍ରେକ୍ଷୀରେ

ଗାନ୍ଧିଜୀ ଏବେ ନାହାନ୍ତି । ଜୀବନର ଲୀଳାଖେଳା ଶେଷ କରି ସେ ଆରପାରିକୁ ଚାଲି ଯାଇଛନ୍ତି । ତାଙ୍କ ନିର୍ମିତ ଅନୁଷ୍ଠାନ, ଆନ୍ଦୋଳନ ଓ ଅନୁଗାମୀ ଏବେ ମଧ୍ୟ ଆମ ଦେଶରେ ବିଦ୍ୟମାନ ଅଛନ୍ତି । ତେବେ କର୍ପୂର ଉଡ଼ିଯାଇଛି ଓ କନା ପଡ଼ିରହିଛି । ଗାନ୍ଧିଜୀ ହାତରେ ଥିବା ମଶାଲର ଶିଖା ଆଉ ଦେଖାଯାଉ ନାହିଁ । କେବଳ ମଶାଲଟି ଏକ ବିରାଟ ଜନଆନ୍ଦୋଳନର ସନ୍ତକ ଭାବେ ରହିଯାଇଛି । ବିଦେଶୀ ଶାସକ ଚାଲିଗଲେ । ଦେଶରେ ସ୍ୱରାଜ୍ୟ ପ୍ରତିଷ୍ଠା ହୋଇଛି । ସ୍ୱରାଜ୍ୟର ସୁଫଳ ପାଇବା ପାଇଁ ସମସ୍ତେ ଚାହିଁ ରହିଛନ୍ତି, ମାତ୍ର ସ୍ୱରାଜ୍ୟର ସଫଳତା ପାଇଁ ଯେଉଁ ତ୍ୟାଗ, ପରିଶ୍ରମ ଓ ସଂଗଠନର ଆବଶ୍ୟକ, ତାର ଅଭାବ ଆମ ଭିତରେ ଦେଖାଦେଇଛି । ଦେଶବାସୀ ପୁଣି ସେହି ଅଭାବ, ଅନାଟନ, ଆଳସ୍ୟ, ଅଶିକ୍ଷା, କୁଶିକ୍ଷା, ଅନୀତି ଓ ଅନ୍ୟାୟର ଶିକାର ହୋଇଛନ୍ତି ଏବଂ ଏହାର ପ୍ରତିବାଦ କରିବାକୁ ଚେଷ୍ଟା କରୁଛନ୍ତି । ସେ ଚେଷ୍ଟା ବଳବତ୍ତର ହୋଇପାରୁନାହିଁ । ପ୍ରତିବାଦର ସ୍ୱର କ୍ଷୀଣ ହୋଇ ରହିଯାଇଛି । ଜନଆନ୍ଦୋଳନର ବିରାଟ ସ୍ୱରୂପ ସୃଷ୍ଟି ହୋଇପାରି ନାହିଁ । ସମସ୍ତେ ଆକୁଳ ଓ ଆତୁର ହୋଇ ଚାହିଁ ରହିଛନ୍ତି । ସୃଷ୍ଟିକର୍ତ୍ତା ପ୍ରଭୁଙ୍କୁ ଡାକୁଛନ୍ତି । ହେ ପ୍ରଭୁ ! ଆମଙ୍କୁ ଗାନ୍ଧିଙ୍କ ଭଳି ଜଣେ ନେତା ମିଳନ୍ତେକି । ଆମର ମନର କଥା ହୃଦୟର ଭାବ ଓ ମୁହଁର ଭାଷା ଠିକ୍ ଭାବେ ପ୍ରକାଶ ପାଆନ୍ତା । ଜନଜାଗରଣର ବନ୍ୟା ସୃଷ୍ଟି ହୁଅନ୍ତା । ଦେଶରେ ସ୍ୱାଧୀନତାର ସୁଫଳ ସମସ୍ତ ଦେଶବାସୀଙ୍କୁ ମିଳନ୍ତା । ତେଣୁ ହେ ଗାନ୍ଧି ! ହେ ମହାପୁରୁଷ ! ତୁମେ ଆଜି ମନେପଡ଼ । ତୁମେ ପୁଣିଥରେ ଆସ । ଏ ମାଟିରେ ପୁଣିଥରେ ଜନ୍ମ ନିଅ ।

*ଭୁବନେଶ୍ୱର*
*ଗାନ୍ଧି ଜୟନ୍ତି, ୨୦୦୦*



# ମା' ତିନିଜଣ

ଭଗବାନଙ୍କ ସୃଷ୍ଟିରେ ମା ଏବଂ ମାତୃଜାତିର ଏକ ବିଶେଷ ସ୍ଥାନ ରହିଛି । ପୁରୁଷ ଏବଂ ପ୍ରକୃତିକୁ ନେଇ ଗଠିତ ଏଇ ସମଗ୍ର ଜୀବଜଗତ ମାର ଗର୍ଭରୁ ଜାତ । ସନ୍ତାନ ଲାଭ କରିବା, ମାତୃତ୍ୱ ହାସଲ କରିବା, ନାରୀ ଜୀବନର ଏକ ସ୍ୱତନ୍ତ୍ର ଅଭିଳାଷ । ମା ହେବାର ଯେତେ ସବୁ ଯୋଗ୍ୟତା, ଯଥା ଗର୍ଭଧାରଣ, ସନ୍ତାନ ପ୍ରସବ, ସ୍ତନ୍ୟପାନ, ସନ୍ତାନ ପାଳନ ଏବଂ ସନ୍ତାନକୁ ଏକ ସୁନାଗରିକ ଭାବେ ଗଢ଼ିବା ପାଇଁ ଆବଶ୍ୟକ ପ୍ରେରଣା ଏବଂ ମନୋବଳ ପ୍ରଦାନ ଆଦିର ଯାବତୀୟ ଶାରିରିକ ଏବଂ ମାନସିକ ପ୍ରସ୍ତୁତି ଜନ୍ମ ସମୟରୁ ପ୍ରତ୍ୟେକ ଝିଅ ବା ନାରୀ ପାଖରେ ଐଶ୍ୱରୀୟ ଗୁଣରାଜି ଭାବେ ରହିଥାଏ । ଜଣେ ନାରୀର ବିଭିନ୍ନ ଅବସ୍ଥା, ଯଥା କନ୍ୟା, ଭଗ୍ନୀ, ପତ୍ନୀ ଏବଂ ମାତା ମଧ୍ୟରୁ ମା ରୂପରେ ପାଳନ କରୁଥିବା ଭୂମିକାର ଗୁରୁତ୍ୱ ସର୍ବାଧିକ । ନିଜ ପୁଅ କିମ୍ବା ଝିଅର ସଫଳତା ଏବଂ ଗୌରବ ମାର ମନକୁ କେବଳ ଉତ୍‌ଫୁଲ୍ଲିତ କରେ ତା ନୁହେଁ, ଅନ୍ୟ ପକ୍ଷରେ ଏହା ସେହି ମାକୁ ଜଣେ ମହିୟସୀ ମହିଳା, ଆଦର୍ଶ ମହିଳା ଏବଂ ନମସ୍ୟା ମହିଳାର ସମ୍ମାନ ଆଣି ଦେଇଥାଏ । ଏ ପ୍ରକାର ସୁନାମଧନ୍ୟା ମାଙ୍କ ମଧ୍ୟରୁ ଆମ ଆଗରେ ଶିବାଜୀଙ୍କ ମା ଜୀଜାବାଇ, ମହାଭାରତରେ କୁନ୍ତୀ ଏବଂ ଗାନ୍ଧାରୀ, ଶ୍ରୀକୃଷ୍ଣଙ୍କ ମା ଦେବକୀ, ଶ୍ରୀରାମଙ୍କ ମା କୌଶଲ୍ୟାଙ୍କ ନା ମନେ ପଡ଼ିଯାଏ । ଏହାଛଡ଼ା ଅନେକ ମା ପ୍ରଚ୍ଛଦପଟରେ ରହି ପୁତ୍ରକନ୍ୟାଙ୍କୁ ସବଳ ଓ ସକ୍ଷମ କରାଇବାରେ ଭୂମିକା ଗ୍ରହଣ କରିଥିଲେ ମଧ୍ୟ ସମୟର ସ୍ରୋତରେ ସେମାନଙ୍କର ନାଁ ଇତିହାସ ଲିପିବଦ୍ଧ କରିପାରି ନାହିଁ ।

ଏବେ ମଧ୍ୟ ଆମ ସମାଜରେ ମା ମାନେ ତାଙ୍କର ନିଜ ନିଜର ସକ୍ରିୟ ଏବଂ ଆଦର୍ଶ ଭୂମିକା ପାଳନ କରିଆସୁଛନ୍ତି । ତଳେ କେତେଜଣ ମାଙ୍କ ବର୍ଣ୍ଣନା କରାଯାଇଛି, ଯେଉଁମାନେ ସର୍ବସାଧାରଣଙ୍କ ଭିତରୁ ଟିକିଏ ସ୍ୱତନ୍ତ୍ର । ନିଜ ଜୀବନରେ କିଛି ବିଶେଷ ଗୁଣ ପ୍ରଦର୍ଶନ କରି ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଛନ୍ତି ।

ମା ଏକ :

ମା ଜଣକ ଯୁବତୀ, ମଧ୍ୟବିତ ପରିବାର । ସାଧାରଣ ଶିକ୍ଷାପ୍ରାପ୍ତ । ଯୌବନର ଆଦ୍ୟ କାଳରେ ଜଣେ ପରିଚିତ ଯୁବକ ସହିତ ପ୍ରେମ ସମ୍ପର୍କ ସ୍ଥାପନ ହୋଇଛି । ପ୍ରେମରୁ ମିଳନ ଏବଂ ପରେ ସନ୍ତାନ ସମ୍ଭବା ହୋଇଛନ୍ତି । ମାତ୍ର ସମାଜର ଦୃଢ଼ କଟକଣା ଭିତରେ ଉଭୟ ପ୍ରେମିକ ଓ ପ୍ରେମିକା ବିବାହ କରି ପାରିନାହାନ୍ତି । ତଥାପି ଉଭୟ ସ୍ଥିର କରିଛନ୍ତି ଯେ, ନିଜର ସନ୍ତାନକୁ ଜନ୍ମ ଦେବେ । ସନ୍ତାନର ଜନ୍ମ ହୋଇଛି ଡାକ୍ତରଖାନାରେ । ଜନ୍ମିତ ପୁତ୍ରକୁ ଜଣେ ନିଃସନ୍ତାନ ମହିଳାକୁ ଅର୍ପଣ କରିଦେଇ ସାମୟିକ ଭାବେ ନିଜ ପୁତ୍ରର ଜୀବନ ଯାପନର ବ୍ୟବସ୍ଥା କରିଛନ୍ତି । ସମୟକ୍ରମେ ପ୍ରେମିକା ଓ ପ୍ରେମିକାଙ୍କର ବିବାହ ପାଇଁ ବାଧା ସବୁ ଦୂର ହୋଇଯାଇଛି ଏବଂ ଉଭୟ ବିବାହ ବନ୍ଧନରେ ଆବଦ୍ଧ ହୋଇଛନ୍ତି । ଘର ପରିବାର ସ୍ଥାପନ ହେବା ସଂଗେ ସଂଗେ ନିଜର ସନ୍ତାନକୁ ନିଜ ପାଖକୁ ଫେରାଇ ଆଣିଛନ୍ତି । ବାତ୍ସଲ୍ୟର ଧାରା ପୂର୍ବବତ୍ ବହିଚାଲିଛି ।

ମା ଜଣକ ନିଜର ଦୃଢ଼ ମନୋବଳ ଅଦମ୍ୟ ଚେଷ୍ଟା ଏବଂ ଆତ୍ମବିଶ୍ୱାସର ଫଳସ୍ୱରୂପ ମାତୃତ୍ୱକୁ ଜାହିର କରିପାରିଛି । ମାତୃଜାତିର ମହାନତାକୁ ପ୍ରତିଷ୍ଠିତ କରିପାରିଛି ।

ମା ଦୁଇ

ଆମେରିକାର ମହିଳା ସେ । ନିଃସନ୍ତାନ ଦମ୍ପତି । ଭାରତ ଆସିଛନ୍ତି । ଏଠାକାର ଗୋଟିଏ ଅନାଥ ଆଶ୍ରମକୁ ଯାଇ ନିଜ କୋଳକୁ ଗୋଟିଏ ଅନାଥ କନ୍ୟାକୁ ଆଦରି ନେଇଛନ୍ତି । ଆମେରିକା ଫେରିଯାଇ ଏହି କନ୍ୟାର ଉପଯୁକ୍ତ ଲାଳନପାଳନ କରି ବଡ଼ କରିଛନ୍ତି । ଭାରତୀୟ କନ୍ୟାକୁ ଭାରତ ନାଟ୍ୟମ୍ ନୃତ୍ୟରେ ଶିକ୍ଷାଦାନର ବ୍ୟବସ୍ଥା କରାଇଛନ୍ତି । ବର୍ତ୍ତମାନ ଝିଅଟି ଜଣେ ବିଶିଷ୍ଟ ନୃତ୍ୟଶିଳ୍ପୀ । ମା ମନ ସଫଳତାର ଆନନ୍ଦରେ ଭରି ଉଠିଛି । ଭାରତରୁ ଆଣିଥିବା ଭାରତୀୟ ଝିଅଟିକୁ ଭାରତନାଟ୍ୟମ୍ ଶିଖାଇ ଯୋଗ୍ୟ କରି ଗଢି ପାରିଥିବାରୁ ନିଜର କାର୍ଯ୍ୟ ପାଇଁ ଗୌରବ ବୋଧ କରୁଛନ୍ତି । ଜନ୍ମିତ କନ୍ୟା ନହେଲେ ମଧ୍ୟ ପାଳିତ କନ୍ୟା ପାଇଁ କେତେ ଶ୍ରଦ୍ଧା, କେତେ ସୋହାଗ କେତେ ପରିଶ୍ରମର ଫଳ ।

ଆଜିର ଏ ସଫଳ କନ୍ୟାଟି । ତାଙ୍କର ଏ ମହାନ୍ କାର୍ଯ୍ୟ ମାତୃଜାତିର ଟେକକୁ ବଜାୟ ରଖିପାରିଛି । ଧନ୍ୟ ଏହି ମା ।

ମା ତିନି

ଏକ ନୂଆ ପ୍ରକାର ମା । ଶିକ୍ଷିତା, ଯୋଗ୍ୟା, ଗୁଣବତୀ, ରୂପବତୀ, ଧନଶାଳୀ, ଭାରତୀୟ । ମାତ୍ର ଆମେରିକାରେ ବାସ କରନ୍ତି । ଏବେ ଜଣେ ପ୍ରସିଦ୍ଧ ଲେଖକ, ନିଜଠାରୁ ବୟସରେ ବଡ଼ ଏବଂ ନିଜର ବିବାଦୀୟ ଲେଖାପାଇଁ ହତ୍ୟାଧମକ ପ୍ରାପ୍ତ

ବ୍ୟକ୍ତିଙ୍କ ସହିତ ଏହି ମହିଳାଙ୍କର ବିବାହ ହୋଇଛି । ଏହି ବିବାହ ପରବର୍ତ୍ତୀ ସମୟକୁ ବିଶ୍ୱବାସୀ ଜନତା ଆଖିଖୋଲି ଦେଖୁଛନ୍ତି । କାନଡେରି ଶୁଣୁଛନ୍ତି । ସାମ୍ବାଦିକମାନେ ପ୍ରଶ୍ନ କରିଛନ୍ତି । ଆପଣ ଏ ବିବାହ କରିବାର ଉଦ୍ଦେଶ୍ୟ କଣ ? ସ୍ପଷ୍ଟ ଭାଷାରେ ଏବଂ ଦୃଢ ସ୍ୱରରେ ମହିଳା ଜଣକ ଉତ୍ତର ଦେଇଛନ୍ତି । ସନ୍ତାନ ପ୍ରସବ ପାଇଁ ନୁହେଁ । କେବଳ ଲେଖକଙ୍କର ବ୍ୟକ୍ତିତ୍ୱ, ବୁଦ୍ଧିମତ୍ତା ଏବଂ ଦୃଢ ମନୋବଳ ତାଙ୍କୁ ଆକର୍ଷିତ କରିଛି । ଅନ୍ୟପକ୍ଷରେ ନିଜର ମାତୃତ୍ୱର ଆକାଂକ୍ଷାକୁ ପୂରଣ କରିବାକୁ ହେଲେ ବିଶ୍ୱର ଅସଂଖ୍ୟ ଅବହେଳିତ ଶିଶୁଙ୍କ ମଧ୍ୟରୁ ଜଣକୁ ଆପଣାର କରିବେ । ମାତୃତ୍ୱର ମଧୁର ଅମୃତ ତାରି ଉପରେ ଢାଳିଦେବେ ।

ତାକୁ ଗଢିତୋଳି ନିଜର ମାଆ ଭୂମିକାକୁ ନିର୍ବାହ କରିବେ ।

ସତରେ ମାଆ ମମତା କଣ କେବଳ ଜନ୍ମିତ ସନ୍ତାନ ପାଇଁ ସୀମିତ ଥାଏ । ମାଆର ବର୍ଣ୍ଣନା ଯେ ବିଶ୍ୱଜନନୀ । ଏହା କଣ ପ୍ରତ୍ୟେକ ମାଙ୍କର ନିଭୃତ ହୃଦୟ କନ୍ଦରରେ ସୂକ୍ଷ୍ମରୂପରେ ରହିଥାଏ । ଏହି ମା ଜଣକ ଏହାର ଉଦାହରଣ ପ୍ରସ୍ତୁତ କରିବେ, ଆଶା କରାଯାଏ ।

ଧନ୍ୟ ତୁମେ ମା । ଧନ୍ୟ ତୁମେ ମାତୃଶକ୍ତି । ତୁମର ଆଶିଷ ଧାରା, ସଂସାରର ସମସ୍ତଙ୍କୁ ଅବାରିତ ଭାବେ ପ୍ରାପ୍ତ ହେଉଥାଉ ।

*ଭୁବନେଶ୍ୱର,*
*ଦଶହରା, ୨୦୦୦*



# ଆମେ ଗୋପବନ୍ଧୁ ପରି ହେବା

ପଣ୍ଡିତ ଗୋପବନ୍ଧୁ ଦାସ ଆମ ସମସ୍ତଙ୍କ ନିକଟରେ ଉତ୍କଳମଣି ଭାବେ ପରିଚିତ । ତାଙ୍କ ନାଁ କାନରେ ପଡ଼ିଲେ ଦାଢି ରଖିଥିବା, ଚଦରଟିଏ ଘୋଡ଼େଇ ହୋଇଥିବା ଉଦାସ ଦେଖାଯାଉଥିବା ବୟସ୍କ ମଣିଷର ଛବିଟିଏ ଆମ ଆଖି ଆଗରେ ନାଚିଉଠେ ।

ଏ ପ୍ରକାର ସାଦାସିଧା ମଣିଷ ଜଣକ ଉତ୍କଳର ମଣି ଆଖ୍ୟା ପାଇଥିଲେ । ସମସ୍ତ ଜନତାର ହୃଦୟରେ ଶ୍ରଦ୍ଧା ଓ ଭକ୍ତିର ସ୍ଥାନ ହାସଲ କରିପାରିଥିଲେ । ସମଗ୍ର ଓଡ଼ିଶାବାସୀଙ୍କୁ ଜାଗ୍ରତ କରାଇ ପାରିଥିଲେ । ଦୁସ୍ଥ, ପୀଡିତ, ଅଭାବଗ୍ରସ୍ତ ଲୋକ ମୁଖରେ ହସ ଫୁଟାଇ ପାରିଥିଲେ । ନିଜର ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ଦେଶବାସୀଙ୍କ ହିତରେ ତନ, ମନ, ଧନ ସମର୍ପଣ କରିଦେଇଥିଲେ । ଯାହା କରିଥିଲେ, ସେ ସବୁ ରାଷ୍ଟ୍ରକୁ ଅର୍ପଣ କରିଦେଇଥିଲେ । ଏ ପ୍ରକାର ଲୋକ ତ କୋଟିକରେ ଗୋଟିଏ । ତେଣୁ ଯଥାର୍ଥରେ ତାଙ୍କୁ ଉତ୍କଳମଣିର ଆଖ୍ୟା ଦିଆଯାଇଥିଲା ।

**ଜନନାୟକ ଗୋପବନ୍ଧୁ**

ଗୋପବନ୍ଧୁ କଣ ଥିଲେ, ଏ ପ୍ରକାର ପ୍ରଶ୍ନର ଉତ୍ତର ଖୋଜି ବସିଲେ ଆମେ ଜାଣିବାକୁ ପାଇବା ଯେ, ସେ ନୀଳଗିରି ହାଇସ୍କୁଲରେ ହେଡ୍‌ମାଷ୍ଟର ଥିଲେ, ମୟୂରଭଞ୍ଜ ଷ୍ଟେଟ୍‌ରେ ଲ ଅଫିସର ଥିଲେ । ସତ୍ୟବାଦୀ ବନବିଦ୍ୟାଳୟର ପ୍ରତିଷ୍ଠାତା ସମ୍ପାଦକ ଥିଲେ । ଓଡ଼ିଶା ପ୍ରଦେଶ କଂଗ୍ରେସର ସଂଗଠନ ମନ୍ତ୍ରୀ ଥିଲେ । ଗାନ୍ଧିଙ୍କୁ ଓଡ଼ିଶା ପରିଦର୍ଶନରେ ନିମନ୍ତ୍ରଣ କରି ଆଣିଥିଲେ । ସମାଜ ସମ୍ବାଦପତ୍ରର ପ୍ରତିଷ୍ଠାତା ସମ୍ପାଦକ ଥିଲେ । ବଢି, ମରୁଡ଼ି ସମୟରେ ସ୍ୱେଚ୍ଛାସେବୀ ଦଳର ଦଳପତି ଥିଲେ । ଲୋକସେବକ ମଣ୍ଡଳରେ ସଭ୍ୟ ଏବଂ ଓଡ଼ିଶାର ପ୍ରତିନିଧି ଥିଲେ । ଉତ୍କଳ ସମ୍ମିଳନୀର ସଭାପତି ଥିଲେ । ଜଣେ ଦରଦୀ କବି ଥିଲେ । ବିହାର-ଓଡ଼ିଶା ବିଧାନ ପରିଷଦ ସଭ୍ୟ ଥିଲେ । ତେବେ ଗୋପବନ୍ଧୁ ଏ ସମସ୍ତ କ୍ଷେତ୍ରର ସାମୂହିକ ଅନୁଭୂତି ହାସଲ କରି ଓଡ଼ିଶାବାସୀଙ୍କ ନିକଟରେ ଜଣେ ସର୍ବମାନ୍ୟ ଜନନାୟକ ଥିଲେ ।

ସେ କଣ କରିଯାଇଛନ୍ତି ଏ ପ୍ରକାର ପ୍ରଶ୍ନର ଉତ୍ତର ଖୋଜିଲେ ଆମକୁ ଜଣାପଡ଼େ ଯେ, ଜୀବନର ମାତ୍ର ଏକାବନ ବର୍ଷ ଭିତରେ ସେ ବନବିଦ୍ୟାଳୟ ଖୋଲି ଜାତୀୟ ଶିକ୍ଷାର ପ୍ରବର୍ତ୍ତନ କରିଥିଲେ । ବଢି ମରୁଡ଼ିରେ ସେବା-ସାହାଯ୍ୟ କରି ଲୋକମାନଙ୍କ ହୃଦୟରେ କରୁଣାର ଧାରା ଖୋଲି ଦେଉଥିଲେ । ସମ୍ବାଦପତ୍ର ମାଧ୍ୟମରେ ଦେଶର ଓ ଦେଶବାସୀଙ୍କ ଖବର ସତ୍ୟ ଉପରେ ଆଧାରିତ ନିର୍ଭୀକ ଭାଷାରେ ପ୍ରକାଶ କରୁଥିଲେ । ଜାଗରଣ ସୃଷ୍ଟି କରୁଥିଲେ । କଂଗ୍ରେସ ଦଳର ସଙ୍ଗଠନ ଗାଁ ଗାଁରେ ଖୋଲି ଗାନ୍ଧି ବିଚାର, ସ୍ୱାଧୀନତା ଆନ୍ଦୋଳନର ବାଣୀ ଲୋକମାନଙ୍କୁ ଶୁଣାଉଥିଲେ । ଏହା ଅନ୍ୟ ଏକ ଜନଜାଗରଣର ପଦକ୍ଷେପ ଥିଲା ।

ବନ୍ଦୀର ଆତ୍ମକଥା, ସ୍ୱଦେଶ ଚିନ୍ତା ଆଦି କବିତା ମାଧ୍ୟମରେ ଅଗଣିତ ପାଠକମାନଙ୍କ ମନରେ ଦେଶଭକ୍ତି ଏବଂ ଜାତିପ୍ରୀତିର ଭାବଧାରା ଆଣିଦେଇଥିଲେ । ନିଜ ଜୀବନରେ ସରଳତାର ଉଦାହରଣ, ନିଜର ଖାଦ୍ୟ, ବେଶଭୂଷା ଏବଂ ଚଳଣି ମାଧ୍ୟମରେ ପ୍ରସ୍ତୁତ କରିଯାଇଥିଲେ । ସେବା ଓ ସାହାଯ୍ୟ କ୍ଷେତ୍ରରେ ଆଗୁଆ ହୋଇ ପରିଶ୍ରମ କରି ଲୋକଙ୍କ ନିକଟକୁ ପହଞ୍ଚି ନରସେବା ହିଁ ନାରାୟଣ ସେବାର ଜ୍ୱଳନ୍ତ ନିଦର୍ଶନ ଦେଖାଇ ଯାଇଥିଲେ । ମୋଟ ଉପରେ ତାଙ୍କ ଜୀବନସାରା ସେ ଜନଶିକ୍ଷାର ପ୍ରବର୍ତ୍ତକ ହୋଇ କାର୍ଯ୍ୟ କରିଯାଇଥିଲେ ।

ଆଜି ଆମ ଭିତରେ ଗୋପବନ୍ଧୁ ନାହାଁନ୍ତି । ଓଡ଼ିଶାରେ ଏବେ ମଧ୍ୟ ଦୁଃସ୍ଥ, ପୀଡିତ ଲୋକ ଅଛନ୍ତି । ଏବେ ମଧ୍ୟ ଜାତୀୟ ବିଦ୍ୟାଳୟର ଆବଶ୍ୟକତା ଅଛି । ଇଂରେଜମାନେ ଚାଲିଗଲା ପରେ ଦେଶରେ ସ୍ୱାଧୀନତା ମିଳିଛି ସତ, ମାତ୍ର ଆମର ଦେଶ ଗଠନର ଅନେକ କ୍ଷେତ୍ର ଏବେ ମଧ୍ୟ ଖାଲିପଡିଛି । ଦେଶବାସୀଙ୍କୁ ଉପଯୁକ୍ତ ଶିକ୍ଷାଦେବା, ଠିକ୍ ରାସ୍ତା ଦେଖାଇବା, ଉଦାହରଣ ପ୍ରସ୍ତୁତ କରି ଆଗେଇ ଆସିବା, ଶିକ୍ଷା, ସଂଗଠନ, ସାହିତ୍ୟ, ସାମ୍ବାଦିକତା, ରାଜନୈତିକ କାର୍ଯ୍ୟକଳାପକୁ ଠିକ୍ ମାର୍ଗରେ ଚଳାଇବା ପାଇଁ ଉତ୍କଳମଣି ଗୋପବନ୍ଧୁଙ୍କ ପରି ଶହ ଶହ ଗୋପବନ୍ଧୁଙ୍କର ଦରକାର ପଡୁଛି ।

ଆମେ ସମସ୍ତେ ଉତ୍କଳମଣିଙ୍କର ଉତ୍ତର ଦାୟାଦ । ଏ ଦେଶ, ଏ ଜାତି, ଏହାର ବର୍ତ୍ତମାନ ଏବଂ ଭବିଷ୍ୟତ ପାଇଁ ଆମେ ଦାୟୀ । ଗୋପବନ୍ଧୁଙ୍କର ଜୀବନ ଆମ ପ୍ରତ୍ୟେକଙ୍କୁ ପ୍ରେରଣା ଦେଉ । ତାଙ୍କ ଜନ୍ମଦିନର ଶୁଭ ମୁହୂର୍ତ୍ତରେ ଆସନ୍ତୁ ଆମେ ସମସ୍ତେ ଏହି ଶପଥ ନେବା । ଆମେ ଗୋପବନ୍ଧୁ ପରି ହେବା ।

*ଭୁବନେଶ୍ୱର*
*ଗାନ୍ଧି ଜୟନ୍ତୀ, ୨୦୦୦*

◆◆◆

# ଶିକ୍ଷା, ଜନଶିକ୍ଷା ଓ ଗଣଶିକ୍ଷା

ଶିକ୍ଷା ଶବ୍ଦର ଅର୍ଥ ବୁଝିବାରେ ଅସୁବିଧା ହୁଏନାହିଁ, କାରଣ ଆମ୍ଭେମାନେ ନିଜକୁ ଶିକ୍ଷିତ ବୋଲି କହୁ । ଆମେ ଶିକ୍ଷାଲାଭ କରିଛୁ । ଶିକ୍ଷା ନ ପାଇଥିବା ଲୋକକୁ ଆମେ ଅଶିକ୍ଷିତ କହିଥାଉ ।

ଏଠାରେ ଶିକ୍ଷା କହିଲେ ଆମେ ସମସ୍ତେ ବୁଝୁ, ସ୍କୁଲର ଶିକ୍ଷା, କଲେଜର ଶିକ୍ଷା, କିଛି ବହି ପାଠ, ପାଠ୍ୟଖସଡ଼ା, ଶିକ୍ଷା ଅନୁଷ୍ଠାନ, କେତୋଟି ପରୀକ୍ଷା । ପରୀକ୍ଷାର ଫଳାଫଳ ପାସ୍ ବା ଫେଲ୍ ଏବଂ ପାସ୍‌ର ପ୍ରମାଣପତ୍ର ବା ସାର୍ଟିଫିକେଟ୍ । ଏହି ସାର୍ଟିଫିକେଟ୍ ଆମକୁ ଏକ ନୂଆ ପରିଚୟ ଆଣିଦିଏ । ଯଥା : ବି.ଏ., ବି.ଏସ୍.ସି., ଏମ୍.ଏ., ଏମ.ଏ.ସି. ଇତ୍ୟାଦି ।

ଶିକ୍ଷାଦାନ କରୁଥିବା ବ୍ୟକ୍ତିମାନଙ୍କୁ ସ୍ୱତନ୍ତ୍ର ସଂଜ୍ଞା ଦିଆଯାଏ - ଶିକ୍ଷକ ବା ଅଧ୍ୟାପକ । ସରକାରଙ୍କର ଏଥିପାଇଁ ଏକ ସ୍ୱତନ୍ତ୍ର ବିଭାଗ ରହିଛି - ଶିକ୍ଷା ବିଭାଗ । ଆଜିକାଲିର ଶିକ୍ଷା ବ୍ୟବସ୍ଥାର ପ୍ରାରମ୍ଭ ଇଂରେଜ ଶାସନ ସମୟରେ ୧୮୫୪ ମସିହାରେ ହୋଇଥିଲା, ଯେତେବେଳ ଦେଶରେ କଲିକତା, ବମ୍ବେ ଏବଂ ମାଡ୍ରାସ୍‌ଠାରେ ତିନୋଟି ବିଶ୍ୱବିଦ୍ୟାଳୟ ପ୍ରଥମ ଥର ପାଇଁ ପ୍ରତିଷ୍ଠା କରାଗଲା । ଏହା ସହିତ ଶିକ୍ଷାନୁଷ୍ଠାନଗୁଡ଼ିକରେ ସ୍ୱତନ୍ତ୍ର ଗୃହମାନ ଗଢି ଉଠିଥିଲା ଏବଂ ଆନୁଷ୍ଠାନିକ ପରିଚୟ ଦିଆଗଲା । ଏ ଶିକ୍ଷା ବ୍ୟବସ୍ଥା ଲାଗୁକରିବା ପାଇଁ ତତ୍‌କାଳୀନ ଇଂରେଜ ସରକାରଙ୍କର ଲକ୍ଷ୍ୟ ଥିଲା ମୁଖ୍ୟତଃ ଦେଶରେ ଇଂରାଜୀ ଶିକ୍ଷାପ୍ରାପ୍ତ ଶିକ୍ଷିତ ଯୁବଗୋଷ୍ଠୀ ନିର୍ମାଣ କରିବା ଏବଂ ଇଂରାଜୀ ଶିକ୍ଷା ବ୍ୟବସ୍ଥାକୁ ଭାରତରେ କରିବା ।

ଇଂରେଜମାନଙ୍କ ଭାରତ ଆଗମନ ପୂର୍ବରୁ ଆମ ଦେଶରେ ତଥାକଥିତ ବିଶ୍ୱବିଦ୍ୟାଳୟ ନଥିଲା, କିନ୍ତୁ ସେତେବେଳର ଭାରତୀୟମାନେ ଶିକ୍ଷାଲାଭ କରୁଥିଲେ । ସେଥିପାଇଁ ସଂସ୍କୃତ ବିଦ୍ୟାଳୟ, ଟୋଲ୍, ଗୁରୁକୁଳ ଆଶ୍ରମ ଏବଂ ଗୁରୁଶିଷ୍ୟ ପରମ୍ପରା ପ୍ରଚଳନ ଥିଲା । ସାହିତ୍ୟ ଚର୍ଚ୍ଚା ହେଉଥିଲା । ପଣ୍ଡିତ ସଭା ବସୁଥିଲା । ରାଜା, ଜମିଦାର



ତଥା ଶାସକମାନେ ବିଦ୍ୱାନମାନଙ୍କୁ ପ୍ରୋତ୍ସାହନ ଦେଉଥିଲେ । ରାଜ ପୁରୋହିତ, ରାଜବୈଦ୍ୟ, ରାଜ ବିଦୂଷକ ରାଜକବିମାନଙ୍କୁ ଆମନ୍ତ୍ରଣ କରି ନିଜ ଦରବାରରେ ସ୍ଥାନ ଦେଉଥିଲେ । ସେତେବେଳେର ପରୀକ୍ଷା ମଧ୍ୟ ସ୍ଥାନୀୟ ଭାବେ ହେଉଥିଲା ଏବଂ ଉପାଧିଗୁଡ଼ିକ ମୁହଁରେ ଘୋଷଣା କରାଯାଉଥିଲା । ଏଥିପାଇଁ କୌଣସି ମାନପତ୍ର ବା ସାର୍ଟିଫିକେଟ୍ ବ୍ୟବସ୍ଥା ନଥିଲା ।

ଦେଶ ସ୍ୱାଧୀନ ହେବାପରେ ଶିକ୍ଷା ବ୍ୟବସ୍ଥା ପୂର୍ବପରି ଚାଲିଛି । ସରକାରଙ୍କ ରାଜକୋଷରୁ ଏଥିପାଇଁ ଖର୍ଚ୍ଚ ବ୍ୟବସ୍ଥା କରାଯାଉଛି । ଦେଶସାରା ଲକ୍ଷ ଲକ୍ଷ ସଂଖ୍ୟାରେ ଶିକ୍ଷକ, ପରିଦର୍ଶକ ତଥା ଶିକ୍ଷା ଅଧିକାରୀମାନେ ନିଯୁକ୍ତ ହୋଇଛନ୍ତି । ଏ ବ୍ୟବସ୍ଥା ମାଧ୍ୟମରେ ସଫଳତାର ସହିତ ଉତ୍ତୀର୍ଣ୍ଣ ହେଉଥିବା ଯୁବକ ଏବଂ ଯୁବତୀମାନଙ୍କର ସଂଖ୍ୟା ଦିନକୁ ଦିନ ବଢିବାରେ ଲାଗିଛି ।

ଶିକ୍ଷିତ ସଂଖ୍ୟା ବଢିବା ସଂଗେ ସଂଗେ ଦେଶରେ ଏହା ଏକ ବିଶେଷ ସମସ୍ୟା ହୋଇ ଦେଖାଦେଇଛି । ଶିକ୍ଷିତ ଯୁବକ ଯୁବତୀମାନଙ୍କୁ ଚାକିରି ମିଳିପାରୁନି । ସମସ୍ୟାର ନାଆଁ ହେଲା ଶିକ୍ଷିତ ବେକାର । ପରମ୍ପରାଗତ ସାମାଜିକ ବ୍ୟବସ୍ଥା ଏବଂ ସମସାମୟିକ ସାମାଜିକ ଆବଶ୍ୟକତାକୁ ଚାହିଁ ସେମାନେ ନିଜକୁ ପ୍ରସ୍ତୁତ କରିପାରୁ ନାହାଁନ୍ତି । ଏଣୁ ଚାକିରି ପାଇବାକୁ ଚାହିଁ ରହୁଛନ୍ତି ।

ଅନ୍ୟପକ୍ଷରେ ଏତେ ବ୍ୟାପକ ଶିକ୍ଷା ବ୍ୟବସ୍ଥା ଥିଲେ ସୁଦ୍ଧା ଦେଶରେ ଅର୍ଦ୍ଧାଧିକ ନାଗରିକ ନିରକ୍ଷର ହୋଇ ରହିଛନ୍ତି । ସାକ୍ଷରତା ହାର ବୃଦ୍ଧି ହୋଇଛି, ମାତ୍ର ଜନସଂଖ୍ୟା ବୃଦ୍ଧି ଘଟିବାରୁ ଗଣତି ହିସାବରେ ସଂଖ୍ୟା ଯେତିକିକୁ ସେତିକି ରହିଯାଇଛି ।

ବର୍ତ୍ତମାନ ଶିକ୍ଷା ପଦ୍ଧତିର ଦୁର୍ବଳ ଦିଗକୁ ଅନୁଧ୍ୟାନ କରିବା ପରେ ଦେଖାଯାଇଛି ଯେ ଆନୁଷ୍ଠାନିକ ଶିକ୍ଷା ସହିତ ଜନଶିକ୍ଷାର ପ୍ରବର୍ତ୍ତନ ଏବଂ ପ୍ରସାର ମଧ୍ୟ ଆବଶ୍ୟକ । ଜନଶିକ୍ଷାର ବ୍ୟାଖ୍ୟା କଲେ ଜଣାଯାଏ ଯେ, ବହି ପାଠକୁ ବାଦ୍ ଦେଲେ, ଜୀବନଯାପନ ପାଇଁ ଯେଉଁ ଶିକ୍ଷାର ଆବଶ୍ୟକତା ଅଛି, ବାଲ୍ୟକାଳର ଚପଳତା ପାରିହେବା ପରେ ଯୌବନରେ ପାଦ ଦେଇ ଯେଉଁ ଦାୟିତ୍ୱବୋଧ ଆସି ପହଞ୍ଚିଥାଏ, ତା ପାଇଁ ଯେଉଁ ବୁଦ୍ଧି ଏବଂ ଅଭ୍ୟାସର ଦରକାର ତାହା ହିଁ ଜନଶିକ୍ଷା । ଏହା ସ୍ତ୍ରୀ ଓ ପୁରୁଷ ଉଭୟଙ୍କ କ୍ଷେତ୍ରରେ ପ୍ରଯୁଜ୍ୟ ହେବ ।

ଏ ଶିକ୍ଷା ପାଇଁ କୌଣସି ବିଧିବଦ୍ଧ ଅନୁଷ୍ଠାନ ନାହିଁ କିମ୍ବା କୌଣସି ଶିକ୍ଷକ ନାହାନ୍ତି । ପରିବାରର ବୟସ୍କ ସଦସ୍ୟମାନେ ଏହି ଶିକ୍ଷା ସହଜ ଓ ସୁଲଭ ଢଙ୍ଗରେ ସାଧାରଣ ଜୀବନ ଯାପନ ଅବସରରେ ଦେଇଥାଆନ୍ତି । ଦଳଗତ କାର୍ଯ୍ୟ, ଗୋଷ୍ଠୀଗତ ଜୀବନଯାପନ, ଧର୍ମସଭା, ସାହିତ୍ୟ ଆଲୋଚନା, ପତ୍ରପତ୍ରିକା ପଠନ ମାଧ୍ୟମରୁ ଏ ଜନଶିକ୍ଷା ରୂପକ ଶିକ୍ଷା ମିଳିଥାଏ । ବେଳେବେଳେ ସାଧୁ-ସନ୍ନ୍ୟାସୀ ତଥା ସମାଜ

ସୁଧାରକମାନେ ଆମ ଭିତରେ ଜନ୍ମ ହୋଇ ଜନସାଧାରଣଙ୍କୁ ନୀତିଶିକ୍ଷା ମାଧ୍ୟମରେ ଜନଶିକ୍ଷାର ସୂକ୍ଷ୍ମଧାରାମାନ ଶିଖାଉଥାନ୍ତି ।

ଏବେ ସରକାରଙ୍କ ଯୋଜନାରେ ଜନଶିକ୍ଷା କାର୍ଯ୍ୟକୁ ଯୋଜନାର ଅନ୍ତର୍ଗତ କରାଯାଇଛି । ଏଥିପାଇଁ ବିଭିନ୍ନ କାର୍ଯ୍ୟକ୍ରମ ଯଥା : ସାକ୍ଷରତା ଅଭିଯାନ, ଜାତୀୟ ସମର ଶିକ୍ଷାର୍ଥୀ ବାହିନୀ, ଜାତୀୟ ସେବାସଂସ୍ଥା, ନେହେରୁ ଯୁବକେନ୍ଦ୍ର ଇତ୍ୟାଦି ଗଢ଼ିଉଠିଛି । ଏହା ସହିତ ସୂଚନା ଓ ପ୍ରସାର ବିଭାଗ ମାଧ୍ୟମରେ ରେଡିଓ ଓ ଟେଲିଭିଜନ ଦ୍ୱାରା ବିଭିନ୍ନ ଶିକ୍ଷଣୀୟ ବିଷୟ ମଧ୍ୟ ଜନମାନସକୁ ଜଣାଇ ଦିଆଯାଉଛି । ଜନଶିକ୍ଷା କ୍ଷେତ୍ରକୁ ସବଳ ଏବଂ ସଫଳ କରିବା ପାଇଁ ପ୍ରିଣ୍ଟ୍‌ମିଡିଆ ଯଥା- ଖବରକାଗଜ ଓ ପତ୍ରପତ୍ରିକା ଏବଂ ଇଲେକ୍‌ଟ୍ରୋନିକ୍ ମିଡିଆ ଯଥା ରେଡିଓ. ଓ ଟି.ଭି. ଇତ୍ୟାଦିର ଅବଦାନ ଅନସ୍ୱୀକାର୍ଯ୍ୟ ।

ଶିକ୍ଷା କ୍ଷେତ୍ରରେ ଅନ୍ୟ ଏକ ବିଶେଷ ଦିଗ ହେଉଛି ଗଣଶିକ୍ଷା । ଜନଗଣଙ୍କୁ ଶିକ୍ଷାରେ ସାମିଲ୍ କରିବାର ଯେଉଁ ଦୂରଗାମୀ ଲକ୍ଷ୍ୟ ତାହାକୁ ଗଣଶିକ୍ଷାର ନାମ ଦିଆଯାଇଥାଏ । ଜନଶିକ୍ଷାକୁ ଯେତେବେଳେ ସମଗ୍ର ଦେଶରେ ବ୍ୟାପକ ଭାବେ ପ୍ରୟୋଗ କରାଯିବାର ଅଭିଯାନ ଆରମ୍ଭ ହୁଏ, ତା ହୁଏ ଗଣଶିକ୍ଷା । ଗଣଶିକ୍ଷା ପଛରେ ସରକାରୀ କଳ, ବେସରକାରୀ ଦଳ ଏବଂ ଗୋଷ୍ଠୀର ସମୂହ ଚେଷ୍ଟା ରହିଥାଏ । ଏହାପଛରେ ରାଜଶକ୍ତିର ପ୍ରୟୋଗ କରାଯାଇଥାଏ । ଅନ୍ୟପକ୍ଷରେ ଜନଶିକ୍ଷା ଏକ ସ୍ୱାଭାବିକ ଶିକ୍ଷା ବ୍ୟବସ୍ଥା ମଧ୍ୟ । ଏହା ସହଜ ଏବଂ ସରଳ ଉପାୟରେ ଆଗେଇଚାଲେ । ଜନଶିକ୍ଷାର ପରିସର ମଧ୍ୟରେ ଜୀବନଯାପନର ସମଗ୍ର ଦିଗ ଅନ୍ତର୍ଭୁକ୍ତ ଥିବାବେଳେ ଗଣଶିକ୍ଷା ମାଧ୍ୟମରେ ମାତ୍ର କେତୋଟି ବିଷୟକୁ ମନୋନୀତ କରି ସେଗୁଡ଼ିକର ପ୍ରବଳ ଏବଂ ଦ୍ରୁତ ତଥା ସାମଗ୍ରିକ ପ୍ରୟୋଗ ପାଇଁ ଚେଷ୍ଟା କରାଯାଇଥାଏ ।

ଶିକ୍ଷାକ୍ଷେତ୍ରରେ ସରକାରୀ ଅର୍ଥର ଯେଉଁ ଉପଯୋଗ ହେଉଛି, ଏହା ସଂପ୍ରତି ଅଧିକ ପରିମାଣରେ ଆନୁଷ୍ଠାନିକ ଶିକ୍ଷାରେ ବିନିଯୋଗ ହେଉଛି । ଗଣଶିକ୍ଷା ଏବଂ ଜନଶିକ୍ଷା ପ୍ରତି ଯେତେପରିମାଣ ଧ୍ୟାନ ଦିଆଯିବା ଆବଶ୍ୟକ, ତାହା ଉପେକ୍ଷିତ ହେଉଥିବା ମନେହୁଏ । ବର୍ତ୍ତମାନ କିନ୍ତୁ ଶିକ୍ଷା କ୍ଷେତ୍ରର ଏହି ବିଷୟଗୁଡ଼ିକୁ ପୁନଃ ସମୀକ୍ଷା କରାଯିବା ଆବଶ୍ୟକ । ଶିକ୍ଷା କ୍ଷେତ୍ରର ଦୋଷତ୍ରୁଟିକୁ ଦୂରକରି ଦେଶରେ ଏକ ସାମଗ୍ରିକ ଏବଂ ଉପଯୁକ୍ତ ଶିକ୍ଷାର ପ୍ରୟୋଗ ନିହାତି ଆବଶ୍ୟକ । ଜନଶିକ୍ଷା ଏବଂ ଗଣଶିକ୍ଷା ପ୍ରତି ଅଧିକ ଗୁରୁତ୍ୱ ଦିଆଯାଇ ଦେଶବାସୀଙ୍କର ସାମୂହିକ ବିକାଶ ପାଇଁ ଯୋଜନା କରିବା ଆଜି ଯୁଗର ଏକ ମୁଖ୍ୟ ଆହ୍ୱାନ ଭାବେ ଦେଖାଦେଇଛି ।

*ଭୁବନେଶ୍ୱର*
*ନଭେମ୍ବର, ୨୦୦୦*

◆◆◆

# ଗୋପବନ୍ଧୁଙ୍କ ଗାଁ

ପଣ୍ଡିତ ଗୋପବନ୍ଧୁ ଦାସ ଉତ୍କଳମଣି ଭାବରେ ସାରା ଓଡିଶାରେ ପରିଚିତ । ତାଙ୍କର ଜନ୍ମ ହୋଇଥିଲା ପୁରୀ ଜିଲ୍ଲାର ସୁଆଣ୍ଡୋ ଗାଁରେ । ଗାଁଟିର ନାଁ ଆଗରୁ ଶୁଣି ଥିଲେ ମଧ୍ୟ ଏହାର ଦର୍ଶନ ହେବାପରେ ଗାଁଟି ବିଷୟରେ ସ୍ୱଷ୍ଟ ଧାରଣା ତଥା ଗୋପବନ୍ଧୁଙ୍କର ବାଲ୍ୟଜୀବନ ବିଷୟରେ କେତୋଟି ନୂତନ ତଥ୍ୟ ଜାଣିବାକୁ ମିଳିଲା ।

## ଗାଁ ର ଅବସ୍ଥିତି

ସାକ୍ଷୀଗୋପାଳ ନିକଟରେ ପ୍ରାୟ ୧୦ କି.ମି. ଦୂର ଭାର୍ଗବୀ ନଦୀର ପୂର୍ବ ଦିଗରେ ଅବସ୍ଥିତ ଏକ ଛୋଟ ଗାଁ ହେଲା ସୁଆଣ୍ଡୋ । ଭାର୍ଗବୀ ନଦୀରେ ଆଗେ ପୋଲ ନ ଥିଲା । ଗାଁକୁ ଯିବା ପାଇଁ ନଦୀ ଏପଟୁ ବଳପୁର ଗାଁରୁ ଡଙ୍ଗାପାର ହୋଇ ଯିବାକୁ ହୁଏ । ପୁରୀ ଜିଲ୍ଲାର ଅନ୍ୟ ଗାଁଗୁଡିକ ପରି ଗାଁର ଭିତରେ ଓ ବାହାରେ ନଡିଆ, ଗୁଆ ଓ କଦଳୀର ବଣ । ତାରି ଭିତରେ ତିନୋଟି ସାହି, ବ୍ରାହ୍ମଣ, ପ୍ରଧାନ ଓ ଭୋଇ; ମୋଟ ପରିବାର ପ୍ରାୟ ୧୦୦ ଘର । ବ୍ରାହ୍ମଣ ସାହିର ପୂର୍ବମୁଣ୍ଡରେ ଗୋପବନ୍ଧୁଙ୍କ ପୈତୃକ ଘର, ଏବେ ସୁଦ୍ଧା ସେହି ପୁରାତନ ଅବସ୍ଥାରେ ବିରାଜମାନ ଅଛି । ସେହି ଘରେ ଏବେ ତାଙ୍କ ଅଣନାତିମାନେ ସେମାନଙ୍କର ପରିବାର ସହିତ ବାସ କରୁଛନ୍ତି । ଘର ବାରଣ୍ଡାରେ ତାଙ୍କର ଇଷ୍ଟଦେବ ଶ୍ରୀକୃଷ୍ଣଙ୍କ ମୂର୍ତ୍ତି ପୂଜାପାଉଛନ୍ତି । ଘରଭିତରେ ତାଙ୍କ ଜନ୍ମ ସମୟର ଖଟ, ପିଢା ଓ ଢାଳ ଦେଖଣାହାରୀଙ୍କ ପାଇଁ ରଖାଯାଇଛି ।

ଗୋପବନ୍ଧୁଙ୍କ ମୃତ୍ୟୁ ହେଲା ୧୯୨୮ ମସିହାରେ ତାଙ୍କ । ମୃତ୍ୟୁର ୭୨ ବର୍ଷ ପରେ ଏବେ ସେଗାଁରେ ଆଉ ୨/୩ ଜଣ ବୃଦ୍ଧ ବଞ୍ଚି ରହିଛନ୍ତି , ଯେ କି ଗୋପବନ୍ଧୁଙ୍କୁ ଦେଖିଛନ୍ତି ଏବଂ ତାଙ୍କ ସହିତ ମିଶିଛନ୍ତି । ଏ ପରି ଜଣେ ବୃଦ୍ଧଙ୍କ ସହିତ ଗାଁରେ ଆଳାପ ହେବାର ସୁଯୋଗ ମିଳିଥିଲା ।

## ଗୋପବନ୍ଧୁଙ୍କ ପ୍ରାଥମିକତା

ଗୋପବନ୍ଧୁ ପିଲାମାନଙ୍କ ଉପରେ ବିଷେଶ ଧ୍ୟାନ ଦେଉଥିଲେ । ବୟସ୍କମାନଙ୍କୁ ସମ୍ମାନ ଦେବା, କଥାବାର୍ତ୍ତା କରିବାରେ ତ୍ରୁଟି କରୁନଥିଲେ । ମାତ୍ର କିଶୋର ବୟସର ବାଳକମାନେ ଥିଲେ ତାଙ୍କର ସମାଜ ସଂସ୍କାରର ପରୀକ୍ଷା କ୍ଷେତ୍ର । ଗାଁମୁଣ୍ଡ ଠାକୁର ମନ୍ଦିରରେ ପିଲାଙ୍କୁ ନେଇ ଭୋଜି କରିବା, ଭାଗବତ ସପ୍ତା କରିବା ଆଦି ତାଙ୍କର ନିୟମିତ କାର୍ଯ୍ୟ ଥିଲା । ତାଙ୍କର ଏ ବିଶ୍ୱାସ ଥିଲା ଯେ,ପରିବର୍ତ୍ତନ ଆଣିବା ପାଇଁ ଯୁବପିଢି ହିଁ ଉପଯୁକ୍ତ ।

## ମାଗଣା ଖାଇବାରୁ ଡାହାଣା ସ୍ୱଭାବ

ଗାଁରେ ତାଙ୍କ ଘର ତରଫରୁ ପ୍ରତି ବର୍ଷ ଠାକୁରଙ୍କ ପାଇଁ ପହିଲି ଭୋଗ ହୁଏ । ଏହା ପ୍ରାୟ ଏକମାସ ଧରି ଚାଲେ । ବଡି ସକାଳୁ ଖେଚିଡି ଓ ତରକାରୀ ରନ୍ଧାଯାଇ ଠାକୁରଙ୍କୁ ଭୋଗ ଲାଗି ହୁଏ ଏବଂ ଗାଁ ସାରା ପିଲାମାନଙ୍କୁ ଭୂରି ଭୋଜନ ଭାବେ ବଣ୍ଟାଯାଏ । ଏହି ଭୋଜିର ଆକର୍ଷଣରେ ଗାଁର ପିଲା ସକାଳୁ ଉଠି ନିତ୍ୟକର୍ମ ସାରି କଦମ୍ବ ପତ୍ର ସଂଗ୍ରହ କରି ତାଙ୍କ ଦାଣ୍ଡରେ ରୁଣ୍ଡ ହୁଅନ୍ତି । ଭୋଜି ପରେ ଆଉ ପାଠପଢା ବା ଅନ୍ୟ କାମରେ ମନ ଦିଅନ୍ତି ନାହିଁ । ଏ କଥା ଗୋପବନ୍ଧୁଙ୍କ ଦୃଷ୍ଟିକୁ ଆସିଲା । ତାଙ୍କର ବଡଭାଇ ନାରାୟଣ ଦାସଙ୍କ ମୃତ୍ୟୁ ପରେ, ଯେତେବେଳେ ପହିଲି ଭୋଗ ବନ୍ଦୋବସ୍ତର ଭାର ତାଙ୍କ ଉପରକୁ ଆସିଲା । ସେ ଗାଁର ଲୋକମାନଙ୍କୁ ଡାକି ସଭାଟିଏ କଲେ । ସଭାରେ କହିଲେ ଯେ ଆମେ କଣ ଗାଁ ପିଲାଙ୍କୁ ଡାହାଣା କରିଦେବା । ମାଗଣାରେ ଖାଇବା ବ୍ୟବସ୍ଥା ହେଲେ ପିଲାମାନେ ପରିଶ୍ରମକାତର ହୋଇଯିବେ । ସମସ୍ତଙ୍କ ମନକୁ କଥାଟି ପାଇଲା । ଭୋଗ କେବଳ ପୂଜାରୀ ପାଇଁ ପ୍ରସ୍ତୁତ ହେଲା । ପିଲାଙ୍କ ଅଭ୍ୟାସ ସଜାଡି ହୋଇଗଲା ।

## ଗୋପବନ୍ଧୁଙ୍କ ଏକ ପତ୍ନୀବ୍ରତ

ଗୋପବନ୍ଧୁଙ୍କର ସ୍ତ୍ରୀଙ୍କର ମୃତ୍ୟୁ ଘଟଣା ବଡ ମର୍ମନ୍ତୁଦ । ତାଙ୍କ ପୁଅର ଅକାଳ ମୃତ୍ୟୁ ବେଳକୁ ତାଙ୍କ ସ୍ତ୍ରୀଙ୍କର ୮ ମାସର ଗର୍ଭ ଥିଲା । ଗ୍ରାମର ଧାର୍ମିକ ନିୟମ ଅନୁସାରେ ପୁଅର ମୃତ୍ୟୁ ହେଲେ ଶୁଦ୍ଧିକରଣ ପାଇଁ ଘରର ଲିପାପୋଛା କାମ ମାଙ୍କୁ କରିବାକୁ ହୁଏ । ଏହି କ୍ରମରେ ତାଙ୍କ ସ୍ତ୍ରୀ ଘର ଲିପିବା ସମୟରେ ନିଶୁଣିରେ ଚଢି କାନ୍ଥ ଲିପୁଥିଲେ । ହଠାତ୍ ନିଶୁଣିଟି ଭାଙ୍ଗିଗଲା ଏବଂ ସେ ତଳେ କଚାଡି ହୋଇ ପଡିଗଲେ । ସେହି ପଡିଯିବା ଫଳରେ ତାଙ୍କର ବହୁତ ରକ୍ତସ୍ରାବ ହେଲା ଏବଂ ସେହି କାରଣରୁ ଅଳ୍ପ ଦିନ ପରେ ତାଙ୍କର ମୃତ୍ୟୁ ହେଲା ।

ସ୍ତ୍ରୀଙ୍କ ମୃତ୍ୟୁ ପରେ ଗୋପବନ୍ଧୁଙ୍କ ବଡଭାଇ ଗୋପବନ୍ଧୁଙ୍କ ନିକଟକୁ ବାରିପଦା ସହରକୁ ଲୋକ ପଠାଇଲେ । ଗାଁର ବଛାବଛା ୫/୭ ଜଣ ମୁଖିଆ ଲୋକ ଯାଇ ତାଙ୍କୁ ଏ ଦାରୁଣ ସମ୍ବାଦ ଦେବା ସହିତ ଦ୍ୱିତୀୟ ବିବାହ ପାଇଁ ପ୍ରସ୍ତାବ ରଖିଲେ । ଗୋପବନ୍ଧୁ ଏସବୁ ଶୁଣି ଦୁଃଖରେ ଭାଙ୍ଗି ପଡିଲେ । ଗ୍ରାମ ବାସୀଙ୍କୁ ବୁଝାଇ କହିଲେ , ଆମର ବଡଭାଇ ମଧ୍ୟ ବିପତ୍ନୀକ ଏବଂ ମୋଠାରୁ ମାତ୍ର ୮ ବର୍ଷ ବଡ । ପ୍ରଥମେ ତାଙ୍କର ବିବାହ କରାଯାଉ । ତାପରେ ମୋର ହେବ । ଏହି ପ୍ରସ୍ତାବର ଜବାବ ଗ୍ରାମବାସୀମାନେ ଦେଇପାରି ନଥିଲେ । ତେବେ ଜୀବନ ସାରା ଗୋପବନ୍ଧୁ ବିପତ୍ନୀକ ରହିଗଲେ । ତାଙ୍କ ସ୍ତ୍ରୀଙ୍କ ସ୍ମୃତି ସଦୃଶ ସ୍ତ୍ରୀଙ୍କ ପରିହିତ ଗୋଟିଏ କସ୍ତା ଶାଢୀ ଏବଂ ଗୋଟିଏ ତସୁମାଣ୍ଡି ନିଜ ବେଡିଂ ସାଙ୍ଗରେ ସାରା ଜୀବନ ପାଖରେ ରଖୁ ଥିଲେ । ନିଜ ଶଯ୍ୟା ନିକଟରେ ଏହାକୁ ବିଛାଇ ସ୍ତ୍ରୀଙ୍କ ଆତ୍ମାର ଉପସ୍ଥିତିକୁ ଉପଲବ୍ଧି କରୁଥିଲେ ।

## ଗୋପବନ୍ଧୁଙ୍କ ସ୍ୱଚ୍ଛଳତା

ଗୋପବନ୍ଧୁଙ୍କର ଘରର ଅବସ୍ଥା ସ୍ୱଚ୍ଛଳ ଥିଲା । ଗାଁରେ ସମସ୍ତଙ୍କ ମଧ୍ୟରେ ତାଙ୍କ ପରିବାରର ଜମିଜମା , ଘରବାଡି ଏବଂ ଘରର ଆୟ ଅଧିକ ଥିଲା । ପିତା ଦୈରାଗୀ ଦାଶ ମୁକ୍ତିଆର ଥିଲେ । ଗାଁର ଭାଗବତ ଟୁଙ୍ଗିର ବ୍ୟବସ୍ଥା ତାଙ୍କ ପରିବାର ଉପରେ ନ୍ୟସ୍ତ ଥିଲା । ଗାଁର ପୋଖରୀ, ଠାକୁରଙ୍କ ଜମି ତାଙ୍କ ପରିବାର ବୁଝୁଥିଲେ । ଆଖପାଖର ତିନୋଟି ଗାଁର ଜମିଦାରି ତାଙ୍କ ପରିବାରର ଥିଲା । ତାଙ୍କୁ କିନ୍ତୁ ପରିବାରର ସମ୍ପତ୍ତି ଓ କ୍ଷମତା ଆକର୍ଷଣ କରିପାରି ନଥିଲା । ସେ ସର୍ବଦା ସରଳ ଜୀବନ ଯାପନ କରିବାକୁ, ସତ୍ୟ ଧର୍ମର ମାର୍ଗରେ ଚାଲିବାକୁ ଜୀବନର ବ୍ରତ ରୂପେ ଗ୍ରହଣ କରିଥିଲେ ।

## ଗୋପବନ୍ଧୁଙ୍କ ପରି ହେବା

ଗୋପବନ୍ଧୁଙ୍କ ଗାଁ କୁ ଦେଖିବାର ସୁଯୋଗ ମିଳିଥିଲା ଏବର୍ଷ ତାଙ୍କର ଜନ୍ମଜୟନ୍ତୀ ପାଳନ ଅବସରରେ । ଗାଁରେ ପ୍ରାୟ ଚାରିଘଣ୍ଟା କଟାଇବାର ସୁଯୋଗ ମିଳିଥିଲା । ତାଙ୍କର ପୁରୁଣା ଘରଟିକୁ  ତାଙ୍କର ଉତ୍ତରଦାୟାଦମାନେ ଦେଖାଇଦେଲେ । ଗାଁର ଜଣେ ବୃଦ୍ଧଲୋକ ଆନ୍ତରିକତାର ସହିତ ନିଜ ଜୀବନର ଗୋପବନ୍ଧୁଙ୍କ ସ୍ମୃତି ବର୍ଣ୍ଣନା କରିଥିଲେ । ସେଦିନ ଗାଁରେ ସଭାଟିଏ ହେଲା । ବକ୍ତାମାନେ  ଗୋପବନ୍ଧୁଙ୍କ ଗୁଣ କୀର୍ତ୍ତନ କରିବା ସଙ୍ଗେସଙ୍ଗେ ବର୍ତ୍ତମାନର ସାମାଜିକ ସ୍ଥିତିକୁ ଆଲୋଚନାକରି ଦୁଃଖ ପ୍ରକାଶ କରୁଥିଲେ । ବକ୍ତାଙ୍କ ଭାଷଣରୁ ଅସହାୟତାର ଭାବ ଫୁଟି ଉଠିଥିଲା ।

ତାଙ୍କ ଗାଁକୁ ଦେଖି, ଗ୍ରାମବାସୀଙ୍କୁ ଦେଖି ମନରେ ଏ ଭାବନା ଆସିଲା ଯେ, ଗୋପବନ୍ଧୁ  ଜଣେ ସାଧାରଣ ମଣିଷ ଭାବେ ଜନ୍ମ ହୋଇ ନିଜର ଅଧ୍ୟୟନ, ଚିନ୍ତନ ଏବଂ କାର୍ଯ୍ୟକଳାପର ସାଧନା ମାଧ୍ୟମରେ ଅସାଧାରଣ ହୋଇପାରିଥିଲେ । ଏ ପ୍ରକାର ସାଧନା କେହି ବି କରିପାରେ ଏବଂ ଅସାଧାରଣତ୍ୱ ହାସଲ କରିବା ମଧ୍ୟ ପ୍ରତ୍ୟେକଙ୍କ ପାଇଁ ସମ୍ଭବ । କେବଳ ଆମମାନଙ୍କର ଚେଷ୍ଟା ଏବଂ ଈଶ୍ୱରଙ୍କର ଆଶୀର୍ବାଦ ରହିଲେ ହେଲା ।

## ଗୋପବନ୍ଧୁଙ୍କ ସ୍ମୃତି

ଫେରିବା ସମୟରେ ଗୋପବନ୍ଧୁଙ୍କ ଜନ୍ମ ଜାଗାରୁ ଆଞ୍ଜୁଳାଏ ମାଟି ସଂଗ୍ରହ କରିନେଇ ଆସିଲି ସୁଆଣ୍ଡୋର ସ୍ମୃତି ଏବଂ ଗୋପବନ୍ଧୁଙ୍କ କୀର୍ତ୍ତିକୁ ଜୀବନ୍ତ କରି ରଖିବା ପାଇଁ । ସେହି ମାଟିକୁ ନେଇ ଏକ ଫୁଲକୁଣ୍ଡରେ ରଖି ତା ଭିତରେ ଗୋଟିଏ ସୁନ୍ଦର ଗୋଲାପ ଚାରା ଲଗାଇ ନିଜେ ଅନୁପ୍ରାଣିତ ହେବା ସଂଗେ ସଂଗେ ଅନ୍ୟକୁ ଅନୁପ୍ରାଣିତ କରିବାର ଏହା ଏକ କ୍ଷୁଦ୍ର ପ୍ରୟାସ ମାତ୍ର ।

*ଭୁବନେଶ୍ୱର*
*ନଭେମ୍ବର, ୨୦୦୦*

◆◆◆

# ଦେବନାଥ ବାଜପେୟୀର ଭୁଲ୍

ଘଟଣାଟି ଏହିପରି । ସକାଳ ଆଠଟା ବେଳକୁ ନିତ୍ୟକର୍ମ ଶେଷ କରି ଜଳଖିଆ ପାଇଁ ବସିବା ସମୟରେ ସେହି ଦିନର ସଦ୍ୟ ପ୍ରକାଶିତ ଟେଲିଗ୍ରାଫ୍ ପତ୍ରିକା ଖଣ୍ଡକ ସାମ୍ନାରେ ମିଳିଲା । ଜଳଖିଆ ଆସିବାର ୫/୧୦ ମିନିଟ୍ ସମୟ ଭିତରେ ପତ୍ରିକାର ପ୍ରଥମ ପୃଷ୍ଠାରେ ଆଖି ବୁଲାଇ ଆଣୁଆଣୁ ନଜର ପଡିଲା ଗୋଟିଏ ସମ୍ବାଦ ଉପରେ - ଶିଶୁ କନ୍ୟାର ବିବାହ ।

ବିବାହ ଏକ ସହଜ ସାମାଜିକ କାର୍ଯ୍ୟ ହେଲେ ସୁଦ୍ଧା ବିଧିର ଉଲ୍ଲଂଘନ ହେଲେ ତାହା ଅପରାଧ ଭାବେ ଗଣା ହୋଇଥାଏ । ଏହି ପ୍ରକାର ଏକ ଅପରାଧର ବର୍ଣ୍ଣନା ପାଠକମାନଙ୍କୁ ସାଧାରଣତଃ ଆକର୍ଷଣ କରିଥାଏ । ଯେପରି ବିବାହ ପୂର୍ବରୁ ଘରୁ ପଳାୟନ, ଭଲ ପାଇବାକୁ ନେଇ ଦୁଇ ପକ୍ଷର ବିବାଦ ଓ ମାଡ଼ପିଟ । ପ୍ରେମ ବିବାହରେ ବାଧା ଲାଗି ଆତ୍ମହତ୍ୟା ଆଦି ବିବାହ ସମ୍ପର୍କିତ ବିଶେଷ ଘଟଣା ଖବରକାଗଜର ପୃଷ୍ଠା ସର୍ବଦା ମଣ୍ଡନ କରିଥାଏ ।

ଏଥର ଘଟଣାରେ ନାୟକ ହେଉଛନ୍ତି ଦେବନାଥ ବାଜପେୟୀ । ଉତ୍ତରପ୍ରଦେଶର ଗୋଣ୍ଡା ଜିଲ୍ଲା ଅନ୍ତର୍ଗତ ଏକ ଅଖ୍ୟାତ ଗ୍ରାମରେ ବାସ କରନ୍ତି । ତାଙ୍କର ସ୍ତ୍ରୀ ଦୁଇବର୍ଷ ତଳୁ ମୃତ । ଦୁଇଟି ପୁଅ ଅଛନ୍ତି । ଜଣେ ଚଉଦ ବର୍ଷ ଏବଂ ଅନ୍ୟ ଜଣକୁ ଦଶବର୍ଷ । ଚଳଣି ନିମ୍ନ ମଧ୍ୟବିତ୍ତ । ତାଙ୍କର ଫଟୋରୁ ଦେଖାଯାଉଥାଏ ଶ୍ୟାମଳ ବର୍ଣ୍ଣ, ଡେଙ୍ଗା ଚେହେରା, ବୟସ ଚାଳିଶ୍ର ଏପଟେ । କୁଳୀନ ବ୍ରାହ୍ମଣର ପରିଚୟ ସ୍ୱରୂପ ଶୁଭ୍ର ପଇତାଟି ଖୋଲା ଦେହରେ ଲମ୍ବ ହୋଇପଡିଛି ।

ଦ୍ୱିତୀୟ ଚରିତ୍ର ହେଉଛି କମଳା ଦେବୀଙ୍କର । ନିକଟବର୍ତ୍ତୀ ଅନ୍ୟ ଏକ ଗ୍ରାମର ବିଧବା ମହିଳା । ବୟସ ଖବର କାଗଜ ରିପୋର୍ଟ ଅନୁସାରେ ୫୦ ବର୍ଷ । ଛଅଟି କନ୍ୟା ଓ ଗୋଟିଏ ପୁଅର ମାଆ ସେ । ସ୍ୱାମୀ ରୋଗରେ ଦୁଇବର୍ଷ ତଳେ ମୃତ । ମୁଲଲାଗି

କରି ଗୁଜୁରାଣ ମେଣ୍ଟାନ୍ତି । ତିନୋଟି ଝିଅର ବିବାହ କରିଛନ୍ତି । ଆଉ ତିନୋଟି ଝିଅର ବୟସ ଯଥାକ୍ରମେ ୧୨ ବର୍ଷ, ୬ ବର୍ଷ ଓ ୩ ବର୍ଷ । ପୁଅଟି ଦଶ ବର୍ଷର । ଅଭାବୀ ପରିବାରରେ ରୋଜଗାର କରିବାକୁ ସେ ଜଣେ ମାତ୍ର । ତାଙ୍କର ୧୨ ବର୍ଷର ଝିଅ ଗୌରୀକୁ ସେ ଦେବନାଥଙ୍କ ସହିତ ବିବାହ କରାଇଛନ୍ତି ।

ଘଟଣାର ଅନ୍ୟ ଯେଉଁ ଚରିତ୍ରଟି ସାମ୍ନାକୁ ଆସେ ସେ ହେଲା ଗୌରୀ । ଗୌରୀର ଫଟୋଟି ମଧ୍ୟ ବାହାରିଛି । ଶାଢି ପିନ୍ଧିଛି । ଚୁଡି ପିନ୍ଧିଛି । ମୁହଁରେ ଶାଢି ଘୋଡ଼ାଇ ଦିଆଯାଇଛି । କିଶୋରୀ ବୟସ । ସାମ୍ବାଦିକମାନେ ପ୍ରଶ୍ନ କରିବାରୁ ନିଜର ଖୁସି ପ୍ରକାଶ କରିଛି । ମାର କାର୍ଯ୍ୟକୁ ସମର୍ଥନ ଜଣାଇଛି । ସ୍ୱାମୀଙ୍କ ଘରେ ଚଳିବାର ସୁବିଧା ହେଉଛି ବୋଲି କହିଛି । ସ୍କୁଲକୁ ପଢିବାକୁ ଯିବୁକି ? ପଚାରିବାରେ ତାର ପିଲାଳିଆ ସ୍ୱରରେ ହଁ କରିଛି ଏବଂ ମନେ ପକାଇଛି ଯେ, ମୋର ଏ ବର୍ଷ ଚତୁର୍ଥ ଶ୍ରେଣୀ ହୋଇଥିଲା । ଏ ବିବାହରେ ତାର ମତାମତ ନିଆଯାଇ ନଥିଲା । ମାତ୍ର ବିବାହ ପରେ ସେ ଖୁସିରେ ଅଛି ବୋଲି ପ୍ରକାଶ କରିଛି ।

ଘଟଣାର ଅନ୍ୟ ଚରିତ୍ରମାନେ ହେଲେ କମଳା ଦେବୀର ପଡ଼ୋଶୀ ସ୍ତ୍ରୀଲୋକମାନେ । ଗାଁର ସରପଞ୍ଚ ଏବଂ ମୁଖିଆ କେତେଜଣ । ସାମ୍ବାଦିକଙ୍କ ପ୍ରଶ୍ନରେ ସେମାନେ ଘଟଣାର ନିନ୍ଦା କରିଛନ୍ତି । କମଳାଦେବୀଙ୍କୁ ଦୋଷ ଦେଇଛନ୍ତି । ଗାଁର ବଦନାମ ହେଲା ବୋଲି କହିଛନ୍ତି ।

କମଳାଦେବୀକୁ ପ୍ରଶ୍ନ କରାଯାଇଛି । ସେ ଏ ବିବାହ ଲାଗି ଦେବନାଥଙ୍କଠାରୁ ୧୦,୦୦୦ ଟଙ୍କା ନେଇଛି ବୋଲି ଦୋଷାରୋପ ହୋଇଛି । ବାଳିକା କନ୍ୟାକୁ ବିବାହ ଦେଇ ଆଇନ୍‌ର ଖିଲାପ କରିଛି ବୋଲି କୁହାଯାଇଛି । ତାର ଜବାବ ସ୍ପଷ୍ଟ ଭାଷାରେ ଦେଇ ସେ କହିଛି ଏ ପ୍ରକାର ବିବାହ ଆମ ଅଞ୍ଚଳରେ ବହୁ ଆଗରୁ ପ୍ରଚଳିତ । ଅଭାବୀ ପରିବାରରେ ପିଲାଟିକୁ ବିବାହ ମାଧ୍ୟମରେ ଭଲ ଚଳିବାର ବ୍ୟବସ୍ଥା କରିବା ମା ହିସାବରେ ତାର କର୍ତ୍ତବ୍ୟ ଥିଲା । ଭୋକ ଉପାସରେ ଥିବାବେଳେ ପଡ଼ୋଶୀମାନେ ସାହାଯ୍ୟ କରୁ ନଥିଲେ । ଏବେ ଝିଅର ବିବାହ ପରେ ଘଟଣାକୁ ତିଳକୁ ତାଳ କରି କହୁଛନ୍ତି । ଟଙ୍କା ନେଇଥିବା ଅଭିଯୋଗକୁ ସେ ଅସ୍ୱୀକାର କରିଛି ।

ଦେବନାଥକୁ ପ୍ରଶ୍ନ କରାଯାଇଛି । ସେ ତାର ନିଜର ଘରକାମରେ ବ୍ୟସ୍ତ ଥିବା ସମୟରେ ଧୋବଧାଉଳିଆ ସହରୀ ବାବୁମାନଙ୍କୁ ଦେଖି ଆଶ୍ଚର୍ଯ୍ୟ ଚକିତ ହୋଇ ପ୍ରଶ୍ନର ଉତ୍ତର କହିଛି । ମୋର ସ୍ତ୍ରୀ ମରିଗଲା ପରେ ମୋ ଘରେ ଦୁଇଟି ଛୋଟ ଛୋଟ ପୁଅଙ୍କୁ ନେଇ ଚଳାଇବା ମୋ ପକ୍ଷେ କଷ୍ଟକର ହୋଇପଡିଲା । ଦ୍ୱିତୀୟ ବିବାହ ପାଇଁ ବିଚାରକରି, ଭାଇବନ୍ଧୁଙ୍କ ପରାମର୍ଶ କ୍ରମେ ଝିଅ ଖୋଜା ହେଲା । ଅନେକ ସ୍ଥାନରେ ପ୍ରସ୍ତାବ ଦିଆଗଲେ ସୁଦ୍ଧା ମୋର ଆର୍ଥିକ ଅବସ୍ଥା କାରଣରୁ ଏବଂ ଦ୍ୱିତୀୟ ବିବାହ ହୋଇଥିବାରୁ କୌଣସି

ଠାରେ ସ୍ଥିର ହୋଇପାରିଲା ନାହିଁ । ଶେଷରେ କମଳାଦେବୀ ତାଙ୍କର ଝିଅ ଗୌରୀକୁ ବିବାହ ଦେବାକୁ ରାଜି ହେଲେ ।

ବୈଦିକ ରୀତିରେ ବିବାହ ହେଲା । ମୁଁ ତାକୁ ସ୍ତ୍ରୀ ଭାବେ ଗ୍ରହଣ କରିଛି । ବାଳିକା କନ୍ୟା ହେଲେ ସୁଦ୍ଧା ସେ ବିବାହଯୋଗ୍ୟା । ଘରକାମ ସବୁ ଧୀରେ ଧୀରେ ଶିଖିଯିବ ଏବଂ ମୋ ଘରକୁ ପୂରା ସମ୍ଭାଳିନେବ । ତା ବୟସର ଝିଅମାନେ ବାହାହେବା ଆମ ସମାଜରେ ଅଛି । କେବଳ ବୟସ୍କ ସ୍ୱାମୀ ସହିତ ବିବାହ ହେଉଥିବାରୁ ଲୋକମାନଙ୍କୁ ପସନ୍ଦ ଆସୁନାହିଁ ।

ଆଇନର ପ୍ରସଙ୍ଗ ଉଠାଇବା ବେଳେ ସେ ଚୁପ୍ ହୋଇଯାଉଛି । କଣ ଆଇନ ଅଛି ? କି ପ୍ରକାର ଖିଲାପ ହେଲା ? ଏସବୁ ବିଷୟ ସେ ବୁଝିପାରୁ ନାହିଁ । ସେ ଆଶ୍ଚର୍ଯ୍ୟ ହୋଇ ପ୍ରଶ୍ନୀଳ ଭଙ୍ଗୀରେ ଚାହିଁ ରହିଛି ଏବଂ ସାମ୍ବାଦିକମାନଙ୍କୁ ତାର ସହଜ ସରଳ ଭାଷାରେ ପ୍ରଶ୍ନ କରିଛି, ମୋର କଣ ଭୁଲ୍ ହେଲା ଆଜ୍ଞା ?

ଘଟଣାଟି ଆମୂଳଚୂଳ ପାଠ କରିବା ପରେ ଲେଖକଙ୍କ ମନରେ ଘଟଣାଟି କିଛି ସମୟ ପର୍ଯ୍ୟନ୍ତ ଜୀବନ୍ତ ହୋଇ ରହିଲା । ଏହାର ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ କରିବା ପରେ ମନରେ ଯେଉଁ କେତୋଟି କଥା ଆସିଲା, ତାହା ପାଠକମାନଙ୍କ ନିକଟରେ ଉପସ୍ଥାପନ କରୁଛି ।

ଏ ପ୍ରକାର ଘଟଣା ଆମ ଦେଶରେ ଅନେକ ଘଟୁଛି । ବିବାହ ସମୟରେ ବର-କନ୍ୟାର ବୟସରେ ତଫାତ୍ କେତେ ରହିବା ଉଚିତ, ଏ ବିଷୟ ଆମର ସମାଜବିତ୍‌ମାନେ ବହୁ ଆଗରୁ କହିଯାଇଛନ୍ତି ।

ମୋ ଜାଣିବାରେ ମନୁସଂହିତାରେ ବିବାହ ପ୍ରସଙ୍ଗରେ କୁହାଯାଇଛି ବର-କନ୍ୟାର ବୟସ ତାରତମ୍ୟ କୋଡ଼ିଏ ବର୍ଷ ହେବା ଉଚିତ । ଏ ବିଷୟରେ ଆଧୁନିକ ଧର୍ମଗୁରୁ ଠାକୁର ଅନୁକୂଳ ଚନ୍ଦ୍ରଙ୍କର ମଧ୍ୟ ସମାନ ମତ । ଝିଅଟି କେତେ ବୟସରେ ବିବାହ ଯୋଗ୍ୟା ହେବ ତା ଭାରତୀୟ ଆଇନ ଅନୁସାରେ ଅଠର ବର୍ଷ ବୋଲି ଘୋଷଣା ହୋଇଛି । ତାଠାରୁ କମ୍ ବୟସର ଝିଅ ବିବାହ କରିବା ଆଇନତଃ ଅସିଦ୍ଧ ।

ତେବେ ଏ ପ୍ରସଙ୍ଗକୁ ଆଇନ ଦରବାରରେ ପହଞ୍ଚାଇବ କିଏ ଏବଂ କାହିଁକି ? ଝିଅ ରାଜି, ପୁଅ ରାଜି, ଝିଅ ଏବଂ ପୁଅର ପରିବାର ରାଜି ହେଲେ ଆଇନରୁ କଟକଣା କିପରି ଲାଗୁ ହେବ ?

ଅନ୍ୟ ଏକ ଦୃଷ୍ଟିରେ ଅଭାବ କାରଣରୁ ପିଲାମାନଙ୍କୁ ଅନ୍ୟ ନିକଟରେ ଆଶ୍ରୟ ଦେବା, ଅନ୍ୟ ଘରେ କାମ କରି ପେଟ ପୋଷିବା ଏବଂ ଅଭିଆଡ଼ି ଝିଅଟିକୁ ଅନ୍ୟ ପାଖରେ କନ୍ୟାଦାନ କରି ସମସ୍ୟାର ସମାଧାନ କରିବାର ଯେଉଁ ନିଷ୍ପତ୍ତି ଅଭାବଗ୍ରସ୍ତ ମା

ବାପାଙ୍କ ମନରେ ଆସିଥାଏ ତାହା କେତେଦୂର ଅବସ୍ଥା ସାପେକ୍ଷ ତାହା ମଧ୍ୟ ବିଚାରଣୀୟ । ପିଲାଟିକୁ ବିକ୍ରୀ କରିଦେବା ତାପରେ ଅଜଣା ଜାଗାରେ ପିଲାର କଣ ହେବ ଚିନ୍ତା କରିବା ଠାରୁ ବିବାହ ରୂପକ ସାମାଜିକ ମାଧ୍ୟମରେ ଜଣାଶୁଣା ବ୍ୟକ୍ତିକୁ କନ୍ୟାଦାନ କରିବା ଅଧିକ ଯୁକ୍ତିଯୁକ୍ତ ନୁହେଁ କି ?

ଅନ୍ୟ ପକ୍ଷରେ ଝିଅଟିଏ ପ୍ରେମର ଆକର୍ଷଣରେ କିମ୍ବା ପ୍ରଲୋଭନରେ ନିଜ ଧର୍ମ ଛାଡ଼ି ଅନ୍ୟ ଧର୍ମକୁ ଗ୍ରହଣ କରିଛି । ଏଥିରେ ମଧ୍ୟ ସମାଜରେ ବିଭ୍ରାଟ ସୃଷ୍ଟି ହେଉଛି । ନିଜ ଜ୍ଞାତି କୁଟୁମ୍ବ ଭିତରେ ବିବାହ କରି ବିବାହର ପ୍ରତିଷ୍ଠିତ ସୂତ୍ରକୁ ଉଲ୍ଲଂଘନ କରୁଥିବା ଘଟଣା ମଧ୍ୟ ଅନେକ ଅଛି । ପ୍ରତିଲୋମ ବିବାହ କରି ଏବଂ କରାଇ ବର୍ଣ୍ଣଶଙ୍କର ରୂପୀ ସମାଜ ଦ୍ରୋହୀ ଏବଂ ଦେଶଦ୍ରୋହୀ ସନ୍ତାନ ସୃଷ୍ଟି ହେବାର ଅନେକ ଉଦାହରଣ ରହିଛି ।

ବଡ଼ ଚାକିରିଆ ପାତ୍ର ସହିତ କନ୍ୟାର ଇଚ୍ଛା ବିରୁଦ୍ଧରେ ଏବଂ ବେଶିଧନ ମିଳିବା ଆଶାରେ ଅସୁନ୍ଦରୀ ଏବଂ ଅଶିକ୍ଷିତା କନ୍ୟା ସହିତ ନିଜ ପୁତ୍ରକୁ ବିବାହ କରାଉଥିବାମାତା ପିତାଙ୍କ ସଂଖ୍ୟା ମଧ୍ୟ କମ୍ ନାହିଁ । ମାତ୍ର ଏହି ସମସ୍ତ ବ୍ୟତିକ୍ରମ ବେଳେ ଆମର ସମ୍ବାଦପତ୍ରମାନେ ଚୁପ୍ ରହିଥାନ୍ତି ।

ସମସ୍ତ ବିଷୟକୁ ବିଚାରକୁ ନେଇ ପାଠକଗଣ ନିଜ ନିଜର ବିବେକର ପ୍ରୟୋଗ କରି ନିର୍ଣ୍ଣୟ କରନ୍ତୁ । ଦେବନାଥ ବାଜପେୟୀର ଭୁଲ୍ ହୋଇଛି କି ନାହିଁ ?

*କଲିକତା*

*ଜୁଲାଇ, ୨୦୦୦*



# ସ୍କୁଲରେ ନୂଆ ପଣ୍ଡିତ

ସ୍କୁଲଟି କମ୍ପାନୀ ଦ୍ୱାରା ପରିଚାଳିତ । କାରଖାନାରେ କର୍ମଚାରୀଙ୍କ ପାଇଁ କଲୋନୀ ତିଆରି ହୋଇଛି । ତାରି ଭିତରେ ଅବସ୍ଥିତ ଏଇ ସ୍କୁଲ । ଛାତ୍ରଛାତ୍ରୀମାନେ ମୁଖ୍ୟତଃ କର୍ମଚାରୀ ପରିବାରର । ସ୍ଥାନର ଅବସ୍ଥିତି ମୁଖ୍ୟ ସହରଠାରୁ ଦୂରରେ । ଘନ ଜଙ୍ଗଲ ମଧ୍ୟଭାଗରେ ଏ ଛୋଟିଆ ସହରଟି ଗଢ଼ି ଉଠିଥିବାରୁ ପାଖ ୫/୭ କିଲୋମିଟର ଯାଏଁ ଅନ୍ୟ ଗାଁଗଣ୍ଡା ନାହିଁ । ସ୍କୁଲଟି ୩୦ ବର୍ଷର ପୁରୁଣା । ଆଗରୁ ବେଶି କର୍ମଚାରୀ ଥିଲେ, ଅନେକ ପିଲା ଥିଲେ, ଏବେ ପିଲା କମିଗଲେଣି । ଶିକ୍ଷକ ମଧ୍ୟ କମିଛନ୍ତି ।

ଏ ସ୍କୁଲର ସଂସ୍କୃତ ଶିକ୍ଷକ କମ୍ପାନୀର ଅନ୍ୟ ସ୍କୁଲକୁ ବଦଳି ହୋଇଗଲେ । ନୂଆ ନିୟମ ଅନୁସାରେ କମ୍ପାନୀ ଭିତରେ ନୂଆ କର୍ମଚାରୀଙ୍କ ନିଯୁକ୍ତି ବନ୍ଦ ଅଛି । ଅଭିଭାବକଙ୍କ ଭାବନା । ପିଲାମାନଙ୍କ ଚିନ୍ତା ସଂସ୍କୃତ ବିଷୟ କିଏ ପଢ଼ାଇବ । ଅନ୍ୟ ବିଷୟ ହେଲେ ଚଳିଯିବ । ମାତ୍ର ସଂସ୍କୃତ ପାଠ ସହଜ ନୁହେଁ ।

ବହୁତ ବିଚାର ବିମର୍ଷ ପରେ ପରିଚାଳନା କମିଟି ସ୍ଥିର କଲେ ଯେ, ଜଣେ ଅସ୍ଥାୟୀ ଶିକ୍ଷକଙ୍କୁ ନିଯୁକ୍ତି କରିବା । ଅସ୍ଥାୟୀ କାର୍ଯ୍ୟ ପାଇଁ କମ୍ ଦରମା ଦେବାକୁ ପଡ଼ିବ, ଯାହାକି ସ୍ଥାନୀୟ ପରିଚାଳନା ସମିତି ବହନ କରି ପାରିବ । କମ୍ପାନୀ ଉପରେ ନିଯୁକ୍ତିର ବୋଝ ରହିବ ନାହିଁ । ପଠପଢ଼ା କାମ ଚଳିଯିବ ।

ସଂସ୍କୃତ ଶିକ୍ଷକ ଅର୍ଥାତ୍ ପଣ୍ଡିତ ଜଣେ ଖୋଜା ହେଲେ । ସଂସ୍କୃତ କଲେଜରୁ ଆଚାର୍ଯ୍ୟ ଉପାଧି ପ୍ରାପ୍ତ କରିଥିବା ବ୍ୟକ୍ତି ଏଥିପାଇଁ ସବୁଠାରୁ ଉପଯୁକ୍ତ । ତେବେ ବି.ଏ.ରେ ସଂସ୍କୃତ ବିଷୟ ରଖି ପାଶ୍ କରିଥିଲେ ମଧ୍ୟ ଚଳିବ । ପୂର୍ବରୁ ଯେଉଁ ଶିକ୍ଷକ ଥିଲେ, ସେ ଥିଲେ ବି.ଏ. ପାଶ୍ । ଫୁଲ୍‌ପ୍ୟାଣ୍ଟ ଓ ସାର୍ଟ ପିନ୍ଧି ସ୍କୁଲକୁ ଆସୁଥିଲା ବେଳେ ତାଙ୍କର ସଂସ୍କୃତ ଶିକ୍ଷକଭାବେ କୌଣସି ସ୍ୱତନ୍ତ୍ର ପରିଚୟ ନଥିଲା ।

ବହୁତ ଖୋଜିବା ପରେ ଜଣେ ଶିକ୍ଷକ ମିଳିଲେ । ପରିଚାଳନା ସମିତିର ଜଣେ ସଭ୍ୟ ତାଙ୍କୁ ଆଣି ସଭାପତିଙ୍କ ନିକଟରେ ପହଞ୍ଚାଇଲେ । ସେ ଏଠାରୁ ପ୍ରାୟ ୫୦ କି.ମି. ଦୂରରେ ଥିବା ଅନ୍ୟ ଏକ ବେସରକାରୀ ସ୍କୁଲରେ ଶିକ୍ଷକ ଭାବେ ନିଯୁକ୍ତ ଅଛନ୍ତି । ମାତ୍ର ସେଠାରେ କୌଣସି ଦରମାପତ୍ର ମିଳୁନାହିଁ ଯଦିଓ ଗତ ୭ ବର୍ଷ ହେଲା ସେ ଶିକ୍ଷକତା କରୁଛନ୍ତି । ସେ ସ୍କୁଲକୁ ଏଯାଏଁ ସରକାରୀ ସାହାଯ୍ୟ ମିଳିନାହିଁ । ଯାଙ୍କୁ ମିଶାଇ ମୋଟ ଆଠଜଣ ଶିକ୍ଷକ ସେ ସ୍କୁଲରେ ଅଛନ୍ତି । କାହାକୁ ହେଲେ ଦରମା ନାହିଁ । ତେଣୁ ସେ ଅନ୍ୟତ୍ର ଚାକିରି ଖୋଜୁଛନ୍ତି ।

କଥାବାର୍ତ୍ତାରୁ ଜଣାଗଲା ଯେ, ସେ ଅନ୍ୟ କାର୍ଯ୍ୟ କରି ଗୁଜୁରାଣ ମେଣ୍ଟାଉଛନ୍ତି । ଜାଣିବାକୁ ଉତ୍ସୁକତା ବଢିଲା । ସେ ନିଜ କଥା କହି ଚାଲିଲେ ମୋର ସାଲେପୁର ପାଖ କରମୂଳ ଗାଁରେ ଘର । ଘରର ବଡ଼ ପୁଅ । ବ୍ରାହ୍ମଣ ପରିବାର । ବାପା ଯଜମାନ କାର୍ଯ୍ୟ କରନ୍ତି । ମୋର ପାଠପଢା ଗାଁର ସଂସ୍କୃତ ଟୋଲ୍‌ରେ ଆରମ୍ଭ ହେଲା । ପରେ ପୁରୀକୁ ଯାଇ ଆଚାର୍ଯ୍ୟ ଡିଗ୍ରୀ ହାସଲ କଲି । ଆଜିକାଲି ତ ଚାକିରି ନାହିଁ । ଖୋଜାଖୋଜି କରି ଏଇ କମ୍ପାନୀ ଟାଉନ୍‌କୁ ଆସିଥିଲି ମୋର ଜଣେ ଦୂର ସମ୍ପର୍କୀୟ ଭାଇଙ୍କ ଘରକୁ ।

ସେତିକି ବେଳେ ଖବର ମିଳିଲା, ନୂଆ ହୋଇ ଖୋଲିବାକୁ ଥିବା ମାଝୀପଡ଼ା ସ୍କୁଲରେ ସଂସ୍କୃତ ଶିକ୍ଷକ ଦରକାର । ସେଠାରେ ମୁଁ ପହଞ୍ଚୁ ପହଞ୍ଚୁ ସାଙ୍ଗେ ସାଙ୍ଗେ ଚାକିରି ମିଳିଗଲା । ମାତ୍ର ଦରମା ମିଳିବ ନାହିଁ ବୋଲି ଶୁଣିଲି । ଆଶ୍ୱାସନା ମିଳିଲା ଯେ, ମୋଠାରୁ ସ୍କୁଲ ପାଇଁ ଡୋନେସନ୍ ନେବେ ନାହିଁ । ଅନ୍ୟ ସମସ୍ତ ଶିକ୍ଷକ ଟଙ୍କା ଜମାରଖି ସ୍କୁଲ୍‌ରେ ନିଯୁକ୍ତି ପାଇଛନ୍ତି । ଅନ୍ୟ ଏକ ଆଶ୍ୱାସନା ମିଳିଲା ଯେ, ଏ ପଛୁଆ ଅଞ୍ଚଳରେ ନୂଆ ହୋଇ ହାଇସ୍କୁଲ ଖୋଲିଥିବାରୁ ୨/୩ ବର୍ଷ ଭିତରେ ସରକାରୀ ଗ୍ରାଣ୍ଟ ମିଳିଯିବ । ତା ପରେ ମୋର ଦୁଃଖ ଦୂର ହେବ । ନିଜେ ଚଳିବା ପାଇଁ ସକାଳ-ସନ୍ଧ୍ୟା ଟ୍ୟୁସନ୍ କରିବା ପାଇଁ ଉପଦେଶ ମିଳିଲା ।

ପ୍ରଥମ କେତେବର୍ଷ ଯେମିତି ସେମିତି ଚଳିଗଲା । ସ୍କୁଲ ଘରେ ରହୁଥିଲି । ପାଖ ଡାକ୍ତରବାବୁଙ୍କ ଦୁଇପୁଅକୁ ପଢେଇବାର ସୁଯୋଗ ମିଳିଲା । ସେଠି ସକାଳେ ଖାଇବା ଦିଅନ୍ତି । ରାତିରେ ଧରମ ସେଠ୍‌ଙ୍କ ଘରେ ତାର ତିନୋଟି ପିଲାଙ୍କୁ ପଢାଏ ଏବଂ ସେଠି ରାତ୍ରି ଭୋଜନ ହୋଇଥାଏ । ଏ ପିଲାମାନେ କିନ୍ତୁ ସଂସ୍କୃତ ପାଠ ନୁହେଁ ସାଧାରଣ ବିଷୟ ଯଥା ଗଣିତ, ସାହିତ୍ୟ ଆଦି ପଢୁଥିଲେ । ମାଝୀପଡ଼ାରେ ଅନ୍ୟ ଶିକ୍ଷକମାନେ ରହନ୍ତି ନାହିଁ । ଅନ୍ୟ ସ୍ଥାନରୁ ଯିବା ଆସିବା କରନ୍ତି । ତେଣୁ ପିଲାଙ୍କୁ ପାଇଁ ଟ୍ୟୁସନ୍ ମାଷ୍ଟରଙ୍କର ଏଠି ଭାରି ଅଭାବ ।

କିଛିଦିନ ପରେ ଘରୁ ବାପା ଓ ମାଆଙ୍କର ତାଗିଦ ହେଲା । ମୋର ବାହାଘର କରିବେ, ବୋହୂ ଆଣିବେ । ଶେଷରେ ବାହାଘର ହେଲା । କିଛିଦିନ ଗାଁରେ ସ୍ତ୍ରୀ ରହିଲେ । ପରେ ସ୍ଥିର ହେଲା ଯେ, ସାନଭଉଣୀର ପାଠପଢା ମୁଁ ବୁଝିବି ଓ ସ୍ତ୍ରୀଙ୍କ ସହିତ ଭଉଣୀଙ୍କୁ

ନେଇ ମାଝୀପଡ଼ା ଆସିଲି । ଏଥର ଗୋଟିଏ ଘରଭଡ଼ା ନେଲି । ପୂର୍ବ ବ୍ୟବସ୍ଥାରେ କାମ ଚଳିଲା ନାହିଁ ।

ମାଝୀପଡ଼ାରେ ନୂଆ ହୋଇ ମନ୍ଦରଟିଏ ତିଆରି ହେଲା । ଏ ଗାଁରେ ବ୍ରାହ୍ମଣ ନଥିଲେ । ସ୍ଥାନୀୟ ଲୋକମାନେ ମାଝୀ ମୁଣ୍ଡା ଜାତିର । ଚାକିରିଆ ଲୋକମାନେ ଆସି ବାସ କରିବା ପରେ ଏଠାରେ ରହି ମନ୍ଦିରର ପ୍ରତିଷ୍ଠା କରାଇଛନ୍ତି । ସେମାନଙ୍କ ନଜରରେ ମୁଁ ପଡ଼ିଲି । ମୋତେ ମଧ ରୋଜଗାର ଦରକାର ଥିଲା । ମୁଁ ସକାଳ ସନ୍ଧ୍ୟା ମନ୍ଦିର ପୂଜା କରେ । ମାସିକ କିଛି ପାରିଶ୍ରମିକ ପାଏ । ଆଗଭଳି ଦୁଇଓଳି ଟ୍ୟୁସନ କରୁଥାଏ ।

ତେବେ ପରିବାର ଚଳିବା ପାଇଁ ଅଧିକ ଅର୍ଥର ଆବଶ୍ୟକ ଥିଲା । ତେଣୁ ମୁଁ ବାହାରେ ସଂସ୍କୃତ ଟ୍ୟୁସନ୍ ପାଇଁ ବାହାରିଲି । ସପ୍ତାହରେ ଦୁଇଦିନ, ଶନିବାର ଦିନ ସନ୍ଧ୍ୟାରେ ଏବଂ ରବିବାର ସକାଳେ ଏହି କମ୍ପାନୀ ସହରରେ ୧୦ରୁ ୧୫ ଜଣ ସ୍କୁଲ ପିଲାଙ୍କୁ ପଢ଼ାଏ । ଅନ୍ୟ ଦୁଇଦିନ, ସୋମବାର ଓ ମଙ୍ଗଳବାର ସନ୍ଧ୍ୟାରେ ବଣେଇଗଡ଼କୁ ଯାଏ । ଏମିତି ଦୌଡ଼ାଦୌଡ଼ି କରି ମାସକୁ ଦୁଇହଜାର ପ୍ରାୟ ଯୋଗାଡ଼ କରେ, ଆଉ ଘର ଚଳାଏ ।

ସ୍କୁଲରେ ପାଠ ପଢ଼ା କଥା ପଡ଼ିଲା । ସେ କହିଲେ ଯେ ଏଠି ବନବାସୀ ପିଲାଙ୍କ ସଂଖ୍ୟା ବେଶି । ସେମାନେ ସରକାରୀ ଷ୍ଟାଇପେଣ୍ଡ ପାଆନ୍ତି । ପାଠ ପଢ଼ାରେ ଏତେ ମନ ଦିଅନ୍ତି ନାହିଁ । ତାଙ୍କୁ ସ୍କୁଲରେ ଯେତିକି ପାଠ ସେତିକି ପଢ଼ାଇ ଦିଆଯାଏ । ଖାଲିଥିବା ଦିନମାନଙ୍କରେ ସେମାନେ ଆସି ମୋ ପାଖରେ ବୁଝାବୁଝି କରନ୍ତି । ସେମାନଙ୍କର ଭାଷାଜ୍ଞାନ ଅତି ଦୁର୍ବଳ । ଓଡ଼ିଆ ସାହିତ୍ୟ ବୁଝିବା କଷ୍ଟ ହୁଏ । ଇଂରାଜୀ ଓ ସଂସ୍କୃତ ଆହୁରି କଷ୍ଟ । ତେବେ ମୋ ବିଷୟରେ ସେମାନଙ୍କୁ ପାଶ୍ ମାର୍କ ମିଳିଯାଏ । ସହଜ ଓ ସରଳ ଉପାୟରେ କେତୋଟି ବିଷୟକୁ ପ୍ରାଞ୍ଜଳ ଭାବେ ପଢ଼ାଇ ଦେଲେ ସଂସ୍କୃତ ପରୀକ୍ଷାରେ ପାଶ୍ କରିଯାଆନ୍ତି । ସ୍କୁଲରେ କ୍ଲାସରୁମ୍ ପାଇଁ ଘର ତିଆରି ହୋଇଛି । ଡେସ୍କ ବେଞ୍ଚ ମଧ ଯଥେଷ୍ଟ ଅଛି । ମାତ୍ର ଶିକ୍ଷକଙ୍କ ଦରମା ପାଇଁ ଫଣ୍ଡ୍ ନାହିଁ । ସେହି ସରକାରଙ୍କ ଗ୍ରାଣ୍ଟ ପାଇଁ ଅପେକ୍ଷା କରି କରି ଏତେଦିନ ହେଲାଣି ।

ପୁରୁଣା ସ୍କୁଲ ଛାଡ଼ି କମ୍ପାନୀ ସ୍କୁଲ ଆସିବାର କାରଣ ପଚାରିଲି । ସେ କହିଲେ - ଏବେ ତାଙ୍କର ସାନଭାଇ ମଧ ସଂସ୍କୃତରେ ଆଚାର୍ଯ୍ୟ ଡିଗ୍ରୀ ପାଇଯାଇଛି । ତାଙ୍କୁ ଆଣି ସ୍କୁଲରେ ତାଙ୍କ ଯାଗାରେ ରଖିବେ ଏବଂ ସେଠିକାର ମନ୍ଦିର ଆଦି କାମ କରିବାକୁ ଦେବେ । ସେ ନିଜେ ଆସି କମ୍ପାନୀ ସ୍କୁଲରେ ରହିଲେ, ଅସ୍ଥାୟୀ ହେଲେ ସୁଦ୍ଧା ଦରମା କିଛି ମିଳିବ । ଅଧିକ ସଂଖ୍ୟାରେ ଟିଉସନ୍ ମିଳିବ । ଦୌଡ଼ାଦୌଡ଼ି କମ୍ ହେବ ।

ତାଙ୍କର କଥାରେ ଥିବା ସ୍ପଷ୍ଟବାଦିତା, ନିଜର ଆତ୍ମବିଶ୍ୱାସ, କର୍ମଠତା ତଥା ରୁଚିସମ୍ପନ୍ନ ସଂସ୍କୃତ ଶିକ୍ଷକ ସୁଲଭ ପୋଷାକ ଏବଂ ମିଷ୍ଟଭାଷୀ ସ୍ୱଭାବ କାରଣରୁ ସମସ୍ତ

କମିଟି ସଦସ୍ୟ ମୁଗ୍ଧ ହେଲେ । ତାଙ୍କର ଅଧ୍ୟାପନାର ଶୈଳୀ ଏବଂ ଦକ୍ଷତା ବିଷୟରେ କଲୋନୀର ଲୋକମାନଙ୍କୁ ପୂର୍ବରୁ ଜଣାଥିଲା । ତେଣୁ ତାଙ୍କୁ ନିଯୁକ୍ତି ଦେବାରେ କୌଣସି ବାଧା ରହିଲା ନାହିଁ ।

ସେଦିନ ପ୍ରାୟ ଏକଘଣ୍ଟା ଧରି ତାଙ୍କ ସହିତ ଆଳାପ ଆଲୋଚନା କରିବା ପରେ ଲେଖକ ତାଙ୍କର ସମସ୍ତ ବିଷୟକୁ ଅନୁଧ୍ୟାନ କରୁଥାଏ । ତାଙ୍କ ମାଧ୍ୟମରେ ତାଙ୍କ ବୟସର ଅନ୍ୟ ଅନେକ ସଂଘର୍ଷଶୀଳ ଶିକ୍ଷିତ ଯୁବକ, ବିଶେଷଭାବେ ବେସରକାରୀ ସ୍କୁଲ ଶିକ୍ଷକମାନଙ୍କର ଅବସ୍ଥାର ଦୃଶ୍ୟ ମନକୁ ଆସୁଥାଏ । ଏହା ସହିତ ସଂସ୍କୃତ ଶିକ୍ଷା ଓ ସଂସ୍କୃତ ଶିକ୍ଷକମାନଙ୍କର ଭବିଷ୍ୟତକୁ ନେଇ ଚିନ୍ତା କରୁଥାଏ । ନୂଆ ପଣ୍ଡିତଙ୍କର ଦୃଢ଼ତା, ଆତ୍ମପ୍ରତ୍ୟୟ ଏବଂ ସାନଭାଇକୁ ମଧ୍ୟ ତାଙ୍କରି ରାସ୍ତାରେ ଆଣିବାର ନିଷ୍ପତ୍ତି ଶୁଣି ମନରେ ମୋର ଏ ଧାରଣା ବଦ୍ଧମୂଳ ହୋଇଗଲା ଯେ, ଏ ଦେଶରେ ସଂସ୍କୃତ ଭାଷା ଲୋପ ହେବ ନାହିଁ ଏବଂ ପଣ୍ଡିତମାନଙ୍କର ଶେଷ ହେବନାହିଁ ।

*ଭୁବନେଶ୍ୱର*
*ଡିସେମ୍ବର, ୨୦୦୦*



# ବିବେକାନନ୍ଦ ଶିଳା ସ୍ମାରକ : କନ୍ୟାକୁମାରୀ

ସ୍ୱାମୀ ବିବେକାନନ୍ଦ ଆଜି କେବଳ ଭାରତ ନୁହେଁ ସମଗ୍ର ବିଶ୍ୱରେ ଜଣେ ସୁପରିଚିତ ମହାପୁରୁଷ । କଲିକତା ସହରରେ ଶ୍ରୀ ନରେନ୍ଦ୍ରନାଥ ଦତ୍ତ ନାମରେ ଜନ୍ମଲାଭ କରି ଆମ ସମାଜର ପ୍ରାକ୍‌ସ୍ୱାଧୀନତା ସମୟରେ ବାଲ୍ୟକାଳ ଅତିବାହିତ କରି ମଧ୍ୟବିତ୍ତ ପରିବାରର ସୁଖ ଦୁଃଖକୁ ଅଙ୍ଗେ ଲିଭାଇ ତତ୍‌କାଳୀନ ଶିକ୍ଷା ବ୍ୟବସ୍ଥାରେ ଡିଗ୍ରୀ ଲାଭ କରି ଯେତେବେଳେ ସେ ଯୌବନରେ ପାଦ ଦେଲେ, ସେତେବେଳେ ତାଙ୍କ ମନରେ ବ୍ରହ୍ମ ଜିଜ୍ଞାସାର ଅଙ୍କୁର ଉଦୟ ହେଲା ।

ସେ ନିଜ ଆତ୍ମାର ଆଧାତ୍ମିକ ପ୍ରଶ୍ନର ଉତ୍ତର ଖୋଜି ବୁଲିଲେ । ସେ ଅନେକ ସାଧୁ, ସନ୍ଥ, ମଠ, ମନ୍ଦିର, ଧର୍ମ ପ୍ରଚାରକଙ୍କ ନିକଟକୁ ଯାଇ ପ୍ରଶ୍ନ କଲେ, ଆପଣ ଈଶ୍ୱରଙ୍କୁ ଦର୍ଶନ କରିଛନ୍ତି କି ? ଏ ପ୍ରଶ୍ନର ଉତ୍ତର ଜଣେ ହେଲେ କାହାଠାରୁ ସିଧାସଳଖ ପାଇପାରିଲେ ନାହିଁ । ନିରୁତ୍ସାହ ମନରେ, ଉଦାସ ହୃଦୟକୁ ନେଇ ସେ ପହଞ୍ଚିଲେ ହୁଗୁଳି ନଦୀତଟ ଦକ୍ଷିଣେଶ୍ୱର କାଳୀ ମନ୍ଦିରରେ ।

ସେ ମନ୍ଦିରର ପୂଜକ ଥିଲେ ରାମକୃଷ୍ଣ ପରମହଂସ । ଜଣେ ସାଧାରଣ ବ୍ୟକ୍ତି କିନ୍ତୁ ଅସାଧାରଣ ତେଜ । ନରେନ୍ଦ୍ର ଦତ୍ତଙ୍କୁ ସେ ହିଁ ସିଧାସଳଖ ଉତ୍ତର ଦେଲେ, ମୁଁ ଈଶ୍ୱରଙ୍କୁ ଦେଖିଛି । ତାଙ୍କ ସହିତ କଥା ହୋଇଛି, ଠିକ୍ ତୁମ ସହିତ କଥା ହେଲାଭଳି । ଏ ପ୍ରକାର ଦୃଢ ଉତ୍ତର ତଥା ଶ୍ରୀ ରାମକୃଷ୍ଣଙ୍କ ବ୍ୟକ୍ତିତ୍ୱ ଏବଂ ସେ ସ୍ଥାନର ପରିବେଶ ଯୁବକ ନରେନ୍ଦ୍ର ନାଥଙ୍କୁ ମନ୍ତ୍ରମୁଗ୍ଧ କରିଦେଇଥିଲା । ସେହି ସ୍ଥାନରେ ସେ ଗୁରୁଙ୍କ ନିକଟରୁ ଦୀକ୍ଷାଗ୍ରହଣ କରିଥିଲେ । ଆଧାତ୍ମିକ ସାଧନା ଆରମ୍ଭ କରିଥିଲେ । ଗୁରୁଙ୍କ ଆଶୀର୍ବାଦ ବଳରେ ନରେନ୍ଦ୍ର ନାଥ ସ୍ୱାମୀ ବିବେକାନନ୍ଦ ଆଖ୍ୟା ପ୍ରାପ୍ତ କଲେ ।

ଏ ସମୟରେ ରାମକୃଷ୍ଣଙ୍କର ଅକାଳ ମୃତ୍ୟୁ ହେବା ଫଳରେ ସ୍ୱାମୀଜୀ ଏବଂ ସତ୍‌ସଙ୍ଗ ଗୋଷ୍ଠୀ ପାଇଁ ଦାରୁଣ ଦୁଃଖ ସମୟ ଉପସ୍ଥିତ ହେଲା ।



ସ୍ୱାମୀଜୀ ଏହି ସମୟରେ ସମଗ୍ର ଭାରତବର୍ଷ ପଦବ୍ରଜରେ ଭ୍ରମଣ ଆରମ୍ଭ କଲେ । ଏହି ପଦବ୍ରଜର ଅନ୍ତିମ ସ୍ଥାନ ଥିଲା ଭାରତବର୍ଷର ଦକ୍ଷିଣତମ ସ୍ଥାନ କନ୍ୟାକୁମାରୀ । ପଦବ୍ରଜରେ ଭାରତବର୍ଷର ନଦନଦୀ, ପାହାଡ଼ ପର୍ବତ, ଗାଁ ଗଣ୍ଡା, ସ୍ତ୍ରୀ-ପୁରୁଷ ସମସ୍ତ ତତ୍କାଳୀନ ଚିତ୍ର ତାଙ୍କ ମାନସ ପଟରେ ସଜୀବ ହୋଇ ଅଙ୍କାହୋଇ ରହିଗଲା । ସେ ଏହି ସମୟରେ ମାନସିକ ଦ୍ୱନ୍ଦ୍ୱରେ ପଡି କିଂକର୍ତ୍ତବ୍ୟ ବିମୂଢ଼ ଅବସ୍ଥାରେ ପହଞ୍ଚିଥିଲେ । ତାଙ୍କ ମନରେ ଏକ ନୂତନ ଆଗ୍ରହ ଜନ୍ମ ହେଲା । ଦେବୀ କନ୍ୟାକୁମାରୀଙ୍କ ଦର୍ଶନ ପରେ ସମୁଦ୍ର ଭିତରେ ଥିବା ବିଶାଳ ଶିଳାଖଣ୍ଡରେ ଯାଇ ଉପନୀତ ହେଲେ । ତାରି ଉପରେ ଧ୍ୟାନ ମୁଦ୍ରାରେ ବସି ରହି ଚିନ୍ତା କରିବାକୁ ଲାଗିଲେ ।

ଏ ଦେଶର ଅତୀତ, ବର୍ତ୍ତମାନ ଏବଂ ଭବିଷ୍ୟତ ତାଙ୍କ ଆଖି ଆଗରେ ନାଚି ଉଠିଲା । ବିଶ୍ୱ ବ୍ରହ୍ମାଣ୍ଡର ଭିନ୍ନ ଭିନ୍ନ ଦୃଶ୍ୟ ସହିତ ଆତ୍ମା ପରମାତ୍ମା, ସ୍ୱର୍ଗ, ନର୍କ, ମର୍ତ୍ତ୍ୟ ଆଦି ତିନି ଭୁବନର ଚିତ୍ରଗୁଡ଼ିକ ମାନସପଟରେ ପ୍ରକାଶିତ ହେବାକୁ ଲାଗିଲା । ଏହି ପ୍ରକାର ସେ ତିନିଦିନ ଧରି ବିସ୍ତୀର୍ଣ୍ଣ ଜଳରାଶି ମଧ୍ୟବର୍ତ୍ତୀ ଏହି ଶିଳାଖଣ୍ଡ ଉପରେ ନିଜର ସାଧନା ଜାରି ରଖିଲେ । ଏ ସମୟ ଥିଲା ୧୮୯୨ ମସିହାର ଡିସେମ୍ବର ମାସ ୨୬, ୨୭ ଓ ୨୮ ତାରିଖ । ସେତେବେଳେ ତାଙ୍କର ବୟସ ମାତ୍ର ୨୯ ବର୍ଷ । ଦୀର୍ଘ ତିନିଦିନର ସାଧନା ପରେ ତାଙ୍କୁ ଦିବ୍ୟଜ୍ଞାନ ପ୍ରାପ୍ତ ହେଲା । ସେ ନିଜ ଜୀବନରେ କେତୋଟି ସିଦ୍ଧାନ୍ତରେ ଉପନୀତ ହେଲେ ।

ସେହି ଶିଳାଖଣ୍ଡରୁ ପ୍ରସ୍ଥାନ କରି ସ୍ୱାମୀଜୀ ନିଜର ଦିବ୍ୟଜ୍ଞାନ ଲୋକମାନଙ୍କୁ ସମ୍ମୁଖରେ ଉପସ୍ଥାପନ କରିବାକୁ ଲାଗିଲେ; ଯାହାର ସାରକଥା ହେଲା, *ଆତ୍ମାନଂ ମୋକ୍ଷାର୍ଥଂ, ଜଗତ୍ ହିତାୟ ଚ* । ପ୍ରତ୍ୟେକ ବ୍ୟକ୍ତି ଏ ପ୍ରକାର କାର୍ଯ୍ୟ କରନ୍ତୁ ଯାହା ଫଳରେ ନିଜ ଆତ୍ମାର ମୋକ୍ଷ ହେବ ଏବଂ ଜଗତର ହିତ ହେବ । ଧର୍ମ, ଅର୍ଥ, କାମ, ମୋକ୍ଷ ରୂପକ ଚତୁର୍ବର୍ଗ ଫଳ ପ୍ରାପ୍ତିର ଯେଉଁ ଅନ୍ତିମ ଲକ୍ଷ୍ୟ ରହିଛି, ତାହା ହେଲା ମୋକ୍ଷ ଏବଂ ଏହାର ପ୍ରାପ୍ତି ପାଇଁ ବଣ ଜଙ୍ଗଲକୁ ନଯାଇ ସମାଜ ଭିତରେ ବାସ କରି ସମାଜର ହିତ ସାଧନ କରି ଆଗେଇ ଯିବାକୁ ସ୍ୱାମୀଜୀ ନିଜ ଜୀବନର ବ୍ରତ ଭାବେ ଗ୍ରହଣ କଲେ ।

ଏ ତତ୍ତ୍ୱ ସାରା ଦେଶରେ ପ୍ରଚାର କରିଥିଲେ । ସ୍ୱାମୀଜୀଙ୍କୁ ଠିକ୍ ଏହି ସମୟରେ ସୁଯୋଗ ମିଳିଲା ଚିକାଗୋ ଧର୍ମସଭାରେ ଭାଗ ନେବାପାଇଁ । ଏ ଧର୍ମସଭା ସ୍ୱାମୀଜୀଙ୍କ ଅସାଧାରଣ ପ୍ରତିଭାର ପରିପ୍ରକାଶ କରାଇଦେଲା । *ହେ ମୋର ଆମେରିକାର ଭାଇ ଭଉଣୀମାନେ* ଉଦ୍‌ବୋଧନରେ କି ଚମତ୍କାରୀତା ଥିଲା କେଜାଣି ସେଦିନ ସାରା ଆମେରିକାରେ ଚହଳ ଖେଳିଗଲା । ପ୍ରାଚ୍ୟ ସଂସ୍କୃତି, ସନାତନ ଧର୍ମ ଏବଂ ମାନବବାଦର ଗୁରୁଗମ୍ଭୀର ଦର୍ଶନ ବିଶ୍ୱ ଦରବାରରେ ପରିବେଶିତ ହେଲା ।

ତାପରେ ସ୍ୱାମୀଜୀ ଆଉ ପଛକୁ ଫେରି ଚାହିଁ ନାହାଁନ୍ତି । ଭାରତବର୍ଷକୁ ଫେରିଆସି ଜାହାଜରୁ ଓହ୍ଲାଇ ସମୁଦ୍ର ବାଲିରେ ଗଡି ଯାଇଛନ୍ତି । ପବିତ୍ର ଭାରତ ମାତାର ଧୂଳିକଣାରେ ନିଜର ଦେହକୁ ମିଶାଇ ଦେଇଛନ୍ତି । ଏହା ସହିତ ଦେଶର ଧାର୍ମିକ ସଂସ୍କାର ଆଣିବା ପାଇଁ ସେ କହି

*କୁହିଛନ୍ତି - ହେ ମୋର ପ୍ରିୟ ଦେଶବାସୀ ଆସନ୍ତୁ ଆମେ ଆଗାମୀ ଶହେବର୍ଷ ପାଇଁ ଜଣେ ମାତ୍ର ଦେବୀର ପୂଜା କରିବା । ସେ ହେବେ ଭାରତ ମାତା । ସେ ହେବେ ଶକ୍ତିମତୀ, ଜ୍ଞାନଦାତ୍ରୀ ଏବଂ ଆମ ଜୀବନର ସବୁକିଛି । ଦେଶକୁ ସମ୍ପନ୍ନ ଓ ସବଳ କରି ଗଢି ତୋଳିବା । ଆମେ ସବଳ ଓ ସକ୍ଷମ ହେଲେ ବିଶ୍ୱ ଦରବାରରେ ଆମ ଦେଶର ସମ୍ମାନ ବଢିବ । ଭାରତବର୍ଷ ବିଶ୍ୱଗୁରୁର ଆଖ୍ୟା ପୁନଃଅର୍ଜନ କରିବ ।*

*ସେଥିପାଇଁ ସେ କହୁଥିଲେ ଆମକୁ ଗୀତା ପଢିବା ପୂର୍ବରୁ ଫୁଟବଲ୍ ଖେଳିବା ଦରକାର । ଖେଳ ଖେଳିବା ଫଳରେ ଆମ ଭିତରେ ଶକ୍ତି ସଞ୍ଚାର ହେବ । ଦୁର୍ବଳତା ଦୂର ହେବ । ଶକ୍ତିଶାଳୀ ବ୍ୟକ୍ତି ଗୀତାର ଅର୍ଥକୁ ସଠିକ୍ ଭାବେ ବୁଝି ପାରିବ ଏବଂ ପରମାର୍ଥ ଲାଭ କରିବାରେ ସକ୍ଷମ ହେବ ।*

ସ୍ୱାମୀଜୀଙ୍କ ସାଧନା ପୀଠ ଓ ପୂଣ୍ୟଭୂମି କନ୍ୟାକୁମାରୀର ବିଶାଳ ଶିଳା ଆଜି ବିବେକାନନ୍ଦ ଶିଳା ନାମରେ ନାମିତ । ଏହାର ଉପରିଭାଗରେ ଗତ ୧୯୭୦ ମସିହାରେ ଏକ ଭବ୍ୟ ଶିଳା ସ୍ମାରକୀ ପ୍ରତିଷ୍ଠା କରାଯାଇଛି । ସମୁଦ୍ର ତଟରୁ ଏହି ଶିଳାକୁ ଯିବାଆସିବା ପାଇଁ ଜଳଜାହାଜର ସୁବ୍ୟବସ୍ଥା କରାଯାଇଛି । ତିନିସାଗର ଯଥା - ଭାରତ, ଆରବ ଏବଂ ବଙ୍ଗୋପସାଗରର ମିଳନସ୍ଥଳୀ ଏହି ପବିତ୍ର ସ୍ଥାନ ଆଜି ସାରା ଭାରତବର୍ଷରେ ଏକ ପବିତ୍ର ଦର୍ଶନୀୟ ସ୍ଥାନ ଭାବରେ ଆଦୃତ ।

ଏହି ଶିଳା ସ୍ମାରକର ଉଦ୍ୟୋକ୍ତା ଥିଲେ ଏକନାଥ ରାଣାଡେ । ସେ ଜଣେ ବିଶିଷ୍ଟ ସଙ୍ଗଠକ ଓ ତତ୍ତ୍ୱଦର୍ଶୀ । ଶିଳା ସ୍ମାରକ ସହିତ ସଂଯୋଗ କରି ତାଙ୍କ ହାତରେ ତିଆରି ଅନ୍ୟ ଏକ ସେବା ଅନୁଷ୍ଠାନ ହେଉଛି ବିବେକାନନ୍ଦ କେନ୍ଦ୍ର । ଏହାର ମୁଖ୍ୟ କେନ୍ଦ୍ର କନ୍ୟାକୁମାରୀ ସହରରେ ପ୍ରତିଷ୍ଠା କରି ସାରା ଭାରତବର୍ଷରେ ଏହାର ଶାଖାମାନ ପ୍ରତିଷ୍ଠା ସହିତ ବିବେକାନନ୍ଦଙ୍କ ଜୀବନାଦର୍ଶରେ ଦେଶବାସୀଙ୍କୁ ବିଶେଷ କରି ଯୁବ ସମାଜକୁ ଉଦ୍‌ବୁଦ୍ଧ କରିବାର ପ୍ରଚେଷ୍ଟା ଜାରି ରହିଛି ।

*ଭୁବନେଶ୍ୱର*
*ବିବେକାନନ୍ଦ ଜୟନ୍ତୀ, ୨୦୦୧*



# ବେଲା ବାନାର୍ଜୀ

ଡିସେମ୍ବର ମାସ ରବିବାର ଦିନର ଅପରାହ୍ନ ବେଳା । ମଧୁବାବୁଙ୍କ ଗାଁ ସତ୍ୟଭାମାପୁରରେ କସ୍ତୁରବା ମେମୋରିଆଲ୍ ଟ୍ରଷ୍ଟଦ୍ୱାରା ପରିଚାଳିତ ମାତୃମଙ୍ଗଳ କେନ୍ଦ୍ର । ପରିଦର୍ଶନ କରୁଥିଲୁ । ସାଥିରେ ଥିଲେ ଟ୍ରଷ୍ଟର ପ୍ରତିନିଧି ମନୋରମା ଅପା । କେନ୍ଦ୍ରର ତତ୍ତ୍ୱାବଧାରିକା ସନ୍ଧ୍ୟା ଅପା । ଭୁବନେଶ୍ୱରରୁ ଆମ ସହିତ ଆସିଥିବା ଶ୍ରୀଯୁକ୍ତ ଇନ୍ଦୁଭୂଷଣ ମିଶ୍ର ଏବଂ ଟ୍ରଷ୍ଟର ପୁରୁଣା କର୍ମୀ ଗୋଲକ ଭାଇ ।

କେନ୍ଦ୍ରର ପ୍ରଥମ କକ୍ଷ ଦେଖିସାରି ଆଗକୁ ବଢୁଥିବା ବେଳେ ନଜର ପଡ଼ିଲା କାନ୍ଥରେ ଟଙ୍ଗାଯାଇଥିବା ଏକ ବନ୍ଧେଇ ତୈଳଚିତ୍ର ଉପରେ । ଚିତ୍ରଟି ଜଣେ ସ୍ତ୍ରୀ ଲୋକଙ୍କର । ମୋ ପାଇଁ ଅଜଣା । ଚେହେରାରୁ ବୟସ ଅନ୍ଦାଜ ପଚାଶବର୍ଷ ଜଣା ପଡୁଥିଲା । ପରିଧାନ ସରଳ । ବେକ, କାନ, କୌଣସି ଅଙ୍ଗରେ ଅଳଙ୍କାର ନାହିଁ । ମୁହଁରେ ସରସତା ଭରି ରହିଛି । ଫଟୋକୁ ଦେଖାଇ ପଚାରିଲି, ଏ କିଏ ?

ସଙ୍ଗେ ସଙ୍ଗେ ଉତ୍ତର ମିଳିଲା, ବେଲାଦି ।

ତଥାପି ବୁଝିପାରିଲି ନାହିଁ ।

ପୁଣି ଉତ୍ତର ମିଳିଲା, ବେଲାଦି ହେଲେ *ବେଲା ବାନାର୍ଜୀ* । ସେ ଏଇଠି ତିନିବର୍ଷ ପାଇଁ ଟ୍ରଷ୍ଟର ପ୍ରତିନିଧି ଭାବେ କାମ କରିଥିଲେ । ଏବେ ମରି ଗଲେଣି ।

ସଙ୍ଗେ ସଙ୍ଗେ ଇନ୍ଦୁବାବୁ କହିଉଠିଲେ, ତାଙ୍କର ଜୀବନୀ ବହିଟି ମୋ ପାଖରୁ କେହିଜଣେ ମାଗି ନେଇଛନ୍ତି । ଫେରାଇ ନାହାଁନ୍ତି । ଏଠାରେ ଜୀବନୀ ବହି ଅଛିକି ? ଥିଲେ ମୋତେ ଖଣ୍ଡିଏ ଦିଅନ୍ତୁ ।

ଏ କଥାବାର୍ତ୍ତାରୁ ମୋର ସେଦିନ ଯିବାବେଳର ଗାଡ଼ି ଭିତରେ ହୋଇଥିବା ଆଲୋଚନା ବିଷୟ ମନେ ପଡିଗଲା । ଇନ୍ଦୁବାବୁ କହୁଥିଲେ ବେଲାଦି ଟ୍ରଷ୍ଟ କଥା । ସେ ଟ୍ରଷ୍ଟରେ କିଛି ଟଙ୍କା ଅଛି । ସେଥିଲାଗି ବିଦେଶରୁ ଯଥା ଆମେରିକା ଓ କାନାଡ଼ାରୁ କିଛି ବ୍ୟକ୍ତି ଅର୍ଥ ପଠାଇଛନ୍ତି । ସେ ପାଣ୍ଠିକୁ ବ୍ୟାଙ୍କରେ ଗଚ୍ଛିତ ରଖାଯାଇଛି ଏବଂ ଏହାର ସୁଧ ପରିମାଣକୁ ବିନିଯୋଗ କରି ପ୍ରତିବର୍ଷ ୨/୩ ଜଣ ଝିଅଙ୍କୁ ନର୍ସ ଟ୍ରେନିଂରେ ପଠାଯାଉଛି । ଏଥର ସେହି ଟଙ୍କା ସାଥିରେ ନେଇ ଇନ୍ଦୁବାବୁ ଆମ ସହିତ ସତ୍ୟଭାମାପୁର ଯାଉଥିଲେ ।

ବିଷୟର ଗଭୀରତାକୁ ବୁଝିପାରିଲି ଏବଂ ବେଲା ବାନାର୍ଜୀ ଜଣେ ବିଶିଷ୍ଟ ମହିଳା, ଏଥର ଜାଣିପାରିଲି । ମୁଁ ମଧ୍ୟ ଗୋଟିଏ ଜୀବନୀ ବହି କିଣିବା ପାଇଁ ଅନୁରୋଧ ଜଣାଇଲି ।

ସେଦିନ ସତ୍ୟଭାମାପୁରର ଅନ୍ୟାନ୍ୟ କାର୍ଯ୍ୟ ଶେଷ ହେଲା । ସେଠାରୁ ଫେରିବା ବେଳକୁ ସନ୍ଧ୍ୟା । ଫେରନ୍ତା ସମୟରେ ପ୍ରାୟ ଏକଘଣ୍ଟା ଯାତ୍ରା ପଥରେ ଇନ୍ଦୁବାବୁଙ୍କ ସହିତ ଯେଉଁ ଅଳାପ ହୋଇଥିଲା, ତାର ବିଷୟବସ୍ତୁ ଥିଲା ବେଲା ବାନାର୍ଜୀ ଓ ବରପାଲି ପ୍ରୋଜେକ୍ଟ । ପରେ ଜୀବନୀ ବହିଟିକୁ ମଧ୍ୟ ପଢ଼ିଲି, ଯାହାର ଲେଖିକା ହେଲେ ଜଣେ ଆମେରିକୀୟ ମହିଳା - ଲାଭୋନେ ଗୋଡୱିନ୍ ପ୍ଲାଟ । ଜୀବନୀ ଲେଖା ଯାଇଥିଲା ୧୯୮୮ ମସିହାରେ । ସେତେବେଳେ ବେଲାଦି ଜୀବିତ ଥିଲେ । ଏହା ଭିତରେ ତାଙ୍କର ମୃତ୍ୟୁର ସାତ ବର୍ଷ ପାର ହୋଇଗଲାଣି ।

ବେଲା ବାନାର୍ଜୀଙ୍କ ଜନ୍ମ ପୂର୍ବ ବଙ୍ଗରେ ଢାକା ନିକଟସ୍ଥ ବୁଢାନି ଗାଁରେ ହୋଇଥିଲା । ସମ୍ଭବତଃ ୧୯୧୯ ମସିହାରେ । ତାଙ୍କ ଜନ୍ମ ତାରିଖର କୌଣସି ରେକର୍ଡ ନାହିଁ । କାରଣ ସେ କୌଣସି ସ୍କୁଲରେ ନାଁ ଲେଖାଇ ନଥିଲେ । ପିତାଙ୍କର କନିଷ୍ଠା କନ୍ୟା ଭାବେ ଜନ୍ମଗ୍ରହଣ କରିଥିଲେ ଏବଂ ମାତ୍ର ସାତମାସ ବୟସ ହୋଇଥିବା ବେଳେ ତାଙ୍କ ପିତାଙ୍କର କଲେରା ରୋଗରେ ମୃତ୍ୟୁ ହୋଇଗଲା ।

ସେ ସମୟର ଅନ୍ଧବିଶ୍ୱାସର ଶିକାର ହେଲେ ବେଲା ଏବଂ ବାପାଙ୍କର ମୃତ୍ୟୁର କାରଣ ଲଦି ଦିଆଗଲା ଏହି ବାଳୁତ ଶିଶୁର ମୁଣ୍ଡରେ । ପିତା ଶ୍ରୀ ମୁକୁନ୍ଦ ଚନ୍ଦ୍ର ବାନାର୍ଜୀ ଜଣେ ପ୍ରାଥମିକ ଶିକ୍ଷକ ଥିଲେ ଏବଂ ବେଲାଙ୍କ ମା ତାଙ୍କର ତୃତୀୟ ପତ୍ନୀ ଥିଲେ । ମୁକୁନ୍ଦ ବାନାର୍ଜୀଙ୍କ ମୃତ୍ୟୁବେଳକୁ ତାଙ୍କର ପ୍ରଥମ ସ୍ତ୍ରୀଙ୍କର ଜଣେ ପୁଅ ଥିଲେ ସତିଶଚନ୍ଦ୍ର, ଯେକି କଲିକତାରେ ସାମ୍ବାଦିକତା କରୁଥିଲେ ଏବଂ ଘରୁ ଏକପ୍ରକାର ଅଲଗା ହୋଇ ସପରିବାର ରହୁଥିଲେ । ଦ୍ୱିତୀୟ ପତ୍ନୀଙ୍କର ଏକମାତ୍ର ପୁତ୍ର ଥିଲେ ଗଣ ଏବଂ ବେଲାଙ୍କ ମାତା ବିମଳା ଦେବୀଙ୍କର ଥିଲେ ତିନିଜଣ ସନ୍ତାନ । କ୍ରମାନ୍ୱୟରେ ମନିକା, ସୁଷମା ଏବଂ ବେଲା ।

ପରିବାର ବୋଝ ସମ୍ଭାଳିବା ବିମଳା ଦେବୀଙ୍କ ପାଇଁ କଷ୍ଟସାଧ୍ୟ ହୋଇ ପଡିଥିଲା । ସେ ଗାଁ ଛାଡ଼ି ନିଜ ପିତ୍ରାଳୟ ଢାକା ଚାଲିଗଲେ । ମାତ୍ର ସେଠାରେ ବେଶିଦିନ ସାହାଯ୍ୟ ପାଇଲେ ନାହିଁ । ନିଜର ସାବତପୁଅ ଶତିଶଚନ୍ଦ୍ରଙ୍କ ପାଖକୁ ଆସି କଲିକତାରେ ପହଞ୍ଚିଲେ । ଏପରି ଭାବେ ବେଲାଦିଙ୍କ ବାଲ୍ୟଜୀବନ ଅଭାବ ଅନଟନରେ ବିତିଥିଲା ।

ଦୁଃଖଭରା ବେଲାଦିଙ୍କ ଜୀବନ ଭିତରେ ଈଶ୍ୱରଦତ୍ତ ଗୁଣର ପରିପ୍ରକାଶ ଘଟିଥିଲା । ପିଲାଦିନରୁ ତାଙ୍କର ହସ ହସ ମୁହଁ । ଚଳଚଞ୍ଚଳ ସ୍ୱଭାବ ଏବଂ ଅନ୍ୟକୁ ଆପଣାର କରିବାର ସହଜ ଦକ୍ଷତା କାରଣରୁ ସେ ସମସ୍ତଙ୍କ ପାଖରେ ପ୍ରିୟ ମଣିଷଟିଏ ହୋଇ ବଢି ଆସିଥିଲେ ।

ସମୟକ୍ରମେ ସେ ବେଙ୍ଗଲ ସୋସିଆଲ ସର୍ଭିସ୍ ଲିଗ୍‌ରେ ଜଣେ କର୍ମୀ ଭାବେ ଯୋଗ ଦେଇଥିଲେ । ଜନସେବା କ୍ଷେତ୍ରରେ ସ୍ୱାସ୍ଥ୍ୟସେବା ବିଭାଗରେ ମନୋନିବେଶ କରି ଜଣେ ମିଡ୍‌ୱାଇଫ୍

ବା ଧାଈ ଭାବେ ପ୍ରଶିକ୍ଷଣ ଲାଭ କରିଥିଲେ । ପରେ ବନ୍ଧୁମାନଙ୍କ ସହଯୋଗ ଲାଭ କରି ସେ ଲଣ୍ଡନସ୍ଥିତ ରୟାଲ ନର୍ସିଂ କଲେଜରେ ନର୍ସ ଟ୍ରେନିଂ ଗ୍ରହଣ କରିଥିଲେ । ସେଠାରୁ ଭାରତ ଫେରିଆସି ବେଲାଦି ଯୋଗ ଦେଇଥିଲେ ଓଡ଼ିଶାର ବରପାଲି ଗ୍ରାମରେ ଆରମ୍ଭ ହୋଇଥିବା ଆମେରିକାନ୍ ଫ୍ରେଣ୍ଡସ୍ ସର୍ଭିସ୍ କମିଟି ସେବା ଅନୁଷ୍ଠାନରେ ।

ଏ ସଂସ୍ଥାରେ ଦୀର୍ଘ ଦଶବର୍ଷ କାର୍ଯ୍ୟକାଳ ଭିତରେ ବେଲାଦି ଗାଁକୁ ଗାଁ ଯାଇଛନ୍ତି । ଶିଶୁ ଜନ୍ମ, ଶିଶୁ, ମହିଳା ସ୍ୱାସ୍ଥ୍ୟ, ପରିଚ୍ଛନ୍ନତା, ଔଷଧ ବଣ୍ଟନ, ପାନୀୟଜଳ ବ୍ୟବସ୍ଥା ଏବଂ ରୋଗୀ ଶୁଶ୍ରୂଷା ଆଦି ବିଭିନ୍ନ ବିଷୟରେ ନିଜର ଦକ୍ଷତା ପ୍ରଦର୍ଶନ କରି ବେଲାଦି ବରପାଲି ଅଞ୍ଚଳର ଗ୍ରାମେ ଗ୍ରାମେ ଅତି ଆପଣାର ହୋଇପଡିଥିଲେ । ପ୍ରୋଜେକ୍ଟ କାର୍ଯ୍ୟ ଶେଷ ହେବା ପରେ, ବେଲାଦି ମଧ୍ୟପ୍ରଦେଶ ଏବଂ କେରଳରେ ମଧ୍ୟ କିଛିବର୍ଷ ପାଇଁ ଅଜଣା ଅଶୁଣା ଲୋକମାନଙ୍କ ନିକଟକୁ ଯାଇ ସେମାନଙ୍କର ସ୍ୱାସ୍ଥ୍ୟ ସେବାରେ ନିୟୋଜିତ ଥିଲେ ।

ଓଡ଼ିଶାର ମାଟି, ପାଣି, ତାଙ୍କୁ ପୁଣିଥରେ ଟାଣିଆଣିଲା । ସେ ଓଡ଼ିଶାର ହରିଦାସପୁରଠାରେ ଶ୍ରୀମତୀ ରମ୍ଭାଦେବୀଙ୍କର ପରିଚାଳିତ ସେବାକେନ୍ଦ୍ରରେ ସହକର୍ମୀ ଭାବେ ଯୋଗଦେଲେ ଏବଂ ପରେ ସତ୍ୟଭାମାପୁରସ୍ଥିତ ମାତୃମଙ୍ଗଳ କେନ୍ଦ୍ରରେ ଯୋଗ ଦେଇଥିଲେ । ସତ୍ୟଭାମାପୁରଠାରେ ଅବସ୍ଥାନ କାଳରେ ତାଙ୍କର ଶାରୀରିକ ଅସୁସ୍ଥତା ଦେଖା ଦେଇଥିଲା । ତାଙ୍କର ମେରୁଦଣ୍ଡରେ ଯନ୍ତ୍ରଣା ଆରମ୍ଭ ହୋଇଥିଲା । ସେହି କଷ୍ଟକୁ ପିଠିରେ ପକାଇ ହସ ହସ ମୁହଁରେ ସେ କାମ କରିଚାଲୁଥିଲେ ।

ଏ ସମୟରେ ତାଙ୍କର ଜଣେ ହିତୈଷୀ ବନ୍ଧୁ ଦମ୍ପତି ଡା. ଏଡଭିନ୍ ଆବଟ୍ ଏବଂ ଡା. ଭିରିଆନ ଆବର୍ଟ ଭାରତ ଆସିଥିଲେ ଏବଂ ବେଲାଦିଙ୍କ ଏ ଅବସ୍ଥା ଦେଖି ତାଙ୍କୁ ସାଥିରେ କାନାଡ଼ା ନେଇଗଲେ ଚିକିତ୍ସାର ସୁବନ୍ଦୋବସ୍ତ କରିବା ପାଇଁ । କିଛିଦିନ ଚିକିତ୍ସା ହେବାପରେ ସେ ସୁସ୍ଥ ହୋଇ ପଡିଥିଲେ । ଏ ସମୟରେ ତାଙ୍କର ଜଣେ ପୁରୁଣା ବନ୍ଧୁ ଡା. ଡ୍ୱାଇଟ୍ ପ୍ଲାଟ୍‌ଙ୍କ ନିମନ୍ତ୍ରଣ ରକ୍ଷା କରି ସେ ଆମେରିକା ଯାଇଥିଲେ । ଆମେରିକାରେ କିଛିଦିନ ରହିବା ପରେ ତାଙ୍କର ସ୍ୱାସ୍ଥ୍ୟହାନୀ ଘଟିଲା ଏବଂ ସେ ସେହିଠାରେ ୧୫, ଜାନୁଆରୀ ୧୯୯୩ରେ ଶେଷ ନିଃଶ୍ୱାସ ତ୍ୟାଗ କଲେ ।

ବେଲାଦି ଜନ୍ମ ହେଲେ ଏକ ଦୁଃଖମୟ ପରିବେଶରେ । ନିଜର ଦୁଃଖକୁ ପଛରେ ପକାଇ ସେ ତାଙ୍କ ଚତୁଃପାର୍ଶ୍ୱକୁ ଅସୁମାରୀ ସୁଖ ବାଣ୍ଟିଗଲେ । ସେ ଅବିବାହିତ ରହିଥିଲେ । ମାତ୍ର ଜୀବନକାଳ ଭିତରେ ଭାରତ ଏବଂ ଭାରତ ବାହାରେ ଅନେକ ମଣିଷଙ୍କୁ ନିଜର କରି ଗଢ଼ି ତୋଳିଥିଲେ । ଧନ୍ୟ ସେ ମହିଳା । ଧନ୍ୟ ତାଙ୍କ ଜୀବନ । ଆମେ ଦେଶବାସୀ ଏପରି ଆତ୍ମାକୁ ଲାଭ କରିଥିବାରୁ ଆଜି ଗୌରବବୋଧ କରୁଛୁ ।

*ଭୁବନେଶ୍ୱର*
*ଜାନୁଆରୀ, ୨୦୦୧*

◆◆◆

# କର୍ମୀ : ପାଞ୍ଚଜଣ

ସାରାଦେଶରେ ସାକ୍ଷରତା ଅଭିଯାନ ଜୋର୍‌ସୋର୍‌ରେ ଚାଲିଛି । ଓଡିଶାର ବରଗଡ ଜିଲ୍ଲା ଏ ଉଦ୍ୟମରେ ସାମିଲ ହୋଇ ନିଜର ଉଦ୍ୟମ ଜାରି ରଖିଛି । ବରପାଲି ବ୍ଲକ୍ ଏହି ଜିଲ୍ଲା ମଧ୍ୟରେ ଏକ ସକ୍ରିୟ କାର୍ଯ୍ୟକ୍ଷେତ୍ର ।ଅକ୍ଟୋବର ୨୪ ତାରିଖ ଦିନ ଏହି ବରପାଲି ବ୍ଲକ୍‌ର କେତୋଟି ଗ୍ରାମୀଣ କେନ୍ଦ୍ର ବୁଲି ଦେଖିବାର ସୁଯୋଗ ମିଳିଥିଲା । ଏହି ପରିଦର୍ଶନ ସମୟରେ ପାଞ୍ଚଜଣ ମୁଖ୍ୟ ପ୍ରମୁଖ କର୍ମୀଙ୍କର କାର୍ଯ୍ୟକଳାପ ବିଶେଷ ଦୃଷ୍ଟି ଆକର୍ଷଣ କରିଥିଲା ।

**ପ୍ରଥମ କର୍ମୀ :**

ଜିଲ୍ଲା ସାକ୍ଷରତା ସମିତିର ସଂପାଦକ ଶ୍ରୀ ରଙ୍ଗାଧର ପଣ୍ଡା । ବୟସ ସତୁରୀ । ଅତିରିକ୍ତ ଜିଲ୍ଲପାଳ ପଦରୁ ଅବସର ପ୍ରାପ୍ତ । କମ୍ ଉଚ୍ଚର ସୁସ୍ଥ ମଣିଷ ଜଣେ । କେବଳ ବାମ କାନକୁ କମ୍ ଶୁଭୁଛି । ଗସ୍ତ ସମୟରେ ରାତ୍ରୀ ପ୍ରାୟ ୧୦ଟା ସମୟରେ ଚତୁର୍ଥ କେନ୍ଦ୍ରକୁ ଯିବା ରାସ୍ତାରେ ଆମେମାନେ ବ୍ୟସ୍ତତା ପ୍ରକାଶ କଲାବେଳେ ସେ ଉତ୍ସାହର ସହିତ କହୁଥିଲେ - ଆମର ଏପଟେ ଲୋକମାନେ ରାତିଦୁଇଟା ପର୍ଯ୍ୟନ୍ତ ଜଗିଥିବେ । ତାଲନ୍ତୁ ଦେଖିବେ । ଏମିତି ରାତି ବାରଟା, ଗୋଟାଏ ଯାଏଁ ଫିଲ୍‌ଡରେ ବୁଲିବା ମୋର ଅଭ୍ୟାସ ହୋଇଯାଇଛି ।

ଏପ୍ରକାର ନିର୍ଭର ବାର୍ତ୍ତା ଶୁଣିବା ପରେ ତାଙ୍କଠାରୁ କୋଡିଏ ବର୍ଷ ସାନ ଥିବା ଅନ୍ୟ ସହଯାତ୍ରୀମାନଙ୍କର ମନୋବଳ ବଢି ଯାଇଥିଲା । ସାକ୍ଷରତା ଅଭିଯାନର ସଫଳତା ବିଷୟରେ ପ୍ରଥମେ ବହୁତ ସନ୍ଦିହାନ ଥିବା ଶ୍ରୀ ପଣ୍ଡା କାର୍ଯ୍ୟକ୍ରମର ରୂପରେଖ ଦେଖିବା ପରେ,ବିଶେଷ କରି ଗ୍ରାମାଞ୍ଚଳରେ ଲୋକମାନଙ୍କର ଉତ୍ସାହ ଦେଖିବା ପରେ ବର୍ତ୍ତମାନ ଏହି ଅଭିଯାନ ସମ୍ପର୍କରେ ବେଶ୍ ଉତ୍ସାହୀ । କାର୍ଯ୍ୟକର୍ତ୍ତାଙ୍କୁ ଉପଯୁକ୍ତ ମାର୍ଗଦର୍ଶନ ଦେବା କ୍ଷେତ୍ରରେ ତାଙ୍କର ନିର୍ଦ୍ଦେଶ ଗୁଡିକ ପ୍ରଣିଧାନ ଯୋଗ୍ୟ । ଜିଲ୍ଲା କେନ୍ଦ୍ରରୁ ବ୍ଲକ୍ କେନ୍ଦ୍ର ପର୍ଯ୍ୟନ୍ତ ଯୋଜନାକୁ ପ୍ରସାର କରିବା ପରେ ସମସ୍ତ ନିଷ୍ପତ୍ତି ବ୍ଲକ୍ ଅଧିକାରୀଙ୍କ ଉପରେ ନ୍ୟସ୍ତ କରିଦେଇଛନ୍ତି । ଅନ୍ୟ ଯୁବକର୍ମୀମାନଙ୍କୁ ବଡବଡ ଆଶା ଦେଖାଇବାର ନାହିଁ । ଯୋଜନାକୁ ନିଜର କରିଦେବା ପାଇଁ ଆନ୍ତରିକ ଉଦ୍ୟମ । ଏହି ଭାବକୁ ପ୍ରତ୍ୟେକ ହୃଦୟରେ ପହଞ୍ଚାଇ ଦେବା ତାଙ୍କଦ୍ୱାରା ସଫଳ ଭାବେ ହୋଇପାରିଥିବା ଦେଖିବାକୁ ମିଳିଲା ।

କର୍ମ ହିଁ ସାଧନା - ତତ୍ତ୍ୱରେ ଦୃଢ ବିଶ୍ୱାସ ରଖିଥିବା ଶ୍ରୀ ପଣ୍ଡା କହନ୍ତି, *ରାମ ମହାରଣା ହାତରେ ତିଆରି ଠାକୁରଙ୍କ ମୂର୍ତ୍ତି ଯଦି ସବୁକିଛି ବୁଝି ଦେଉଥାନ୍ତେ ତେବେ ଠାକୁରଙ୍କ ଅପେକ୍ଷା ରାମ ମହାରଣାକୁ ପୂଜାକଲେ ଅଧିକ ଲାଭ ମିଳନ୍ତା ।* ଶ୍ରୀ ପଣ୍ଡା ହେଉଛନ୍ତ ଜିଲ୍ଲା ସାକ୍ଷରତା ସମିତିର ଜଣେ ଆଗ ଧାଡିର କର୍ମୀ ।

## ଦ୍ୱିତୀୟ କର୍ମୀ

ଓଡ଼ିଶାର ତିନିଶହ ଚଉଦ ଗୋଟି ବ୍ଲକ୍ ମଧ୍ୟରୁ ବରପାଲି ବ୍ଲକ୍ ଅନ୍ୟତମ । ମାତ୍ର ଏହି ବ୍ଲକ୍‌ର ଉନ୍ନୟନ ଅଧିକାରୀ ଶ୍ରୀ ଚନ୍ଦ୍ରମଣି ସେଠ୍ ଏକ ସ୍ୱତନ୍ତ୍ର ବ୍ୟକ୍ତି । ସାକ୍ଷରତା ଅଭିଯାନରେ ଶ୍ରୀ ସେଠ୍‌ଙ୍କ ଅବଦାନ ମଧ୍ୟ ଅନୁସରଣ ଯୋଗ୍ୟ । ତାଙ୍କ ବ୍ୟସ୍ତ କାର୍ଯ୍ୟ ନିର୍ଘଣ୍ଟ ମଧ୍ୟରେ ସାକ୍ଷରତାର ସ୍ଥାନ ସବୁଠାରୁ ଆଗରେ । ଦେହରେ ଜ୍ୱର ଥାଇ କମ୍ପୁଥିବା ସମୟରେ ସେ ସାକ୍ଷରତା କାର୍ଯ୍ୟରେ ଭାଗ ନେଇଛନ୍ତି । ବ୍ଲକ୍‌ର ବିଦ୍ୟାଳୟ ପରିଦର୍ଶକମାନଙ୍କୁ ଏବଂ ବଛାବଛା ଶିକ୍ଷକମାନଙ୍କୁ ଏ କାର୍ଯ୍ୟରେ ନିୟୋଜନ କରିବାରେ ସେ ଜଣେ ସଫଳ ବିନ୍ଧାଣି । ଗାଁକୁ ଗାଁ ଯାଇଛନ୍ତି । ଅନ୍ୟସବୁ ସରକାରୀ ଯୋଜନାଠାରୁ ସାକ୍ଷରତା ଅଭିଯାନ କିପରି ସ୍ୱତନ୍ତ୍ର ଧରଣର ତାହା ଜଣାଇଛନ୍ତି ।

ତାଙ୍କରି ପ୍ରେରଣାରେ ଗାଁର ଯୁବକ, ଯୁବତୀ, ପଞ୍ଚାୟତରେ ସରପଞ୍ଚ ଓ ୱାର୍ଡମେମ୍ବର ସ୍ୱେଚ୍ଛାସେବୀ ହୋଇ ବାହାରିଛନ୍ତି । ସାହି ସାହିରେ ପାଠପଢ଼ା ଆରମ୍ଭ ହୋଇଛି । ଯୋଜନାକୁ ଗ୍ରାମବାସୀଗଣ ଆପଣେଇ ନେଇଛନ୍ତି । ପ୍ରତି ଗାଁରେ ସ୍ୱେଚ୍ଛାସେବୀ ମଣ୍ଡଳୀ ଗଢ଼ି ଉଠିଛି । କେବଳ ସାକ୍ଷରତା ନୁହେଁ, ଅନ୍ୟାନ୍ୟ ସାମାଜିକ ଓ ସାମୂହିକ କାର୍ଯ୍ୟରେ ମଧ୍ୟ ଏ ଯୁବ ସଂଗଠନ ଆଗୁଆ ହୋଇ ବାହାରିଛନ୍ତି ।

ପ୍ରଥମ ଭାଗ ପାଠ ଶେଷ ହେବା ପରେ ଦ୍ୱିତୀୟ ଭାଗର ପାଠ ବହି ମିଳିବାରେ ବିଳମ୍ବ ହେବାରୁ ବ୍ଲକ୍‌ରେ ସ୍ୱେଚ୍ଛାସେବୀମାନେ ସାଇକେଲ୍ ଶୋଭାଯାତ୍ରା କରି ଜିଲ୍ଲାପାଳଙ୍କୁ ଭେଟ କରିଛନ୍ତି । ଦାବି ଜଣାଇଛନ୍ତି । ନିର୍ଭର ପ୍ରତିଶ୍ରୁତି ପାଇବା ପରେ ଫେରି ଆସିଛନ୍ତି ।

ସାକ୍ଷରତାର ନାଟକ ମଞ୍ଚସ୍ଥ ହୋଇଛି । ସାକ୍ଷରତାର ସଂଗୀତ ବୋଲାଯାଉଛି । ଏ ପ୍ରକାର ବ୍ଲକ୍‌ରେ ସାକ୍ଷରତାର ରଥ ଶ୍ରୀ ସେଠ୍‌ଙ୍କ ନେତୃତ୍ୱରେ ଆଗକୁ ମାଡ଼ିଚାଲିଛି ।

ଶ୍ରୀ ସେଠ୍ ଏହି ଅଳ୍ପଦିନ ତଳେ ଅନ୍ୟତ୍ର ବଦଳି ହୋଇ ଯାଇଛନ୍ତି । ଆମ ପରିଦର୍ଶନ ସମୟରେ ସେ ଉପସ୍ଥିତ ଥିଲେ । ତାଙ୍କୁ ବ୍ଲକ୍‌ର ସ୍ୱେଚ୍ଛାସେବୀମାନେ ବିଦାୟ ଦେବାବେଳେ ସାକ୍ଷରତା ଚିହ୍ନ ସମ୍ବଳିତ ଏକ ରୂପାର ଫଳକ ଉପହାର ଦେବାବେଳେ ସେ ଏହାକୁ ଦେଖି ନିଜର କୋହ ସମ୍ବରଣ କରିପାରି ନାହାଁନ୍ତି । ଆଖିରୁ ଅଶ୍ରୁଧାର ଅବାରିତ ଭାବେ ବୋହି ଚାଲିଛି । ସେ କହିଛନ୍ତି, ଯେ ପର୍ଯ୍ୟନ୍ତ ବଞ୍ଚି ରହିଥିବି, ସେ ପର୍ଯ୍ୟନ୍ତ ଏହି ଫଳକକୁ ସାଇତି ରଖିଥିବି ଏବଂ ବରପାଲି ବ୍ଲକ୍‌ର ସାକ୍ଷରତା ଅଭିଯାନ ଏବଂ ଏ ଅଭିଯାନରେ ସଂପୃକ୍ତ ସ୍ୱେଚ୍ଛାସେବୀମାନଙ୍କୁ ମନେ ରଖିଥିବି ।

## ତୃତୀୟ କର୍ମୀ

ଆମ ପରିଦର୍ଶନ ଆରମ୍ଭ ହେଲା ରାତି ୬.୩୦ ମିନିଟ୍‌ରେ । ଶେଷ ହେଲା ରାତି ୩ଟା ବେଳେ । ଏ ଦୀର୍ଘ ସମୟ ଧରି ଆମମାନଙ୍କ ସହିତ ଗାଇଡ୍‌ଭାବେ ଗାଁରୁ ଗାଁକୁ ବୁଲାଉଥିବା, କେନ୍ଦ୍ରମାନଙ୍କରେ ସଭା ସମ୍ପାଦନ କରୁଥିବା, ଗାଁର ଶିକ୍ଷକ, ସ୍ୱେଚ୍ଛାସେବୀ ଏବଂ ଗ୍ରାମବାସୀଙ୍କୁ ନିରନ୍ତର ଉପଦେଶ ଦେଉଥିବା ବ୍ୟକ୍ତିଜଣକ ହେଉଛନ୍ତି ଯଦୁମଣି ବିଶି । ପେଷାରେ ଶିକ୍ଷକ ।

ବର୍ତ୍ତମାନ ବିଦ୍ୟାଳୟ ପରଦର୍ଶକ । ସେ ହେଲେ ଅଭିଯାନର ରିସୋର୍ସ ପର୍ସନ ବା ସାଧନକର୍ମୀ । କର୍ମଠ, ଚଳଚଞ୍ଚଳ । ଉତ୍ସାହରେ ଭରପୂର । ସ୍ୱେଚ୍ଛାସେବୀମାନଙ୍କ ପାଇଁ ଆନ୍ତରିକତାରେ ପରିପୂର୍ଣ୍ଣ । କ୍ଷେତ୍ରରେ କାର୍ଯ୍ୟରତ ପ୍ରତ୍ୟେକ ସ୍ୱେଚ୍ଛାସେବୀ ସହିତ ବ୍ୟକ୍ତିଗତ ପରିଚୟ । ବ୍ଲକ୍ସ୍ତରରେ ସ୍ୱେଚ୍ଛାସେବୀମାନଙ୍କୁ ଟ୍ରେନିଂ ଦେବା, ଜିଲ୍ଲା ଅଧିକାରୀ ଏବଂ ବ୍ଲକ୍ ଅଧିକାରୀଙ୍କ ସହିତ ନିରନ୍ତର ସମ୍ପର୍କ ରକ୍ଷା କରିବା, କର୍ମୀମାନଙ୍କ ଭିତରେ କର୍ତ୍ତବ୍ୟବୋଧର ଜାଗରଣ କରିବା, ସାକ୍ଷରତା କାର୍ଯ୍ୟକ୍ରମକୁ ନିଜର କାର୍ଯ୍ୟଭାବେ ବିଚାର କରିବା ପାଇଁ ପ୍ରେରଣା ଦେବା ଆଦି ସମସ୍ତ ମହାନ୍ ଭାବଧାରାର ସ୍ଥାନୀୟ ଉତ୍ସ ହେଲେ ଶ୍ରୀ ବିଶି ।

ପ୍ରତ୍ୟେକ କେନ୍ଦ୍ରରେ ସମୁଚିତ କାର୍ଯ୍ୟକ୍ରମ । ସବୁଠାରେ ସୁଚିନ୍ତିତ ଯୋଜନା । ବରପାଲି ବ୍ଲକ୍‌ରେ ଏକ ସ୍ୱତନ୍ତ୍ର କାର୍ଯ୍ୟଶୈଳୀ ଦେଖିବାକୁ ମିଳିଲା । ନାଁ ହେଲା, ଟାସ୍କଫୋର୍ସ । ଏ ଦଳରେ ବକ୍ତା, ନାୟକ ଓ ବାଦ୍ୟକାରଙ୍କୁ ସାମିଲ୍ କରାଯାଇଛି । ଯେଉଁ ଗାଁରେ କାମ ଧିମେଇ ଯିବାର ଦେଖାଯାଏ, ସେଠି ଏ ଦଳ ହାଜର । ଘଣ୍ଟେ ଦୁଇଘଣ୍ଟାର କାର୍ଯ୍ୟକ୍ରମ କରିଦେଲେ ମୃତ ପ୍ରାଣରେ ଜୀବନ ସଞ୍ଚାର କରିବାର କ୍ଷମତାର ରଖିଛନ୍ତି ଏ ଦଳର କର୍ମୀବୃନ୍ଦ । ଗାଁ ଭିତରର ସ୍କୁଲ ଶିକ୍ଷକମାନଙ୍କୁ ଏ ଅଭିଯାନରେ ସାମିଲ୍ କରାଯାଇଛି । ଏ ଦିଗରେ ନିଜର ବ୍ୟକ୍ତିଗତ ପ୍ରଭାବ ସହିତ ଶିକ୍ଷାକ୍ଷେତ୍ରକୁ ମଧ୍ୟ ସମ୍ମିଳିତ କରିଛନ୍ତି ଶ୍ରୀ ବିଶି । ଜିଲ୍ଲା କାର୍ଯ୍ୟର ସମୀକ୍ଷା ହୋଇଥିଲା ପ୍ରାୟ ଦୁଇମାସ ତଳେ । ସମୀକ୍ଷାରେ ବରପାଲି ବ୍ଲକ୍ ସମଗ୍ର ଜିଲ୍ଲାରେ ଆଗୁଆ ସ୍ଥାନ ହାସଲ କରିଛି ।

## ଚତୁର୍ଥ କର୍ମୀ

ସାକ୍ଷରତା ଅଭିଯାନରେ ପ୍ରମୁଖ ପ୍ରଶିକ୍ଷକ ବା ମାଷ୍ଟର ଟ୍ରେନରଙ୍କର ମନୋନୟନ ଏକ କଠିନ କାର୍ଯ୍ୟ । ଚେନ୍ ଭିତରେ ଏକ ବିଶେଷ କଡ଼ି ଉପରର ଯୋଜନା ଏବଂ ତତ୍‌ସହିତ ନିର୍ଦ୍ଦେଶଗୁଡ଼ିକୁ ତଳସ୍ତରର ସ୍ୱେଚ୍ଛାସେବୀମାନଙ୍କୁ ଠିକ୍ ଭାବେ ବୁଝାଇବା, ସ୍ୱେଚ୍ଛାସେବୀମାନଙ୍କର ଛୋଟ ଛୋଟ ସମସ୍ୟାଗୁଡ଼ିକର ସମାଧାନ କରିବା, ପ୍ରଶ୍ନଗୁଡ଼ିକର ଉପଯୁକ୍ତ ଉତ୍ତର ଦେବା, ସେମାନଙ୍କର ପ୍ରେରଣାର ସ୍ରୋତକୁ ଜୀବନ୍ତ ରଖିବା, ଏ ସମସ୍ତ କାର୍ଯ୍ୟ ନ୍ୟସ୍ତ ଥାଏ ଏହି ସ୍ତରର କର୍ମୀଙ୍କ ଉପରେ ।

ବରପାଲି ବ୍ଲକ୍‌ର ଏହି ସ୍ତରର ଜଣେ କର୍ମୀ ହେଲେ ଶ୍ରୀ ଲକ୍ଷ୍ମୀଧର ସେଠ୍ । ବୟସ ପଚାଶ ସେପଟେ । ମାର୍ଜିତ ବେଶଭୂଷା, କେଶ ବିନ୍ୟାସ, ଭାଷା ପ୍ରୟୋଗ ଏବଂ ଭାଷଣ ଚାତୁରୀ । ପ୍ରାଥମିକ ବିଦ୍ୟାଳୟର ପ୍ରଧାନଶିକ୍ଷକ ଭାବେ କାର୍ଯ୍ୟରତ । ଦୀର୍ଘ ତିରିଶ ବର୍ଷର ଶିକ୍ଷକତା ଭିତରେ ଅଞ୍ଚଳର ଅଧିକାଂଶ ହେଉଛନ୍ତି ତାଙ୍କର ଛାତ୍ର । ପ୍ରାଣବନ୍ତ ମଣିଷ ଜଣେ । ସ୍ୱେଚ୍ଛାସେବୀଙ୍କ ଗହଣରେ ସେମାନଙ୍କ କାନ୍ଧରେ ହାତରଖି ସେ ଯେତେବେଳେ କହନ୍ତି, ଏମାନେ ସମସ୍ତେ ମୋର ଛାତ୍ର, ମୋ କଥା ଶୁଣନ୍ତି – ସେତେବେଳେ ତାଙ୍କ ମୁହଁରେ ସ୍ୱତଃ ଫୁଟିଉଠେ ଜଣେ ସଫଳ ଶିକ୍ଷକର ଆତ୍ମ ତୃପ୍ତିର ହସ । ଆଖିରେ ନାଚିଉଠେ ଜଣେ ବୟସ୍କ ବ୍ୟକ୍ତିର ସ୍ୱାଭିମାନ ଭରା ଝଲକ ।

ବିଳମ୍ବିତ ରାତ୍ରିରେ ପ୍ରାୟ ପଚାଶ ଜଣ ଯୁବତୀ ସ୍ୱେଚ୍ଛାସେବୀଙ୍କର ନିର୍ଭୟ ଅଂଶ ଗ୍ରହଣ ଦେଖି ସ୍ୱତଃ ମନରେ ପ୍ରଶ୍ନ ଉଙ୍କିମାରିଲା ଯେ, ଏ ପ୍ରକାର ନିର୍ଭୟ ଦୃଶ୍ୟ ଏ ଗ୍ରାମାଞ୍ଚଳରେ କିପରି ସମ୍ଭବ ହୋଇଛି ? ପ୍ରଶ୍ନର ଉତ୍ତର ମିଳିଥିଲା । ପ୍ରଥମ ହେଲା - ଗୋଟିଏ ଗାଁରୁ ଦଳଟିଏ ଝିଅ ଏକ ସାଥିରେ ଅଛନ୍ତି ଏବଂ ପୁଅ ସ୍ୱେଚ୍ଛାସେବୀମାନେ ମଧ୍ୟ ସେମାନଙ୍କର ଭାଇ, କକେଇ ବା ସମ୍ପର୍କୀୟ । ତେଣୁ ଭୟ ନାହିଁ । ଦ୍ୱିତୀୟ ଏବଂ ପ୍ରମୁଖ ଉତ୍ତର ହେଲା - ଦଳପତି ଲକ୍ଷ୍ମୀଧର ସେଠ୍‌ଙ୍କ ଉପସ୍ଥିତି । ଇଂରାଜୀରେ ଯାହାକୁ କୁହାଯାଏ *ଫାଦର ଫିଗର* ।

**ପଞ୍ଚମ କର୍ମୀ**

ଝିଅଟିଏ, ଗଲା ମାସେ ତଳେ ବିବାହ ହୋଇଛି । ପାଟି କୁଲୁଣ୍ଡା ଗାଁର ଝିଅ ସେ । ଗାଁରୁ ୨୫ କିଲୋମିଟର ଦୂରରେ ଶ୍ୱଶୁରଘର । ବିବାହ ସମୟରେ ଗାଁର କେନ୍ଦ୍ରଗୁଡ଼ିକରେ ପ୍ରଥମ ପାଠ ଶେଷ ହୋଇ ଆସୁଥିଲା । ଦ୍ୱିତୀୟ ପାଠ ଆରମ୍ଭ ହୋଇନଥାଏ । ତିନୋଟି କେନ୍ଦ୍ରର ଦାୟିତ୍ୱ ତା ଉପରେ । ବିବାହ ପରେ ସ୍ୱାମୀ ଓ ଶାଶୂଘରର ଆକର୍ଷଣ ଅପେକ୍ଷା ଗାଁର ଶିକ୍ଷା କେନ୍ଦ୍ରର ଆକର୍ଷଣ ତା ପାଇଁ ଅଧିକ ହୋଇ ପଡିଛି । ଶାଶୁ ଓ ଶ୍ୱଶୁରଙ୍କୁ ବୁଝାଇ ସୁଝାଇ ଅନୁମତି ନେଇ ସ୍ୱାମୀଙ୍କୁ ସାଥିରେ ଧରି ନିଜ ଗାଁକୁ ଫେରି ଆସିଛି । ଦ୍ୱିତୀୟ ପାଠ ଶେଷ କରି ଶାଶୂଘରକୁ ଫେରିବ । ନାଁ ତାର ମମତା । ମମତା ରାଣୀ ସାହୁ । କୃଷକ ପରିବାରର ଅଠର - ଉଣେଇଶ ବର୍ଷର ମାଟ୍ରିକ୍ ପାସ୍ କରିଥିବା ଝିଅଟି । କି ଉତ୍ସାହ, କି ଆଗ୍ରହ !

ଗାଁ ଭିତରେ ଝିଅମାନଙ୍କୁ ଏ କାମରେ ଟାଣି ଆଣିବାରେ ତାର ମୁଖ୍ୟ ଭୂମିକା ଅଛି । ତାର ସ୍ୱାମୀ ଏସବୁ ଦେଖିଛନ୍ତି । ବିହ୍ୱଳ ହୋଇପଡିଛନ୍ତି । ନିଜ ସ୍ତ୍ରୀକୁ ଏ କ୍ଷେତ୍ରରେ ଛାଡିଦେଇ ପ୍ରାୟ ଏକ ସପ୍ତାହ ରହଣି ପରେ ସେ ନିଜ ଗାଁକୁ ଫେରି ଯାଇଛନ୍ତି ।

ମମତା ତାର କାମରେ ପୂରା ଦମ୍‌ରେ ଲାଗିପଡିଛି । ପ୍ରାୟ ଦୁଇମାସ ପରେ ଯେତେବେଳେ ଶାଶୂଘରକୁ ଫେରିଛି, ସେତିକିବେଳେ ଗାଁରୁ ଦୁଇଟି ଟ୍ରେକରରେ ଭର୍ତ୍ତିହୋଇ ତିରିଶଜଣ ସ୍ୱେଚ୍ଛାସେବୀ ପୁଅ ଓ ଝିଅ ମିଶି ତାକୁ ଛାଡିବାକୁ ଯାଇଛନ୍ତି । ତାର ଶ୍ୱଶୁରଘର ଗାଁରେ ସାକ୍ଷରତା ଅଭିଯାନର ସୂତ୍ରପାତ କରିବା ପାଇଁ । ଦୁଇଦିନ ରହଣି ପରେ, ପ୍ରାରମ୍ଭିକ ବାତାବରଣ ସୃଷ୍ଟି କରି ସେମାନେ ନିଜ ଗାଁକୁ ଫେରି ଆସିଛନ୍ତି । ସେ ଗାଁଟି କିନ୍ତୁ ବରପାଲି ବ୍ଲକ୍‌ର ସୀମା ବାହାରେ । ତେଣୁ ବରପାଲିର ଉତ୍ସାହ ସେଠାରେ ମିଳିନି । ମମତା ଭଳି ଝିଅଟିଏ ପାଇ କେବଳ ତାର ବାପା, ମା ଏବଂ ଶ୍ୱଶୁର, ଶାଶୂ ନୁହଁନ୍ତି, ସମଗ୍ର ପାଟକୁଲୁଣ୍ଡା ଗାଁ ଆଜି ଧନ୍ୟ ହୋଇଛି ।

ଉପରୋକ୍ତ ପାଞ୍ଚଜଣ କର୍ମୀ, ସମଗ୍ର ବରଗଡ଼ ଜିଲ୍ଲାର ତଥା ବରପାଲି ବ୍ଲକ୍ ଭିତରେ କାର୍ଯ୍ୟରତ କର୍ମୀମାନଙ୍କର ପ୍ରତିନିଧି ମାତ୍ର ।

*ଭୁବନେଶ୍ୱର*
*ଜାନୁଆରୀ, ୨୦୦୧*



# ସୁଭାଷ ବୋଷ : କଟକରୁ ତାଇହୋକ୍

ସୁଭାଷ ବୋଷ ଭରତୀୟ ଜନମାନସରେ ଅତିପ୍ରିୟ ନେତା । ବିଶେଷ ଭାବେ ଯୁବ ସମାଜ ପାଇଁ ଏବଂ ଦୁଃସାହସୀ ଯୁବକ ଯୁବତୀମାନଙ୍କର ସେ ଜଣେଜୀବନ୍ତ ଆଦର୍ଶ । ଓଡିଶାବାସୀଙ୍କ ପାଇଁ ସୁଭାଷ ବୋଷ ଅତି ଆପଣାର । ଅତିନିକଟର । ଓଡିଶାର ସାଂସ୍କୃତିକ ମୁଖ୍ୟ ସହର କଟକର ଓଡିଆ ବଜାରରେ ଜନ୍ମ ଗ୍ରହଣ କରି ଏହି ମାଟିରେ ଖେଳି କୁଦି , ଏଠିକାର ସ୍କୁଲ୍‌ରେ ମାଟ୍ରିକ୍ ପାଶ୍ କରି ଉଚ୍ଚଶିକ୍ଷା ପାଇଁ କଲିକତା ସହରକୁ ଯିବା ପର୍ଯ୍ୟନ୍ତ ଏ ପ୍ରଦେଶର ଭାଷା ସଂସ୍କୃତି , ଚାଲିଚଳଣି ସହିତ ଏକାକାର ହୋଇରହିଥିଲେ ।

ଓଡିଶାର କଟକ ସହରରେ ୧୮୯୭ ମସିହାରେ ଜନ୍ମ ହୋଇଥିବା ସୁଭାଷ ବୋଷ ଫର୍ମୋଜା ଦ୍ୱୀପର ତାଇହୋକ୍ ସହରରେ ଶେଷ ଦର୍ଶନ ଦେଇଥିଲେ ୧୯୪୫ ମସିହାରେ । କୁହାଯାଏ ନେତାଜୀ ଏକ ଉଡାଜାହାଜ ଦୁର୍ଘଟଣାରେ ସେହି ସ୍ଥାନରେ ମୃତ୍ୟୁ ବରଣ କରିଥିଲେ । କଟକ୍ରୁ ତାଇହୋକ୍, ୧୮୯୭ ମସିହାରୁ ୧୯୪୫ ମସିହା । ଦୀର୍ଘ ୪୮ ବର୍ଷର ଜୀବନ ଯାତ୍ରାର କାହାଣୀ ସମଗ୍ର ଦେଶ ବାସୀଙ୍କ ପାଇଁ ରୋମାଞ୍ଚକର ଘଟଣାରେ ଭରପୁର ଥିଲା ।

**କଟକରେ ବାଲ୍ୟକାଳ**

ସୁଭାଷ ଜଣେ ମେଧାବୀ ଛାତ୍ର ଥିଲେ । ପିତା ଜାନକୀନାଥ ବୋଷ ଜଣେ ଜଣାଶୁଣା ଏବଂ ସମ୍ପନ୍ନ ବାରିଷ୍ଟର ଥିଲେ । ତାଙ୍କର ବଡ ପରିବାର ଥିଲା । ରେଭେନ୍‌ସା କଲେଜିଏଟ ସ୍କୁଲ୍ ର ଛାତ୍ର ଭାବେ ଓଡିଶା -ବିହାର ବୋର୍ଡ ରୁ ସୁଭାଷ ପ୍ରଥମ ସ୍ଥାନ ଅଧିକାର କରି ଉତ୍ତୀର୍ଣ୍ଣ ହୋଇଥିଲେ । ସ୍କୁଲ୍ ଛାତ୍ର ଥିବା ଅବସ୍ଥାରେ କଟକର ଯେଉଁ ମହାମାରୀ ଆତଙ୍କ ଖେଳିଯାଇ ଥିଲା ସେତେବେଳେ ସୁଭାଷ ନିଜର ନିର୍ଭିକତା ଓ ନେତୃତ୍ୱ କଳାର ପ୍ରଦର୍ଶନ କରି କଟକ ସହର ଗଳିକନ୍ଦି ବୁଲି ରୋଗୀ ସେବା କରୁଥିଲେ ଏବଂ ଗୁଣିଗାରେଡିର ପ୍ରଚାର କରୁଥିବା ଗୁଣିଆକୁ ଠିକ୍ ଜବାବ ଦେଇ ଅନ୍ଧ ବିଶ୍ୱାସୀମାନଙ୍କର ମୁହଁ ବନ୍ଦ୍ କରିଦେଇଥିଲେ ।

**କଲିକତା ରହଣି :**

କଲିକତାରେ ସୁଭାଷ ବୋଷ୍ ପ୍ରେସିଡେନ୍‌ସି କଲେଜର ଛାତ୍ରଥିଲେ । ଜାତୀୟତାର ଅପମାନ ବରଦାସ୍ତ ନକରି କଲେଜର ଉଦ୍ଧତ ପ୍ରିନ୍‌ସିପାଲଙ୍କୁ ଚାପୁଡା ମାରିବାର ଉଦାହରଣ ତାଙ୍କ ଜୀବନରେ ଘଟିଥିଲା । କଲେଜରୁ ବାଧ୍ୟତାମୂଳକ ଟିସି ମିଳିବା ପରେ ସେ ଅନ୍ୟ କଲେଜରେ

ନାଁ ଲେଖାଇ ଉଚ୍ଚଶିକ୍ଷା ଶେଷ କରିଥିଲେ । ମେଧାବୀ ଛାତ୍ରର ପ୍ରମାଣ ଦେଇ ସୁଭାଷ ବୋଷ ଲଣ୍ଡନ ଯାଇ ସେ ସମୟର ସର୍ବୋଚ୍ଚ ସରକାରି ଚାକିରି ଆଇ.ସି.ଏସ୍. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ମାତ୍ର ଦେଶ ମାତୃକାର ଆହ୍ୱାନ ଏବଂ ଆକର୍ଷଣ ତାଙ୍କ ପାଇଁ ଏତେ ବଳବତ୍ତର ଥିଲା ଯେ ସେ ଚାକିରିର ମୋହ ଏବଂ କ୍ଷମତାର ଲୋଭକୁ ଏଡାଇ ଦେଇ ନିଜକୁ ଦେଶ କାର୍ଯ୍ୟରେ ସମ୍ପୂର୍ଣ୍ଣ ଭାବେ ନିୟୋଜିତ କରିଥିଲେ । ପରବର୍ତ୍ତୀ ସମୟରେ ସେ କଲିକତା ମହାନଗରୀର ମେୟର ଭାବେ ନିର୍ବାଚିତ ହୋଇଥିଲେ । ତାଙ୍କ ସମୟରେ ତିଆରି ଅଡିଟୋରିୟମ୍ ଆଜି ମହାଜତି ସଦନ ନାମରେ ବିଖ୍ୟାତ । ସୁଭାଷ ବୋଷ କଂଗ୍ରେସ ଦଳରେ ସକ୍ରିୟ ଭାବେ ଭାଗ ନେଇ ଏହାର କେନ୍ଦ୍ରସ୍ତରରେ ନେତୃତ୍ୱ ନେବା ପାଇଁ ପ୍ରସ୍ତୁତ ହେଉଥିଲେ ।

**ସୁବାଷ ଓ ଗାନ୍ଧିଜୀ :**

ରାଜନିତିର ଚକ୍ରବ୍ୟୁହ ଭିତରେ ସୁବାଷ ବୋଷ ଲଢୁଆ ମନୋଭାବ ନେଇ କାର୍ଯ୍ୟ କରୁଥିବା ବେଳେ ଗାନ୍ଧିଜୀ ସତ୍ୟ ଅଂହିସାର ମାର୍ଗ ବାଛି ନେଇ ଥିଲେ । ଅନଶନ ଏବଂ ପଦଯାତ୍ରା ରୂପକ ଅସ୍ତ୍ରକୁ ମାଧ୍ୟମ ରୂପେ ଗ୍ରହଣ କରିବାକୁ ସୁଭାଷ ଅମଙ୍ଗ ହେଉଥିଲେ । ସେ ଜୋର୍ ଦେଉଥିଲେ ମଜଭୁତ୍ ସଙ୍ଗଠନ ଲଢୁଆ ଯୁବ ବାହିନୀ । ସେ ମାଡ ଖାଇ ସହିଯିବା ଅପେକ୍ଷା ମାଡମାରି ପ୍ରତିଶୋଧ ନେବାର ମନୋବୃତ୍ତି ରଖୁଥିଲେ । ଦୁଇ ମହାନ୍ ବ୍ୟକ୍ତିଙ୍କର ଅନ୍ତିମ ଲକ୍ଷ୍ୟ କିନ୍ତୁ ଏକ ଥିଲା - ଦେଶକୁ ସ୍ୱାଧୀନ କରିବା ।

ଦୁଇ ବିଚାରକୁ ନେଇ କଂଗ୍ରେସ ଦଳରେ ଏକ ଶକ୍ତି ପରୀକ୍ଷାର ସମୟ ଉପସ୍ଥିତ ହେଲା, ଯେତେବେଳେ ସୁଭାଷ ବୋଷ ଏବଂ ପଟ୍ଟାଭି ସୀତାରାମାୟାଙ୍କ ମଧ୍ୟରେ କଂଗ୍ରେସ ଦଳର ସଭ୍ୟପଦ ପାଇଁ ପ୍ରତିଦ୍ୱନ୍ଦିତା ହେଲା ଏବଂ ଗାନ୍ଧିଜୀଙ୍କ ଆହ୍ୱାନ ଥିଲା ପଟ୍ଟାଭିଙ୍କ ପରାଜୟ ହେବ ଗାନ୍ଧିଜୀଙ୍କ ପରାଜୟ ।

ଏହି ଉକ୍ତି ହିଁ ସଦସ୍ୟ ମାନଙ୍କୁ ଦ୍ୱନ୍ଦ୍ୱରେ ପକାଇ ଦେଲା । ମାତ୍ର ସୁଭାଷ ବୋଷ ନିଜ ଜୀବନରେ ଏକ ଯୁଗାନ୍ତକାରୀ ନିର୍ଣ୍ଣୟ ନେଇଥିଲେ । ଭାରତ ଛାଡି ୟୁରୋପ ଚାଲି ଯିବାର ଯୋଜନା କଲେ ଏବଂ ଗୁପ୍ତ ଯୋଜନାର ସୁରାକ ସେ ସମୟରେ ଇଂରେଜ ସରକାର ଲେଶ ମାତ୍ର ଜାଣି ପାରିଲେ ନାହିଁ ।

**ଜର୍ମାନରେ ସୁଭାଷ :**

ଭାରତରୁ ଗୁପ୍ତ ଭାବରେ ପଳାଇ ଆସି ପେଶୱାର ବାଟ ଦେଇ ସଡକ ପଥରେ ଆଫଗାନିସ୍ଥାନ ଏବଂ ତୁର୍କୀସ୍ଥାନ ଆଦି ରାଜ୍ୟ ପାର ହୋଇ କେଉଁଠି ବ୍ରଣିକ ଭାବେ ତ କେଉଁଠି କାବୁଲିବାଲା ଭାବେ ନିଜକୁ ସଜାଇ ସୁଭାଷ ଆସି ଜର୍ମାନୀରେ ପହଞ୍ଚିଥିଲେ ।

ସେତେବେଳେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଯୋରସୋର୍ ରେ ଚାଲିଥାଏ । ମିତ୍ର ପକ୍ଷର ସହାୟତାରେ ଇଂରେଜ ସରକାରକୁ ପରାସ୍ତ କରି ଭାରତକୁ ସ୍ୱାଧୀନ କରିବାର ଲକ୍ଷ୍ୟ ରଖିଥିବା ସୁଭାଷ ବୋଷ ଜର୍ମାନୀର କର୍ତ୍ତୃପକ୍ଷଙ୍କର ବିଶ୍ୱାସଭାଜନ ହୋଇପାରିଥିଲେ ।

ସେ ସମୟରେ ତାଙ୍କର ଜଣେ ଜର୍ମାନ ତରୁଣୀଙ୍କ ସହିତ ବିବାହ ହୋଇଥିଲା ଏବଂ ସେଠି ତାଙ୍କର ଏକ କନ୍ୟା ସନ୍ତାନ ଜନ୍ମ ହୋଇଥିବା ଜଣାଯାଏ । ନିଜର ଅନ୍ତିମ ଲକ୍ଷ୍ୟ ସାଧନ ପାଇଁ ସୁଭାଷ ଜର୍ମାନ ଛାଡି ମିତ୍ର ଶକ୍ତିର ଅନ୍ୟତମ ସଦସ୍ୟ ରାଷ୍ଟ୍ର ଜାପାନ ରାଜ୍ୟରେ ପହଞ୍ଚିଲେ ।

ଜାପାନରେ ସୁଭାଷ :

ଜାପାନରେ ପହଞ୍ଚିବା ପରେ ସେତେବେଳର ଜାପାନ ଶାସନ ମୁଖ୍ୟ ତେଜୋଙ୍କର ବିଶ୍ୱାସ ଭାଜନ ହେବା ସଂଗେସଂଗେ ସେ ନିଜର ସଂଗଠନ କୁଶଳତା ଏବଂ ଲଢୁଆ ସ୍ୱଭାବର ପ୍ରମାଣ ଦେଇଥିଲେ ଏକ ଶକ୍ତିଶାଳୀ ସେନା ବାହିନୀ ଗଠନ୍ କରି । ଏହାର ନାଁ ଥିଲା *ଆଜାଦ୍ ହିନ୍ଦ୍ ଫୌଜ* । ସେ ସମୟରେ ଏହାଥିଲା ଏକ ସମାନ୍ତରାଳ ଭାରତୀୟ ସୈନ୍ୟବାହିନୀ ।

ସେ ଦକ୍ଷିଣ ଏସିଆର ଇଣ୍ଡୋନେସିଆ , ମାଲେସିଆ ,ସିଙ୍ଗାପୁର, ବର୍ମା ଆଦି ରାଜ୍ୟରେ ଭାରତୀୟ ମୂଳ ଅଧିବାସୀମାନଙ୍କୁ ଏକତ୍ରିତ କରିଥିଲେ । ତାଙ୍କରି ଭିତରୁ ଯୁବକ ଓ ଯୁବତୀମାନଙ୍କୁ ଚୟନ କରି ଏହି ଫୌଜରେ ଭର୍ତ୍ତିକରିଥିଲେ । ସେ ଅଞ୍ଚଳରେ ଭାରତୀୟ ସମାଜ ତାଙ୍କୁ ଏ କାର୍ଯ୍ୟରେ ଅକୁଣ୍ଠିତ ସହଯୋଗ ଦେଇଥିଲେ ।ଜାପାନ ସେନାର ସହାୟତାରେ ଆଜାଦ୍ ହିନ୍ଦ୍ ଫୌଜକୁ ଅଗ୍ରସର କରାଇ ସେ ଭାରତର ସୀମାରେ ପ୍ରବେଶ କରିବାରେ ସକ୍ଷମ ହୋଇଥିଲେ । ଭାରତର ମଣିପୁର ପ୍ରଦେଶର ଇମ୍ଫାଲରେ ସ୍ୱାଧୀନ ଭାରତର ଜାତୀୟ ପତାକା ଉତ୍ତୋଳନ କରିଥିଲେ । ଏ ସମୟରେ ତାଙ୍କୁ ଶ୍ରଦ୍ଧାର ଉପାଧି ମିଳିଥିଲା ନେତାଜୀ ଏବଂ ସମସ୍ତେ ତାଙ୍କୁ ନେତାଜୀ ବୋଲି ସମ୍ବୋଧନ କରୁଥିଲେ ।

ନେତାଜୀଙ୍କୁ ଇଂରେଜ ସୈନ୍ୟମାନଙ୍କ ନିକଟରେ ଭାରତ ବର୍ମା ସୀମା ଅଞ୍ଚଳରେ ପରାସ୍ତ ହେବାକୁ ପଡିଥିଲା ଏବଂ ସେ ପୁଣି ନିଜର ମୁଖ୍ୟ କେନ୍ଦ୍ର ସିଙ୍ଗାପୁରକୁ ଫେରିଯାଇଥିଲେ । ଏ ସମୟରେ ହିରୋସୀମା ନାଗାସାକିରେ ପରମାଣୁ ବୋମାଜନିତ ଧ୍ୱଂସ କାଣ୍ଡ ହେଲା ଏବଂ ମିତ୍ର ଶକ୍ତିର ପରାଜୟ ହେଲା । ନେତାଜୀ ମଧ୍ୟ ପରାଜୟର ଗ୍ଲାନିରେ ମ୍ରିୟମାଣ ହୋଇ ପଡିଥିଲେ । ସିଂହର ପରାକ୍ରମ ନେଇ ନିଜକୁ ଏବଂ ନିଜ ସଙ୍ଗଠନକୁ ପ୍ରସ୍ତୁତ କରୁଥିବା ସମୟରେ ଶତ୍ରୁପକ୍ଷର ଚକ୍ରାନ୍ତ ହେଉ କିମ୍ବା ଭାଗ୍ୟର ବିଡମ୍ବନା ହେଉ ନେତାଜୀଙ୍କ ଜୀବନ ଦୀପର ଅବସାନ ହେଲା । ନେତାଜୀଙ୍କର ମୃତ୍ୟୁ ଏକ ରହସ୍ୟାବୃତ୍ତ ଘଟଣାହୋଇ ରହିଆସିଛି ।

ନେତାଜୀ ଆମ ଭିତରେ ନାହାଁନ୍ତି । ମାତ୍ର ତାଙ୍କର ରୋମାଞ୍ଚକର ଜୀବନ କାହାଣୀ , ଓଜସ୍ୱିନୀ ବକ୍ତୃତା ଏବଂ ଯୁବସମାଜକୁ ତାଙ୍କର ଆହ୍ୱାନ ଏବେ ମଧ ଭାରତ ବାସୀଙ୍କ ନିକଟରେ ଜୀବନ୍ତ ହୋଇ ରହିଛି । ତାଙ୍କ ଜୀବନର ଉଦାହରଣ ଯୁଗେ ଯୁଗେ ଭାରତୀୟ ଯୁବ ସମାଜକୁ ଉଦ୍‌ବୁଦ୍ଧ କରୁଥିବ ଏବଂ ଦେଶ ମାତୃକା ପାଇଁ ସର୍ବସ୍ୱ ବଳିଦାନ କରିବାରେ ପ୍ରେରଣା ଦେଉଥିବ ।

- *ଜୟହିନ୍ଦ୍*

ଭୁବନେଶ୍ୱର

*ନେତାଜୀ ଜୟନ୍ତୀ, ୨୦୦୨*

◆◆◆

# ସତ୍ୟପଥେ

ଓଡ଼ିଆ ଭାଷାଶିକ୍ଷାର ପ୍ରାଥମିକ ପୁସ୍ତକ ବର୍ଣ୍ଣବୋଧର ରଚୟିତା ଭକ୍ତକବି ମଧୁସୂଦନ ରାଓ ଏକ ସୁପ୍ରସିଦ୍ଧ ଓଡ଼ିଆ ଜଣାଣ ଲେଖି ଯାଇଛନ୍ତି, ଯାହା ଓଡ଼ିଶାର ସର୍ବତ୍ର ବିଦ୍ୟାଳୟ ସ୍ତରର ଛାତ୍ରଛାତ୍ରୀମାନେ ଆଦରର ସହିତ ବୋଲିଥାନ୍ତି । ସେଥିରୁ ଗୋଟିଏ ପଙ୍କ୍ତି ହେଲା -

*ସତ୍ୟପଥେ ଧର୍ମପଥେ ଘେନିଯାଅ ମୋତେ*
*ଭସାଅ ପରାଣ ମୋର ତବ ପ୍ରେମ ସ୍ରୋତେ ।*

ଏହି ପଙ୍କ୍ତିକୁ ଲେଖକ ମଧ ବାଲ୍ୟକାଳ ସାନ୍ଧ୍ୟ ପ୍ରାର୍ଥନାରେ ଅଗଣିତ ବାର ଦୋହରାଇ ନିଜ ମସ୍ତିଷ୍କ ଭିତରେ ସବୁଦିନ ପାଇଁ ଏକ ପ୍ରିୟ ବାକ୍ୟ ଭାବେ ଧରି ରଖିଛି ।

ଧର୍ମ ଆଲୋଚନାରେ ସାଧୁଙ୍କ ପ୍ରବଚନ ମାଧମରେ ଗୋଟିଏ ଆପ୍ତବାଣୀ ବାରମ୍ବାର ଶୁଣିବାକୁ ମିଳିଥାଏ । *ସତ୍ୟଂ ବଦ, ଧର୍ମଂ ଚର ।*

ଭାରତର ଏକ ଜାତୀୟ ସ୍ଲୋଗାନ ଭାବେ ସର୍ବଜନାଦୃତ ବାଣୀ ହେଲା - *ସତ୍ୟମେବ ଜୟତେ ।*

ମହାତ୍ମାଗାନ୍ଧୀ ଏ ଦେଶର ସ୍ୱାଧୀନତା ଆନ୍ଦୋଳନର କର୍ଣ୍ଣଧାର ଥାଇ ଯେଉଁ ମହାମନ୍ତ୍ରର ପାଳନ କରିଥିଲେ ତାହାକୁ ଦୁଇଟି ଶବ୍ଦରେ ପ୍ରକାଶ କରାଗଲେ ତାହା ହେବ *ସତ୍ୟ ଏବଂ ଅହିଂସା ।*

ଏତେଗୁଡ଼ିଏ ଉପଦେଶ ଗୋଟିଏ ବିଷୟରେ ଶୁଣିବା ପରେ ଆମ ସମସ୍ତଙ୍କର ଏଥିରେ କୌଣସି ଦ୍ୱିମତ ନାହିଁ ଯେ, ଆମେମାନେ ସତ୍ୟ ପଥର ଯାତ୍ରୀ । ଆମେ ଭାରତବାସୀ ସତ୍ୟପଥରୁ ବିଚ୍ୟୁତ ହେବୁ ଏହା ଅସମ୍ଭବ । ଏ ଦେଶର ଧର୍ମ ଓ ଦର୍ଶନରେ ଆକୃଷ୍ଟ ହୋଇ ଧାଇଁ ଆସୁଥିବା ବିଦେଶୀ ଛାତ୍ର ଏବଂ ଗବେଷକମାନେ ମୁଖ୍ୟତଃ ଏହି ତତ୍ତ୍ୱର ଆକର୍ଷଣରେ ଆକର୍ଷିତ ହୋଇଥାନ୍ତି ।

ସମୟକ୍ରମେ ଏହି ତତ୍ତ୍ୱ ଦର୍ଶନର ପାଳନରେ ଖିଲାପ ଦେଖାଯାଇଛି । କେବଳ ଖିଲାପ ନୁହେଁ, ଠିକ୍ ଓଲଟ ଭାବେ ପାଳନ ହେଉଛି । ଅର୍ଥାତ୍ ସତ୍ୟପଥକୁ ଛାଡ଼ି ଆମେମାନେ ଅସତ୍ୟ ପଥର ଯାତ୍ରୀ ହେଉଅଛେ । ଏହାର କେତୋଟି ଉଦାହରଣ ତଳେ ପ୍ରସ୍ତୁତ କରାଯାଇଛି ।

## ଆଧୁନିକ ଶିକ୍ଷାର ଉପଯୋଗିତା

ପିଲାଟିଏ ବିଦ୍ୟାଗ୍ରହଣ କରିବା ପାଇଁ ଘରର ପରିବେଶ ଛାଡ଼ି ବିଦ୍ୟାଳୟକୁ ଯାଉଛି । ସେଠି ପାଠ ପଢ଼ିବ, ଜ୍ଞାନ ହାସଲ କରିବ, ଯୋଗ୍ୟ ହେବ, ମଣିଷ ହୋଇ ଗଢ଼ି ଉଠିବ, ନିଜ ଗୋଡ଼ରେ ଠିଆ ହେବ । ପ୍ରାଥମିକ ଶିକ୍ଷା ପରେ ଉଚ୍ଚଶିକ୍ଷା ଏବଂ ବିଶ୍ୱବିଦ୍ୟାଳୟ ଶିକ୍ଷା ମଧ୍ୟ ଏ କ୍ଷେତ୍ରରେ ଗୋଟିଏ ପରେ ଗୋଟିଏ ସୋପାନ । ଏଠି କିନ୍ତୁ ଯାହା ଶିକ୍ଷା ମିଳୁଛି, ଏଥିରେ ପିଲାଟିଏ କେତେଦୂର ଉପକୃତ ହେଉଛି ? କେତେଦୂର ଯୋଗ୍ୟ ହେଉଛି ? ଏହା ବର୍ତ୍ତମାନ କାହାକୁ ଅଛପା ନାହିଁ ।

କପି କରି ପାସ୍ କରିବା, ଧରାଧରି କରି ମାର୍କ ବଢ଼ାଇବା, ହଜାର ସଂଖ୍ୟାରେ ସାର୍ଟିଫିକେଟ୍ ଧରି ରାଜରାସ୍ତାରେ ଶିକ୍ଷିତ ବେକାର ହୋଇ ବୁଲିବା ଆଦିର ଦୃଶ୍ୟ ଆଜିର ଶିକ୍ଷାନୁଷ୍ଠାନର ଫଳାଫଳ । ଏହା ସମସ୍ତଙ୍କୁ ଭଲଭାବରେ ଜଣା । ଅର୍ଥାତ୍ ପ୍ରଚଳିତ ଶିକ୍ଷା ପଦ୍ଧତି ଏକ ଭୁଲ୍ ପଦ୍ଧତି ବା ମିଥ୍ୟା ପଦ୍ଧତି ଏ କଥା ଜାଣିବାର ଆଉ ବାକି ନାହିଁ । ତେବେ ସତ୍ୟପଥକୁ ଚିହ୍ନିବା ପାଇଁ ସତ୍ୟପଥରେ ଚାଲିବାର ଆରମ୍ଭ କରିବାକୁ ଏତେ ବିଳମ୍ବ କାହିଁକି ? ଏହା ବୁଝି ହେଉନାହିଁ ।

## ରୋଜଗାରର କ୍ଷେତ୍ର ପ୍ରସ୍ତୁତି

ଦେଶର ସମସ୍ତ ନାଗରିକ କାମ କରନ୍ତୁ, କାମ କରିବା ପାଇଁ ସୁଯୋଗ ପାଆନ୍ତୁ, ଏ ଅଭିଳାଷ ସମସ୍ତଙ୍କର ରହିଛି । କୃଷିକ୍ଷେତ୍ର, ଶିଳ୍ପକ୍ଷେତ୍ର, ବାଣିଜ୍ୟକ୍ଷେତ୍ର, ଏ ସମସ୍ତ କ୍ଷେତ୍ରକୁ ପ୍ରଶସ୍ତ କରିଦେଲେ ଜଣେ ବ୍ୟକ୍ତି କୌଣସି ଏକ କ୍ଷେତ୍ରକୁ ନିଜର କର୍ମକ୍ଷେତ୍ର ରୂପେ ବାଛିନେବ । ନିଜକୁ ନିୟୋଜିତ କରି ନିଜପାଇଁ ଏବଂ ତାର ପରିବାର ପାଇଁ ରୋଜଗାର କରିପାରିବ । ରୋଜଗାର କ୍ଷେତ୍ରରେ ପ୍ରବେଶ କରିବା ପୂର୍ବରୁ ପ୍ରତ୍ୟେକ ବ୍ୟକ୍ତି ଶାରୀରିକ, ମାନସିକ ଏବଂ ଶୈକ୍ଷିକ ଦୃଷ୍ଟିରୁ ପ୍ରସ୍ତୁତ ହେବା ଆବଶ୍ୟକ । ଏଥିପାଇଁ ବୈଷୟିକ ଅନୁଷ୍ଠାନମାନ ଗଢାଯାଇଛି ।

ଦେଶରେ କେଉଁ ବିଦ୍ୟା କେତେ ପରିମାଣରେ ଆବଶ୍ୟକ ଅଛି, ତାର ଅଟକଳ କରାଯାଇ ଯୁବଶକ୍ତିକୁ ମାର୍ଗଦର୍ଶନ କରାଗଲେ, ପ୍ରଶିକ୍ଷଣର ସଠିକ୍ ବିନିଯୋଗ ହୋଇପାରିବ । ନଚେତ୍ ପ୍ରଶିକ୍ଷିତ ବ୍ୟକ୍ତି କାର୍ଯ୍ୟକ୍ଷେତ୍ରରେ ଅଦରକାରୀ ହୋଇପଡିବ । ଉପଯୁକ୍ତ ପ୍ରଶିକ୍ଷଣ ଅଭାବରେ ବ୍ୟକ୍ତିର ଦକ୍ଷତା ମଧ୍ୟ ହ୍ରାସ ପାଇବ ଏବଂ କାର୍ଯ୍ୟକ୍ଷେତ୍ରରେ ଗୁଣବତ୍ତାର ହାନି ହେବ ।

ବର୍ତ୍ତମାନ କିନ୍ତୁ ଏ କ୍ଷେତ୍ରରେ ଅନେକ ମିଥ୍ୟାଚାର ଦେଖାଯାଇଛି । ଆବଶ୍ୟକତାର କଳନା ନାହିଁ । ଅନୁଷ୍ଠାନଗୁଡ଼ିକର ମୂଲ୍ୟାୟନ ନାହିଁ । ଛାତ୍ରଛାତ୍ରୀଙ୍କୁ ଦିଗ୍‌ଦର୍ଶନ ନାହିଁ । ସମସ୍ତେ କେବଳ ସରକାରୀ ଚାକିରି ଓ ସରକାରୀ ସାହାଯ୍ୟକୁ ଚାହିଁ ବସୁଛନ୍ତି । ଏ ପ୍ରକାର ନିର୍ଭରଶୀଳତାର ମାର୍ଗରେ ଦେଶରେ ଯୁବସମାଜ ଆଉ କେତେଦିନ ଚାଲିଥିବ । ଆମକୁ ଏ କ୍ଷେତ୍ରରେ ସତ୍ୟପଥର ସନ୍ଧାନ ଅତି ଶୀଘ୍ର କରିବାକୁ ହେବ ।

**ସହର ପ୍ରତି ଆକର୍ଷଣ**

ଭାରତ ଏକ ଗ୍ରାମବହୁଳ ଦେଶ । ଏ ଦେଶର ନଦୀ, ନାଳ, ପାହାଡ଼, ପର୍ବତ, ବିଲବାଡ଼ି ସବୁ ଗ୍ରାମାଞ୍ଚଳରେ ରହିଛି । ଦେଶର ସମୃଦ୍ଧି ଗ୍ରାମକୁ ନେଇ ଅତୀତରେ ଗଢି ଉଠିଥିଲା, ଭବିଷ୍ୟତରେ ମଧ୍ୟ ଗଠିଉଠିବ । ଗାଁ କ୍ଷେତ୍ରରେ ସରସତା ବୃଦ୍ଧି ହେଲେ ସାରାଦେଶ ହସଖୁସିରେ ପୁରିଉଠିବ । ମାତ୍ର ଗାଁ ସବୁ ଏବେ ଅନାକର୍ଷଣୀୟ ହୋଇପଡିଛନ୍ତି । ସମସ୍ତେ ଆଜି ସହରାଭିମୁଖୀ ।

ସହରର ଘରଡିହ, ସହର ଘର, ସହର ଚାକିରି ଓ ସହର ଜୀବନ ଆଜି ସମସ୍ତଙ୍କର ଧ୍ୟେୟ ହୋଇ ରହିଛି । ସହର ସବୁ ଜନାକୀର୍ଣ୍ଣ ହୋଇପଡିବା ବେଳେ ଗ୍ରାମସବୁ ଜନଶୂନ୍ୟ ହୋଇପଡୁଛି । ଗାଁର ସ୍କୁଲରେ ଶିକ୍ଷକ ରହୁ ନାହାଁନ୍ତି । ଗାଁ ଡାକ୍ତରଖାନାର ଡାକ୍ତର ସହରରୁ ଯିବା ଆସିବା କରୁଛନ୍ତି । ସହରରେ ଇଂରାଜୀ ମାଧ୍ୟମ ସ୍କୁଲ ସବୁ ରହିଛି । ଏହା କୁଆଡ଼େ ସବୁଠାରୁ ବଡ଼ ଆକର୍ଷଣ । ସହରରେ ଧୂଳିମଳି ଲାଗେ ନାହିଁ । ସହରରେ ବିଜୁଳିବତୀ ଲିଭେ ନାହିଁ । ସହରରେ ସବୁ ଜିନିଷ ସବୁବେଳେ ମିଳିଥାଏ । ଗାଁରେ ସବୁବେଳେ ଅଭାବ, ଅନଟନ, ଆଉ ଅସୁବିଧା । ତେଣୁ ଟିକିଏ କିଛି ସୁଯୋଗ ପାଇଗଲେ, ପ୍ରତ୍ୟେକ ବ୍ୟକ୍ତି ସହର ଆଡ଼କୁ ଧାଇଁବା ଦେଖାଯାଇଛି ।

ତେବେ ଏ ବିଷୟରେ ସତ୍ୟପଥର ସନ୍ଧାନ କରିବାକୁ ହେବ । ସମସ୍ତେ ସହରର ଚାକଚକ୍ୟରେ ଆକର୍ଷିତ ହୋଇ ଗାଁ ଛାଡ଼ିଗଲା ପରେ ଗାଁର ତ କ୍ଷତି ହେବ ହିଁ ହେବ ସହରର ମଧ୍ୟ ସମସ୍ୟାବଳୀ ବୃଦ୍ଧି ପାଇବାରେ ଲାଗିବ । ଏଥିରେ ସଂଶ୍ଳିଷ୍ଟ ଦେଶବାସୀ ମଧ୍ୟ ଦୁଃଖ ପାଇବା ସାର ହେବ । ଏ ଦିଗରେ ସତ୍ୟପଥର ସନ୍ଧାନ ଶୀଘ୍ର ହେବ, ଏହା ଆମର ଦୃଢ ବିଶ୍ୱାସ ।

ଉପରୋକ୍ତ ଉଦାହରଣଗୁଡ଼ିକ ସଦୃଶ ଆମମାନଙ୍କର ଖାଦ୍ୟ, ବେଶଭୂଷା, ବାସଗୃହ, ଭାଷା, ସାହିତ୍ୟ, ପରିବାର ଚଳଣି, ବିଚାରାଧାରାରେ ଯେଉଁସବୁ ଆଧୁନିକତା, ଜନିତ ପରିବର୍ତ୍ତନ ଦେଖାଯାଇଛି, ସେ ସବୁକୁ ସୂକ୍ଷ୍ମଭାବେ ଅନୁଧ୍ୟାନ କଲେ ଏହା ଦେଖିବାକୁ ମିଳେ ଯେ, ଆମେ ସମସ୍ତେ ସତ୍ୟପଥରୁ ବିଚ୍ୟୁତ ହେବାରେ ଲାଗିଛୁ । ଏହା ସମସ୍ତଙ୍କ ପାଇଁ ଚିନ୍ତାର ବିଷୟ ।

ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ ଧର୍ମର ବ୍ୟାଖ୍ୟା କରି ଯେଉଁ ବାଣୀ କହିଥିଲେ ତାହା ଆଜିର ପରିପ୍ରେକ୍ଷୀରେ ସ୍ମରଣ କରାଯାଇପାରେ ।

*ବ୍ରହ୍ମ ସତ୍ୟ, ଜଗତ ମିଥ୍ୟା*

ବୋଧହୁଏ ଆମେମାନେ ଜଗତଆଡ଼କୁ ଅଧିକ ପରିମାଣରେ ଟାଣିହୋଇ ଯାଉଛେ । ବ୍ରହ୍ମରୁ ବିଚ୍ୟୁତ ହେଉଅଛେ । ତେଣୁ ସତ୍ୟମାର୍ଗକୁ ଛାଡ଼ି ଅସତ୍ୟମାର୍ଗକୁ ମାଡି ଚାଲିଛେ ।

*ଭୁବନେଶ୍ୱର*
*ଫେବୃଆରୀ, ୨୦୦୧*



# ରହିବି ରାଜଧାନୀରେ

କୁହାଯାଇଛି :

- ଉଚ୍ଚ ଜାଗା ଦେଖି ଘରକରିବ ।
- ସ୍ୱର୍ଗର କୁକୁର ହେବା ଭଲ । ନର୍କର ରାଜା ହେବନାହିଁ ।
- ମହାଜନୋ ଯେନ ଗତଃ ସଃ ପନ୍ଥା
- ଦୂରଦୃଷ୍ଟି ରଖିଥିବା ମଣିଷ ସଫଳତା ହାସଲ କରିଥାଏ
- ସେବିତବ୍ୟୋ ମହାବୃକ୍ଷଃ ଫଳ ଛାୟା ସମନ୍ୱିତଃ

ଏ ସମସ୍ତ ଆପ୍ତବାକ୍ୟକୁ ସୂକ୍ଷ୍ମରୂପେ ଅନୁଧ୍ୟାନ କଲେ ଜଣେ ବ୍ୟକ୍ତି ଏହି ନିଷ୍ପତ୍ତିରେ ଉପନୀତି ହେବ ଯେ, ସେ ଯେଉଁ ଜାଗାରେ ଘରକରି ରହିବ, ତାହା ଉତ୍ତମ ଜାଗା ହୋଇଥିବ । ସ୍ୱର୍ଗ ସମାନ ସୁଖ ସୁବିଧାରେ ଭରପୂର ଥିବ । ବଡ଼ ବଡ଼ ଲୋକମାନେ ସେ ସ୍ଥାନରେ ରହୁଥିବେ । ମହାବୃକ୍ଷ ସଦୃଶ ମହାନଗରୀକୁ ଆପଣାର କଲେ ଭବିଷ୍ୟତ ଲାଭଜନକ ହେବ । ଏଣୁ ନିଜପାଇଁ ଘରଟିଏ ତିଆରି କରିବାକୁ ଚିନ୍ତା କଲାବେଳେ ଓଡ଼ିଶାର ଉଦ୍ୟୋଗୀ ବ୍ୟକ୍ତିମାନଙ୍କ ଆଖି ଆଗରେ ପ୍ରଦେଶର ରାଜଧାନୀ ଅର୍ଥାତ୍ ଭୁବନେଶ୍ୱର ସହର ପ୍ରଥମ ସ୍ଥାନ ଅଧିକାର କରିଥାଏ ।

**ଇତିହାସ**

ଓଡ଼ିଶାର ରାଜଧାନୀ ଭୁବନେଶ୍ୱର ସହର ଉଣେଇଶ ସହ ଅଣଚାଳିଶ ମସିହାରେ ପ୍ରାରମ୍ଭ ହୋଇ ବାବନ ବର୍ଷ ଭିତରେ ବର୍ତ୍ତମାନ ପ୍ରାୟ ଦଶଲକ୍ଷ ଜନସଂଖ୍ୟାରେ ପହଞ୍ଚି ଯାଇଛି । ଗତ ଦଶବର୍ଷ ଭିତରେ ଏ ସହରର ଯେଉଁ ଅଭିବୃଦ୍ଧି ଘଟୁଛି ଏବଂ ଘଟିବାରେ ଲାଗିଛି । ଏଥିରୁ ଅନୁମାନ କରାଯାଏ ଯେ ଆଗାମୀ ଦଶବର୍ଷ ପରେ, ସହର

କୋଡ଼ିଏ ଲକ୍ଷ ଜନସଂଖ୍ୟାର ଅଧିକାରୀ ହୋଇଯିବ । ସଂଯୋଗ କ୍ରମେ ଏହାର କାୟା ବୃଦ୍ଧି ଲାଗି ଚତୁଃପାର୍ଶ୍ୱରେ ବିସ୍ତୀର୍ଣ୍ଣ ଭୂଖଣ୍ଡ ପଡିରହିଛି । ଏକ ଦିଗରେ ବାରଙ୍ଗ, ଅନ୍ୟ ଦିଗରେ ଖୋର୍ଦ୍ଧା, ସେହିପରି ଅନ୍ୟ ଦୁଇ ଦିଗରେ ବାଲକାଟି ଏବଂ ଜଟଣି ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳରେ ସହରର କାୟା ଧୀରେ ଧୀରେ ବଢିବାରେ ଲାଗିଛି । ସହରର ଅବସ୍ଥିତି ଉଚ୍ଚ ଢିପଯାଗା ହୋଇଥିବାରୁ, ଚତୁଃପାର୍ଶ୍ୱରେ ଏବଂ ମଧ୍ୟାଞ୍ଚଳରେ ପ୍ରାକୃତିକ ଜଳାଧାରମାନ ରହିଥିବାରୁ ଏବଂ ଏହାର ମନୋରମ ଜଳବାୟୁର ଆକର୍ଷଣ ଫଳରେ ପ୍ରଦେଶର ଅଗଣିତ ଜନତା ଏ ସ୍ଥାନକୁ ଆକୃଷ୍ଟ ହୋଇ ଆସୁଛନ୍ତି ।

### ଆଧୁନିକ ସହର

ଓଡ଼ିଶାର ସର୍ବବୃହତ୍ ସହର ଆଖ୍ୟା ପ୍ରାପ୍ତ କରିବା ପରେ ଏହି ସହର ଭାରତବର୍ଷର ଏକ ଆଧୁନିକ ସହର ଭାବରେ ଖ୍ୟାତି ଅର୍ଜନ କରିଛି । ଭୁବନେଶ୍ୱର ସହରକୁ ଆକାଶମାର୍ଗ, ରେଳମାର୍ଗ ଏବଂ ସଡ଼କମାର୍ଗରେ ଗମନାଗମନର ଉତ୍ତମ ସୁବିଧା ସୃଷ୍ଟି ହୋଇପାରିଛି । ଆଧୁନିକ ସମାଜରେ ଆଦୃତ ବୈଷୟିକ ଶିକ୍ଷା ବିଶେଷତଃ କମ୍ପ୍ୟୁଟର, କାଟରିଙ୍ଗ୍, ପରିଚାଳନା ଏବଂ ଇଞ୍ଜିନିୟରିଂ ଶିକ୍ଷା ପାଇଁ ଭୁବନେଶ୍ୱରରେ ଅଗଣିତ ଅନୁଷ୍ଠାନ ଗଢି ଉଠିବା ଫଳରେ ଭାରତର ବିଭିନ୍ନ ପ୍ରଦେଶରୁ ଶୀକ୍ଷାର୍ଥୀମାନେ ଆସି ଏଠାରେ ବିଦ୍ୟା ଅଧ୍ୟୟନ କରିବାରେ ଲାଗିଛନ୍ତି । ନାଲ୍କୋ, ଇମ୍ଫା, ଗ୍ରୀଡ୍କୋ, ଇଡ୍କୋ ଆଦି ଶିଳ୍ପାନୁଷ୍ଠାନ ଗୁଡ଼ିକର ମୁଖ୍ୟାଳୟ ଏ ସହରର ଗୌରବ ବୃଦ୍ଧି କରିବା ସଂଗେ ସଂଗେ ଏହାର ଖ୍ୟାତି ବିସ୍ତାର କରିବାରେ ଲାଗିଛନ୍ତି । ମନ୍ଦିର ନଗରୀ ଭାବେ ପ୍ରଖ୍ୟାତ ପୁରାତନ ଭୁବନେଶ୍ୱର ନଗରୀ ଏବେ ମଧ ପର୍ଯ୍ୟଟନ ପ୍ରେମୀମାନଙ୍କ ପାଇଁ ଓଡ଼ିଶାର ସ୍ୱର୍ଣ୍ଣ ତ୍ରିଭୁଜର ଏକ ବିନ୍ଦୁ ଭାବେ ପୁରୀ, କୋଣାର୍କ ସମକକ୍ଷ ଅନ୍ୟତମ ପର୍ଯ୍ୟଟନସ୍ଥଳୀ ଭାବେ ପରିଗଣିତ ହେଉଛି । ଏ ସମସ୍ତ କାରଣ ଏହାର ଜନସଂଖ୍ୟା ବୃଦ୍ଧିରେ ସହାୟକ ହୋଇଛି ।

### ମୁଖ୍ୟ କାର୍ଯ୍ୟାଳୟ

ଓଡ଼ିଶା ସରକାରଙ୍କ ମୁଖ୍ୟ କାର୍ଯ୍ୟାଳୟର ଅବସ୍ଥିତି ଭୁବନେଶ୍ୱରରେ, କେବଳ ତା ନୁହେଁ, ବିଭିନ୍ନ ଜିଲ୍ଲା କେନ୍ଦ୍ରମାନଙ୍କରେ କାର୍ଯ୍ୟରତ ଅଧିକାରୀଗଣ ସେମାନଙ୍କର ପରିବାର ପାଇଁ ହେଡ୍କ୍ୱାଟର ଏହି ସହରରେ ସ୍ଥାପନ କରି, ସପ୍ତାହାନ୍ତରେ ଛୁଟି ଏବଂ ଟୁର୍ ଉପଲକ୍ଷରେ ଭୁବନେଶ୍ୱର ଅଭିମୁଖେ ଚାଲି ଆସୁଛନ୍ତି । ଭୁବନେଶ୍ୱରକୁ ପ୍ରବେଶ କରୁଥିବା, ତିନିଦିଗରୁ ଆସୁଥିବା ଜାତୀୟ ରାଜପଥଗୁଡ଼ିକର ଦୁଇ ପାର୍ଶ୍ୱରେ ଦୋକାନଘର ଏବଂ ବାସଗୃହମାନ ଦିନକୁ ଦିନ ବଢିବାରେ ଲାଗିଛି । ସେ ଅଞ୍ଚଳର ଚାଷଜମି ସବୁ ଘରଡିହରେ ପରିବର୍ତ୍ତିତ ହୋଇଯିବା ଫଳରେ ସାଧାରଣ ଜମିମାଲିକମାନେ ଚାଷୀ ସ୍ତରରୁ ଜଣେ ଲେଖାଏଁ ଧନଶାଳୀ ଜମିମାଲିକରେ ରୂପାନ୍ତରିତ ହୋଇଯାଉଛନ୍ତି ।



## ଗୃହନିର୍ମାଣ ବୃଦ୍ଧି

ଯେତେ ସଂଖ୍ୟାରେ ବିଲ୍‌ଡର ଏବଂ ଇଷ୍ଟେଟ୍ ସଂସ୍ଥା ଏ ସହରରେ ଅଛନ୍ତି, ତାହା ଭାରତର ଅନ୍ୟତ୍ର କୌଣସି ସହରରେ ନଥିବେ । ସେହିପରି ଫ୍ଲାଟ୍ ଏବଂ ଆପାର୍ଟମେଣ୍ଟ ତିଆରି ଏବଂ ବିକ୍ରୀ ଏବେ ଭୁବନେଶ୍ୱରର ଅନେକ ବଡ଼ ବ୍ୟବସାୟୀମାନଙ୍କ ପାଇଁ ଏକ ଲାଭଜନକ ବେପାର । ଅନ୍ୟ ବ୍ୟବସାୟ ଛାଡ଼ି ବିଲ୍‌ଡର ବ୍ୟବସାୟ ଆରମ୍ଭ କରିଥିବା ଉଦାହରଣ ଅନେକ । କିଣିବା ଲୋକଙ୍କ ସଂଖ୍ୟା ଅନୁପାତରେ ଋଣ ପ୍ରଦାନକାରୀ ସଂସ୍ଥା ଯଥା - ବ୍ୟାଙ୍କ, ଏଲ୍‌ଆଇସି ଓ ଅନ୍ୟାନ୍ୟ ପୁଞ୍ଜିଲଗାଣକାରୀ ସଂସ୍ଥା ମଧ୍ୟ ନିଜର ବ୍ୟବସାୟ ବୃଦ୍ଧି କରି ଚାଲିଛନ୍ତି ।

## ଆକର୍ଷଣୀୟ ବଜାର

ଏ ସହରରେ ବଜାର ସଂଖ୍ୟା ମଧ୍ୟ ଡିମାଣ୍ଡକୁ ଦେଖି ବୃଦ୍ଧିପାଇଛି । ସ୍ଥାନେ ସ୍ଥାନେ ବିଡିଏ ସଂସ୍ଥା ନିର୍ମିତ ମାର୍କେଟ୍ ବିଲ୍‌ଡିଂ ଏବଂ ମାର୍କେଟ୍ କମ୍ପ୍ଲେକ୍ସ ସହରବାସୀଙ୍କ ଆବଶ୍ୟକତାକୁ ପୂରଣ କରିବା ସଂଗେ ସଂଗେ ସହରର ଶ୍ରୀବୃଦ୍ଧି କରିବାରେ ଲାଗିଛନ୍ତି । ସହରର କ୍ରମବୃଦ୍ଧି ସହିତ ତାଳଦେଇ ଏହାର ମୁଖ୍ୟ କେନ୍ଦ୍ର ମଧ୍ୟ ପରିବର୍ତ୍ତନ ହେବାରେ ଲାଗିଛି । ଆରମ୍ଭ କାଳର ମୁଖ୍ୟକେନ୍ଦ୍ର ରାଜମହଲ ଛକ ଏବଂ ଏକନମ୍ବର ମାର୍କେଟ୍ ଥିବାବେଳେ ତାହା କ୍ରମେ ମାଷ୍ଟରକ୍ୟାଣ୍ଟିନ୍ ଛକ ଏବଂ ରୁପାଲି ଛକକୁ ସ୍ଥାନାନ୍ତରିତ ହୋଇଛି । ସେହିପରି ମୁଖ୍ୟ ଜନବସତି ଭାବେ ନଗର ନିର୍ମାଣର ପ୍ରଥମ ଦଶନ୍ଧିରେ ବାପୁଜୀ ନଗର ଥିବାବେଳେ ଦ୍ୱିତୀୟ ଦଶନ୍ଧିରେ ଶହୀଦ ନଗର ଏବଂ ବର୍ତ୍ତମାନ ଆଇ.ଆର୍.ସି. ଭିଲେଜ୍ ସହରର ଆକର୍ଷଣୀୟ ଜନବସତି ଭାବେ ପରିଗଣିତ ହେଉଛି ।

## ସୁନ୍ଦର ସହର

ସହରର ରାସ୍ତାଘାଟ, ଜଳଯୋଗାଣ, ବିଦ୍ୟୁତ୍ ବ୍ୟବସ୍ଥା, ଫୋନ୍ ଲାଇନ୍, ବୈଦ୍ୟୁତିକ ଉପକରଣର ଉପଲବ୍ଧି ଏବଂ ମରାମତିର ସୁବିଧା, ନାଳ ନର୍ଦ୍ଦମାର ସୁପରିଚାଳନା, ପାର୍କ, ବଗିଚା ଆଦିର ମନଲୋଭା ଦୃଶ୍ୟ ନଗରର ବାସିନ୍ଦାମାନଙ୍କୁ ସୁଖ ଓ ସ୍ୱାଛନ୍ଦ୍ୟ ଆଣିଦେବାରେ ସହାୟକ ହେଉଛି । ପନିପରିବା, ଫଳମୂଳ ଏବଂ ଅନ୍ୟାନ୍ୟ ଲୋଭନୀୟ ଖାଦ୍ୟ ସାମଗ୍ରୀର ଉପଲବ୍ଧି ପାଇଁ ଗ୍ରାହକମାନଙ୍କୁ ଏଠାରେ କଷ୍ଟ କରିବାକୁ ପଡୁନାହିଁ । କେବଳ ହାତରେ ଟଙ୍କାଥିଲେ ହେଲା । ଲୁଗାପଟା, ଅଳଙ୍କାର ତଥା ଘରେ ସଜାଇବା ସାମଗ୍ରୀ ମଧ୍ୟ ଏଠାକାର ମାର୍କେଟ୍‌ଗୁଡ଼ିକରେ ଭରପୁର । ଏଠାରେ ସାଂସ୍କୃତିକ ଓ ସାହିତ୍ୟ ଦିଗ ମଧ୍ୟ ସମଗ୍ର ଓଡ଼ିଶାରେ ଆଗୁଆ । ଲେଖକ, ସାହିତ୍ୟିକ, ସାମ୍ବାଦିକ ଓ ସମାଲୋଚକ ଗୋଷ୍ଠୀ ଏ ସହରର ସୁନାମକୁ ଉଜ୍ଜ୍ୱଳତର କରିବାରେ ଲାଗିଛନ୍ତି । ନାଟ୍ୟକାର, କଳାକାର ଏବଂ ଚିତ୍ରକରମାନେ ମଧ୍ୟ ଏ ସହର ଶ୍ରୀବୃଦ୍ଧିରେ ସହାୟକ ଅଛନ୍ତି ।

ଏ ସମସ୍ତ ସୁଖ ଓ ସୁବିଧାକୁ ହାତ ପାହାନ୍ତାରେ ଲାଭ କରିବାକୁ କିଏ ନ ଚାହେ । ଦେଖାଯାଉଛି ଚାକିରି ଶେଷ ହେବାରେ ଅଧିକାଂଶ ଚାକିରିଆ ଏଇଠି ଘର କରି ରହୁଛନ୍ତି । ଏପରିକି କେତେକ ଚାଷୀ ପରିବାର ମଧ୍ୟ ନିଜର ଗାଁରେ ଥିବା ଘରବାଡ଼ି ଚାଷଜମି ବିକ୍ରୀ କରି ବିକ୍ରୀଲବ୍ଧ ରାଶିରେ ଭୁବନେଶ୍ୱରରେ ଜାଗା ଓ ଘର କିଣି ବାସ କରିବାରେ ଆଗଭର ହୋଇଛନ୍ତି । ତେଣୁ ବର୍ତ୍ତମାନ ସାରା ପ୍ରଦେଶରେ ଏକ ଜନପ୍ରିୟ ବାକ୍ୟ ଅଧିକାଂଶ ପ୍ରଦେଶବାସୀଙ୍କ ହୃଦୟ କନ୍ଦରରେ ଗୁଞ୍ଜରିତ ହେଉଛି - ରହିବି ରାଜଧାନୀରେ ।

*ଭୁବନେଶ୍ୱର*
*ଫେବୃଆରୀ, ୨୦୦୧*



# ସମସ୍ୟାର ଅନ୍ୟ ନାଁ, ଆମ ଗାଁ

ଗାଁଟିଏ । ଭାରତ ଭିତରେ ଅଗଣିତ ଗାଁ ଭିତରୁ ଗୋଟିଏ । ଏ ଗାଁ ମୋ ଜନ୍ମଭୂମି । ଶୈଶବର ବାଲ୍ୟଖେଳା ଏବଂ ବାଲ୍ୟ ଶିକ୍ଷାର ମୂଳଦୁଆ ମୋର ଏଇ ଗାଁ ମାଟିରେ ହୋଇଛି । ଗାଁ ଦାଣ୍ଡର ଧୂଳି ମୋ ପାଇଁ ଅତିପ୍ରିୟ । ଗାଁର ପାଣିପବନ ଦେହ ମନରେ ପୁଲକ ଆଣେ । ଏଇ ଗାଁର ସମସ୍ତ ନରନାରୀ ଗାଁ ରୂପୀ ମହାକାବ୍ୟର ଗୋଟିଏ ଗୋଟିଏ ନାୟକ ବା ନାୟିକା । ଗାଁରୁ ଦୂରରେ ଥିଲେ ସୁଦ୍ଧା ଏ ଗାଁର ଆକର୍ଷଣ ମୋ ପାଇଁ ବହୁତ । ଗାଁ ସହିତ ମୋର ସମ୍ପର୍କ ଏବେ ମଧ୍ୟ ଘନିଷ୍ଠ ରହିଛି । ମୋ ମସ୍ତିଷ୍କର ଛାଞ୍ଚ ଗାଁ ପରିବେଶର ମନସ୍ତତ୍ତ୍ୱକୁ ନେଇ ଗଢ଼ା ହୋଇଥିବାରୁ ଗ୍ରାମ୍ୟ ଦୃଶ୍ୟ, ଗ୍ରାମ୍ୟ ଜୀବନ ଆଦିର କଥା ଓ ଆଲୋଚନା ମୋ ପାଇଁ ଜୀବନ୍ତ ଅନୁଭବ ଆଣିଦିଏ ।

### ସହରର ଆକର୍ଷଣ

ସେଇ ଗାଁ ପୂର୍ବରୁ ନିଜକୁ ନେଇ ଚଳି ଆସୁଥିଲା । ବଢ଼ି-ମରୁଡ଼ି, ଦୁଃଖ-ସୁଖ, ଜୀବନ-ମୃତ୍ୟୁ ଓ ଗ୍ରୀଷ୍ମ-ବର୍ଷାର ପ୍ରବାହ ଚକ୍ରରେ ଗଡ଼ି ଚାଲିଥିଲା । ଆଧୁନିକ ଜୀବନ ମୋ ଗାଁକୁ ଆନମନା କରିଦେଇଛି । ଗାଁ ମୋର ସହର ଅଭିମୁଖୀ ହୋଇଉଠିଛି । ସହରର ଚାକଚକ୍ୟ, କୋଠାବାଡ଼ି, ଚାକିରି କ୍ଷେତ୍ରରେ ଆରାମ ଜୀବନ, ଅଧିକ ରୋଜଗାର ସହିତ ଲାଇଟ୍‌ର ଉଜ୍ଜ୍ୱଳତା, ସଂଗୀତର ମୂର୍ଚ୍ଛନା ଗାଁ ଜୀବନକୁ ଆଜି ଅସ୍ଥିର କରିଛି ।

### ବାହ୍ୟ ପରିବର୍ତ୍ତନ

ଗାଁରେ ଆଉ ପଖାଳ ଶାଗର ସକାଳ ଖିଆ ଚଳୁନି । ଦରକାର ବରା, ପିଆଜି, କଫି ଓ ଚା । ଧୋତି ଗାମୁଛାର ପୋଷାକ ବଦଳିଯାଇ ପ୍ୟାଣ୍ଟ ସାର୍ଟର ବ୍ୟବହାର ହେଉଛି । ରାଶି, ନଡ଼ିଆ ତେଲ ବଦଳରେ ବାସ୍ନା ତେଲ ଓ ସାମ୍ପୁ ପାଉଡର ଆସିଯାଇଛି । ଦହି, ସରବତ ଯାଗାରେ ଫାଣ୍ଟା, କୋକାକୋଲା, ଶାଢ଼ି ବଦଳରେ ମାକ୍ସି, ଦାଣ୍ଡ ପିଣ୍ଡାର ବାରିକ ଏବେ ସେଲୁନ୍‌ରେ ଚୌକି ପକାଇ ବସୁଛି । ଧୋବାର ତୁଠ ବଦଳରେ ଗାଁରେ ଲଣ୍ଡ୍ରି ଆରମ୍ଭ ହୋଇଛି । ଶଗଡ଼ ଗାଡ଼ିର କେଁ କଟର ଜାଗାରେ ନୂଆ ହୋଇ ଶୁଭୁଛି ଟ୍ରକ୍ ଓ ଟ୍ରାକ୍ଟରର ଘୁଡୁଘୁଡୁ ଶବ୍ଦ ।

ପାଲା, ଦାସକାଠିଆ ଦଳର ମନୋରଞ୍ଜନ ଭିଡିଓ ଓ ସିନେମାକୁ ରାସ୍ତା ଛାଡିଦେଲେଣି । ମୋ ଗାଁ ମୁଲିଆ ବଡ଼ି ଭୋର୍‌ରୁ ବିଲକୁ ଆଉ ଯାଉନି । ଖରାପଡିଲେ ଚା ଖାଇବା ପରେ ହଲି ଝୁଲି କାମକୁ ଯାଇ ନିଜ ଖୁସିରେ ଯାହା କରିଦେଲା ସେତିକିରେ ସନ୍ତୋଷ ହେବାକୁ ପଡୁଚି ।

ଗାଁରେ ଟେଲର ଦୋକାନ ଖୋଲାଗଲାଣି । କଲେଜ ପିଲାଙ୍କ ସଂଖ୍ୟା ବଢୁଛି । କାରଣ ଗାଁରେ +୨ କଲେଜ ଦୁଇବର୍ଷର ପୁରୁଣା ହେଲାଣି । ଘରେ ଘରେ ଟି.ଭି., ଘରେ ଘରେ ପାଇଖାନା, ଚାଳ ବଦଳରେ ଟାଇଲ୍, ନଚେତ୍ ଛାତର ଘର । ଗାଁ ଦାଣ୍ଡରେ ଆଉ ବର୍ଷାଦିନ ପାଣିର ଧାର ଚାଲୁନାହିଁ । ମାଟି ପଡି, ମୋରମ ପଡି ଗାଁ ଦାଣ୍ଡ ସଡ଼କ ହୋଇଯାଇଛି । ଚାଷ ପାଇଁ ଗାଁରେ ସାର ଦୋକାନ ଖୋଲାଗଲାଣି । ଡିଜେଲ୍ ପମ୍ପସେଟ୍ ବ୍ୟବହାର ହେଉଛି ।

**ଅଭ୍ୟନ୍ତରର ଦୁଃଖ :**

**ଜନସଂଖ୍ୟା ବୃଦ୍ଧି**

ଦେଶରେ ଶହେକୋଟି ଲୋକ ସଂଖ୍ୟା ହେବାବେଳେ ସେହି ଅନୁପାତରେ ମୋ ଗାଁର ଲୋକସଂଖ୍ୟା ବଢୁଛି । ଗୋଟିଏ ଗାଁରୁ ବିସ୍ତାର ହୋଇ ସାତ ଖଣ୍ଡ ଗାଁ ତିଆରି ହେଲାଣି । ଗାଁ ପୁଞ୍ଜ ସୃଷ୍ଟି ହୋଇଛି । ଗହୀରତଳ, ତଇଳାଜାଗା, ଉଚ୍ଚନୀଚ, ଖାଲଢିପ ସବୁଆଡ଼େ ଘରସବୁ ଧାଡ଼ି ଧାଡ଼ି ତିଆରି ହୋଇଯାଇଛି । ଗୋଟିଏ ଗାଁକୁ ନେଇ ଗୋଟିଏ ପଞ୍ଚାୟତ । ତଥାପି ବାସଗୃହର ଅଭାବ । ଗୋଖାଦ୍ୟର ଅଭାବ ଏବଂ ପରୋକ୍ଷରେ ଖାଦ୍ୟବସ୍ତ୍ରର ଅଭାବ ମଧ୍ୟ ଦେଖାଦେଇଛି । ଏ ଲୋକସଂଖ୍ୟାକୁ ଯଥେଷ୍ଟ ପରିମାଣ ଚାଷଜମି ନଥିବାରୁ ଗାଁ ଛାଡ଼ି ଅନ୍ୟତ୍ର ଅନ୍ନସଂସ୍ଥାନ ଯୋଗାଡ଼ରେ ଚାଲିଯାଉଥିବା ଯୁବକ ସଂଖ୍ୟା ବହୁତ ।

**ଏକତାର ଅଭାବ**

ଗାଁରେ ଏକ ବିଚାର, ଏକ ଯୋଜନା ଏବଂ ଏକ ଜୀବନଯାତ୍ରାର ଇତିହାସ ଥିଲା । ଆଜିକାଲି ତାର ଖଣ୍ଡନ ଦେଖାଯାଉଛି । ଗାଁ ଆମର ବର୍ତ୍ତମାନ ଦୁଇଦଳ । ତଳସାହି ଓ ଉପରସାହି । ଗାଁ ଦାଣ୍ଡ, ଗାଁ ପାଲା, ଗାଁ ଜଙ୍ଗଲ, ଗାଁ ପୋଖରୀ ଏବଂ ଗାଁ ସ୍କୁଲ ଆଦି ସମୂହ ସଂସ୍ଥାଗୁଡ଼ିକ ଏଇ ଦ୍ୱନ୍ଦ୍ୱର ଶିକାର । ରାଜନୀତିର ପ୍ରଭାବ ମଧ୍ୟ ଏ ଭିତରେ ଅଛି । ଏହି ବିଭେଦର କୁଫଳ ଆଜି ଗାଁର ମଧୁର ପରିବେଶକୁ ତିକ୍ତ କରିଦେଇଛି । ଘରେ ଘର ଭିତରେ ସାଇ ସାଇ ଭିତରେ ମତ ପାର୍ଥକ୍ୟ ସହିତ ମନୋମାଳିନ୍ୟ ଦେଖିବାକୁ ମିଳୁଛି ।

**ସ୍ୱପ୍ନବିଳାସୀ ଯୁବଶ୍ରେଣୀ**

ଗାଁର ଯୁବକଯୁବତୀ ଏବେ ଆଉ ନିଜର କଳ୍ପନାର ସୀମାରେଖା ଗାଁ ଭିତରେ ରଖୁନାହାଁନ୍ତି । ସେମାନେ ସିନେମାର ହିରୋ, ହିରୋଇନ୍‌ଠାରୁ କ୍ରିକେଟ୍‌ର ତାରକା ପର୍ଯ୍ୟନ୍ତ ନିଜର ସ୍ୱପ୍ନକୁ ବିସ୍ତାର କରିଛନ୍ତି । ଚାକିରିର ସୁନେଲି ସ୍ୱପ୍ନ, ଧନ ଉପାର୍ଜନର ସହଜପନ୍ଥା ଏବଂ ଉପଭୋଗ ସାମଗ୍ରୀର ସୁଲଭ ଯୋଗାଣ ଆଦି ବିଷୟକୁ ନେଇ ଏମାନେ ସଦାସର୍ବଦା ସ୍ୱପ୍ନରେ ବୁଡି ରହୁଛନ୍ତି । ଏ ସ୍ୱପ୍ନ

କେବଳ ମଧ୍ୟବିତ୍ତ ଶ୍ରେଣୀରେ ସୀମିତ ନୁହେଁ । ଏ ଭିତରେ ଶ୍ରମିକ ଶ୍ରେଣୀ ମଧ୍ୟ ଶ୍ରମବିମୁଖ ହୋଇ ନିଜର ଦାବୀ ପୂରଣ ଓ ମଜୁରି ବୃଦ୍ଧି ଦିଗରେ ସର୍ବଦା ଚେଷ୍ଟିତ ରହୁଛନ୍ତି । ଗାଁର ଶାନ୍ତ ସରଳ ପରିବେଶରେ ଏହି ସ୍ୱପ୍ନବିଭୋର ଯୁବକ ଯୁବତୀଙ୍କର ଔଦ୍ଧତ୍ୟପୂର୍ଣ୍ଣ ଆଚରଣ ତିକ୍ତତା ଆଣିଦେଉଛି ।

**ବୈଷୟିକ ଜ୍ଞାନର କମ୍ ବିନିଯୋଗ**

ଗାଁରେ ଇଲେକ୍‌ଟ୍ରି ଅଛି । ଚୋରାରେ ନେବାକୁ ଆଗ୍ରହୀ ବେଶି । ସଦ୍ ବିନିଯୋଗ କରି ଲାଭ ପାଇବାର ଚେଷ୍ଟା କମ୍ । ସାର, ଔଷଧ, ବିହନ ଆଦି ମିଳୁଛି । କିନ୍ତୁ ଚାଷ ଜମିର ଚକବନ୍ଦୀ ହୋଇ ନଥିବାରୁ ଚାଷରୁ ସୁଫଳ ନାହିଁ । ଫଳଚାଷ ଓ ପନିପରିବା ଚାଷର ବିସ୍ତାର ହେଉଛି । କିନ୍ତୁ ଯୋଜନାବଦ୍ଧ ଭାବରେ ନୁହେଁ । ଶୀତଳଭଣ୍ଡାର ନାହିଁ । ବିକ୍ରୟକେନ୍ଦ୍ର ବା ସମବାୟ ସମିତି ନାହିଁ । ଗୋ-ପାଳନ, କୁକ୍କୁଡ଼ା ପାଳନ ହେଉଛି, କିନ୍ତୁ ଅସଂଗଠିତ ଉପାୟରେ । ବ୍ୟାଙ୍କ ଋଣର ବ୍ୟବସ୍ଥା ଅଛି, କିନ୍ତୁ ଗ୍ରାମବାସୀ ନିଜର ସଞ୍ଚୟ ଅଭ୍ୟାସକୁ ବୃଦ୍ଧି କରିପାରି ନଥିବାରୁ ଋଣ ନେଇ ଘରଖର୍ଚ୍ଚ କରିଦେଉଛି । ବାହାର ଅଞ୍ଚଳର ଆଦର୍ଶଚାଷ, ଆଦର୍ଶ ବ୍ୟବସ୍ଥା ଅନୁକରଣ କରିବା ବଦଳରେ ବାହାରର ଚାକଚକ୍ୟକୁ ଅନ୍ତଃକରଣ କରିବା ଧ୍ୟେୟ ହୋଇ ଉଠିଛି ।

**ଦୁର୍ବଳ ନେତୃତ୍ୱ**

ଗାଁରେ ନେତୃତ୍ୱ ବିକାଶର କୌଣସି ବିଧିବଦ୍ଧ ବ୍ୟବସ୍ଥା ନାହିଁ । ବାପା ପରେ ପୁଅ ନେତୃତ୍ୱ ନେବାର ପୁରାତନ ନିୟମ । ଦଳଗତ ପ୍ରଭାବରେ ଏବଂ ଗଣତନ୍ତ୍ରର ପଦ୍ଧତିରେ ବୟସ ଓ ପ୍ରତିଷ୍ଠା ବଦଳରେ ଭୋଟ୍ ସଂଖ୍ୟାକୁ ନେଇ, ଲୋକମାନଙ୍କୁ ବଡ଼କଥା କହି ଭୁଲାଇ ପାରୁଥିବା ବ୍ୟକ୍ତି ଗାଁ ଭିତରେ ନେତା ହୋଇ ଛିଡ଼ା ହେଉଛି । ହୃଦୟରେ ଭାବନା ନାହିଁ । ବୁଦ୍ଧିରେ ଦୂରଦୃଷ୍ଟି ନାହିଁ, ଭାଇବନ୍ଧୁଙ୍କ ପ୍ରତି ପ୍ରୀତି-ସ୍ନେହ ନାହିଁ । କେବଳ ସ୍ୱାର୍ଥ ଓ ଭୋଗକୁ ଆଧାର କରି ପ୍ରତିଷ୍ଠିତ ନେତୃଗଣ ଗାଁର ଉନ୍ନତି ପରିବର୍ତ୍ତେ ନିଜ ନିଜର ଉନ୍ନତି ପାଇଁ ଦିବାରାତ୍ର ଚେଷ୍ଟାରତ ।

ଏହି ସମସ୍ତ ଦୃଶ୍ୟ ଏବଂ ଘଟଣାବଳୀକୁ ଅନୁଧ୍ୟାନ କଲେ ପାଠକଗଣ ଏକମତ ହେବେ ଯେ, ଆମ ଗାଁ, ସମସ୍ୟାର ଅନ୍ୟ ନାଁ ।

*କନ୍ଧିଓ କାଟେଣୀ, ଢେଙ୍କାନାଳ*
*ଜୁନ୍, ୨୦୦୦*





ଶ୍ରୀ ଭୁବନାନନ୍ଦ ତ୍ରିପାଠୀ
ଜନ୍ମ : ୧୯ ।୦୩ ।୧୯୫୪
ଜନ୍ମସ୍ଥାନ : କଣ୍ଠିଓ କାଟେଣୀ
ଢେଙ୍କାନାଳ

## ଲେଖକ ପରିଚୟ :

ପେଷାରେ ପରିଚାଳକ, କାର୍ଯ୍ୟକ୍ଷେତ୍ର ଇସ୍ପାତ ଶିଳ୍ପ ଓ ମାନବ ସମ୍ବଳ ବିକାଶ । ଗ୍ରାମରେ ଜନ୍ମ ଓ ପ୍ରାଥମିକ ଶିକ୍ଷା ଗ୍ରାମୀଣ ବିଦ୍ୟାଳୟରେ । ବିଚାରରେ ଜାତୀୟବାଦୀ, ସଂସ୍କାରରେ ସନାତନୀ, ଚଳଣିରେ ସରଳତାପ୍ରିୟ, କର୍ମ ସଂସ୍କୃତିରେ ଦୃଢ଼ ବିଶ୍ୱାସୀ, ଉଜ୍ଜ୍ୱଳ ଭବିଷ୍ୟତର ସ୍ୱପ୍ନକାର, ସାମୟିକ ଭାବେ ଲେଖକ ଭୁବନାନନ୍ଦ ତ୍ରିପାଠୀଙ୍କର ପ୍ରଥମ ପ୍ରକାଶିତ ପୁସ୍ତକ ''ବିଚାର ଓ ବିଶ୍ଳେଷଣ'' ।

ଲେଖକ ସାପ୍ତାହିକ ''ରାଷ୍ଟ୍ରଦୀପ'' କଟକର ନବମ ବସନ୍ତ ମିଳନ ଉତ୍ସବରେ ଲଳିତ ନିବନ୍ଧ ପାଇଁ ସାହିତ୍ୟ ସମ୍ମାନ ପ୍ରାପ୍ତ । ରାଷ୍ଟ୍ରଦୀପ ଏବଂ ଅନ୍ୟାନ୍ୟ ପତ୍ରପତ୍ରିକା ଯଥା : ସମାଜ, ପ୍ରଜାତନ୍ତ୍ର, ସମ୍ବାଦ, ଧରିତ୍ରୀ, ସମୟ ଏବଂ ପ୍ରଗତିବାଦୀ ଇତ୍ୟାଦି ପତ୍ରପତ୍ରିକାରେ ଲେଖକଙ୍କର ରଚିତ ନିବନ୍ଧ ଗୁଡ଼ିକ ନିୟମିତଭାବେ ପ୍ରକାଶିତ ହୋଇ ଆସୁଛି ।

ଲେଖକ ବର୍ତ୍ତମାନ ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଭୁବନେଶ୍ୱରଠାରେ ନିର୍ଦ୍ଦେଶକ ପଦରେ ଅବସ୍ଥାପିତ ।

◆●◆